# ଅଚ୍ୟୁତାନନ୍ଦ ରଚନାବଳୀ

## ( ଗୀତା ଖଣ୍ଡ-୨ )




ମୁଖ୍ୟ ସମ୍ପାଦକ :

ଡଃ ରତ୍ନାକର ଚଇନି

ସମ୍ପାଦନା ମଣ୍ଡଳୀ :

ଡଃ ପ୍ରଫୁଲ୍ଲ କୁମାର ପଣ୍ଡା      ଡଃ କଶୋରଚନ୍ଦ୍ର ଦାସ

ଡଃ ବାବାଜୀ ପଟ୍ଟନାୟକ      ଡଃ ରବ ନାୟକ

ଶ୍ରୀ ଅଚ୍ୟୁତାନନ୍ଦ ଦାସ





ପ୍ରକାଶକ :

ଅଚ୍ୟୁତାନନ୍ଦ ସ୍ମୃତି ସଂସଦ

ବାଦାମବାଡ଼ି, କଟକ-୧୨

# ଅଚ୍ୟୁତାନନ୍ଦ ରଚନାବଳୀ

(ଗୀତା ଖଣ୍ଡ—୧)

ସମ୍ପାଦକ :

ଡଃ ରତ୍ନାକର ଚଇନି

ପ୍ରକାଶକ :

ଅଚ୍ୟୁତାନନ୍ଦ ସ୍ମୃତି ସଂସଦ

ବାଦାମବାଡ଼ି, କଟକ-୧୨

ମୁଦ୍ରାକର :

ହାଇ-ଟେକ୍ ପ୍ରିଣ୍ଟର୍ସ

ବିଶ୍ରାମ ନଗର, ଲିଙ୍କ୍ ରୋଡ୍, କଟକ- ୧୨

ପ୍ରଥମ ପ୍ରକାଶ :

୧୯୯୪, ଶ୍ରୀପଞ୍ଚମୀ

ମୂଲ୍ୟ :

ପଚାଶ ଟଙ୍କା ମାତ୍ର



ACHYUTANANDA RACHANABALI (GEETA KHANDA-I): Edited by Dr. Ratnakar Chaini, Published by Achyutananda Smruti Sansad, Badambadi, Cuttack - 12, 1994 Edition.

Price : Rs. 50/-

# ସୂଚୀ







# କିଂଚିତ୍ ସୂଚନା



'ଅଚ୍ୟୁତାନନ୍ଦ ରଚନାବଳୀ'ର ପଞ୍ଚମ ଖଣ୍ଡ ଆତ୍ମପ୍ରକାଶ କଲା 'ଗୀତା ଖଣ୍ଡ' ନାମରେ । ଏଥିରେ ଦଶଗୋଟି ଗୀତା ସ୍ଥାନ ପାଇଛି । ତାଙ୍କର 'କୈବର୍ତ୍ତ ଗୀତା' ଅତ୍ୟନ୍ତ ଲୋକପ୍ରିୟ । ଏହା ବହୁବାର 'ପୋଥି ରୂପ' ନେଲାବେଳେ ଏହାର ପ୍ରାଚୀନ ରୂପ ପରିବର୍ତ୍ତିତ ହେବା ସ୍ୱାଭାବିକ । ଚଇତ ଘୋଡ଼ା ନାଚ ବେଳେ ଏହି ଗ୍ରନ୍ଥ କୈବର୍ତ୍ତ ସଂପ୍ରଦାୟପାଇଁ ଲିଖିତ ବେଦ ଭଳି ସମ୍ମାନାସ୍ପଦ ହୋଇଆସିଛି । ସେହିପରି 'ଗରୁଡ଼ ଗୀତା' ଆଧ୍ୟାତ୍ମିକତାର ଶୀତଳ ବୃକ୍ଷଚ୍ଛାୟା ସାଜି ଏହା ଉତ୍କଳର ବହୁ ଅଞ୍ଚଳରେ ଜନପ୍ରିୟତା ହାସଲ କରିଛି । ଏଥିରେ ରହିଛି ଭବିଷ୍ୟତର ଅପରିହାର୍ଯ୍ୟ ପରିଣତି ସମ୍ପର୍କରେ ସୂଚନା । ମାଳିକାଧର୍ମୀ ଗ୍ରନ୍ଥଟି ତେଣୁ ଅନେକ ପରିବର୍ତ୍ତନ ଓ ପ୍ରକ୍ଷିପ୍ତାଂଶର ଶିକାର ହେବାକୁ ବାଧ୍ୟ ହୋଇଛି । ଅନୁରୂପ ପରିଣତି ଆସିଛି ତତ୍ତ୍ୱବୋଧିନୀ ଗୀତା କପାଳରେ । ଏଥିରେ ଅଚ୍ୟୁତାନନ୍ଦଙ୍କ ବିଦଗ୍ଧ ପାଠକ ଓ ଭକ୍ତ ସ୍ଥାନେ ସ୍ଥାନେ ନିଜ ସମୟର ଘଟଣାବଳୀ ବା ବ୍ୟକ୍ତିବିଶେଷଙ୍କୁ ସ୍ଥାପିତ କରିବାରେ ପଶ୍ଚାଦ୍‌ପଦ ହୋଇ ନାହାନ୍ତି । ସଂପାଦନା କାର୍ଯ୍ୟ କଲାବେଳେ ଏହି ଗ୍ରନ୍ଥଟି ବିଶେଷ ଅସୁବିଧା ସୃଷ୍ଟି କରିଛି । ତେଣୁ ପ୍ରାଚୀନତମ ପୋଥିର ପାଠ୍ୟାଂଶକୁ ନିର୍ଭୁଲ ଧରିନେଇ ଏଥିରେ ସନ୍ନିବିଷ୍ଟ କରାଯାଇଛି ।

'ବିରଣ ଚରିତ ଗୀତା' ବାସ୍ତବରେ ଏକ ଐତିହାସିକ ସଂପଦ । ଏହା ସମ୍ବନ୍ଧରେ ସ୍ୱତନ୍ତ୍ର ଭାବେ ଆଲୋଚନା କରାଯାଇପାରେ । ଗୀତା ଶିରୋନାମାରେ କେତୋଟି ଗ୍ରନ୍ଥକୁ ଏଥିରେ ସ୍ଥାନ ଦିଆଯାଇଛି, ଯାହା ପ୍ରକୃତରେ ଗୀତା ନୁହଁ । ଗୁରୁ ଶିଷ୍ୟ ବା ବକ୍ତା-ଶ୍ରୋତା କ୍ରମରେ ରଚିତ ଧର୍ମଉପଦେଶ ଗ୍ରନ୍ଥକୁ ଗୀତା କୁହାଯାଏ । ସେ ଲକ୍ଷଣ ଏଥିରୁ ପାଠକେ ପାଇବେ ନାହିଁ; ମାତ୍ର ଗ୍ରନ୍ଥକାରଙ୍କ ଶିରୋନାମା ଦୃଷ୍ଟିରୁ ତାହାକୁ ଆମେ ଅନୁରୂପ ଭାବେ ସ୍ଥାନ ଦେଇଛୁ । ସ୍ରଷ୍ଟାର ସୃଷ୍ଟିକୁ ଚିହ୍ନିବାକୁ ହେଲେ ପ୍ରଥମେ ସ୍ରଷ୍ଟାଙ୍କ କିଂଚିତ୍ ପରିମାଣ ଜାଣିବା ଉଚିତ । ଏଠି ତେଣୁ ପରିଚୟ ପର୍ବର ଆବଶ୍ୟକତା ପଡ଼ୁଚି ।

ସାଧକ କବି ଅଚ୍ୟୁତାନନ୍ଦ ଦାସ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଉତ୍କଳ, ଉତ୍କଳର ଆରାଧ୍ୟ ଦେବତା ଜଗନ୍ନାଥ ତଥା ତାଙ୍କର ଅନ୍ତରଙ୍ଗ ସ୍ୱରୂପ ଏବଂ ନିଜ ଗୁରୁ ପରମ୍ପରା ସମ୍ବନ୍ଧରେ ଆପଣା ଗ୍ରନ୍ଥଗୁଡ଼ିକରେ ବହୁ ପ୍ରାମାଣିକ ତଥ୍ୟ ଲିପିବଦ୍ଧ କରିଯାଇଛନ୍ତି । ନିଜ ବଂଶ ପରମ୍ପରା ଓ ବଂଶର ଭବିଷ୍ୟତ ବିସ୍ତାର ଧାରା ଉପରେ ସେ ମଧ୍ୟ ଅନେକ କଥା କହିଯାଇଛନ୍ତି । ସବୁଠୁଁ ଆଶ୍ଚର୍ଯ୍ୟ କଥା— ପ୍ରାଚୀନ ଓଡ଼ିଆ ସାହିତ୍ୟରେ ନିଜ ସମ୍ବନ୍ଧରେ ଓ ନିଜ ବଂଶରେ ସବୁଠୁଁ ଅଧିକ କହିଥିବା ଏହି ବ୍ୟକ୍ତି ଏବେ ଅଧିକ ବିବାଦୀୟ ହୋଇ ପଡ଼ିଛନ୍ତି । ଏହି କାଳରେ ଅଚ୍ୟୁତାନନ୍ଦ ଦାସ ଜଣେ/ଦୁ'ଜଣ/ବା ପାଞ୍ଚଜଣ ଥିଲେ ସେ ନେଇ ଖୋଳତାଡ଼ ଚାଲିଛି । ଆହୁରି ମଧ୍ୟ ଅଚ୍ୟୁତାନନ୍ଦ, ଜଗନ୍ନାଥ-ବଳରାମଙ୍କ ସମକାଳୀନ କବି ନଥିବା କଥା କେହି କେହି ଯୁକ୍ତି କରୁଛନ୍ତି ।

ନୂତନ ସତ୍ୟର ଆବିଷ୍କାରପାଇଁ ଯୁକ୍ତିର ଆବଶ୍ୟକତା ରହିଛି, ମାତ୍ର ସତ୍ୟର କଣ୍ଠରୋଧ କରିବା ନିମିତ୍ତ ନୁହେଁ । ଯେମିତି ଯୁକ୍ତି କରାଯାଇପାରେ—ଷୋଡ଼ଶ ଶତାବ୍ଦୀରେ ଖ୍ୟାତି ପାଇଥିବା—ଅଗଣି, ଅଚ୍ୟୁତାନନ୍ଦ, ଶୂଦ୍ର ଅଚ୍ୟୁତ, କ୍ଷତ୍ରିୟ ଅଚ୍ୟୁତ, କରଣ କୁଳରେ ଜାତ ଅଚ୍ୟୁତ, ଗୋପାଳ ଅଚ୍ୟୁତ, କୈବର୍ତ୍ତ ଅଚ୍ୟୁତ, କମାର ତଥା ଦୀନ ଅଚ୍ୟୁତ ଏକ ଓ ଅଭିନ୍ନ । ଏହାର ପ୍ରମାଣପାଇଁ ତାଙ୍କର ସୃଷ୍ଟି-ସାମ୍ରାଜ୍ୟରେ ଉଦାହରଣ କିଛି କମ୍ ନାହିଁ । ଯଥା :—

''ସୃଷ୍ଟି ଉଆଣ ବ୍ରହ୍ମା ଯହୁଂ କଲ । ଛପନ କୋଟିଯେ ଜୀବ ଉଆଇଲ ॥
ତହୁଂରେ ମାନବ ହୋଇଲ ସାର । ବର୍ଣ୍ଣ ଗୋଟି ହେଲ କର୍ମ ବଳର ॥
କର୍ମରୁ ବର୍ଣ୍ଣ ସୃଜନା ହୋଇଛି । କର୍ମ ଛଡ଼ା ଯେ ଆନ ନାହିଂ କିଛି ॥
ମୋର ପିତାମହ ସେ ଗୋପୀନାଥ । ମହାନ୍ତି ତାହାଙ୍କ ଅଟେ ପଦ୍ଧତି ॥
ଶ୍ରୀକ୍ଷେତ୍ରେ ଲିପିକରଣ ସେ ଥିଲେ । ରାମ ଆଜ୍ଞାଂରେ ସେ ଦିନ କାଟିଲେ ॥
ତାଙ୍କ ପୁତ୍ର ମୋର ପିତା ଅଟନ୍ତି । ଶ୍ରୀକ୍ଷେତ୍ରେ ଖୁଣ୍ଟିଆ କର୍ମ କରନ୍ତି ॥
ପ୍ରତାପ ନୃପତି ସନ୍ତୋଷ ହୋନ୍ତେ । ଖୁଣ୍ଟିଆ ପଦ ଦିଲେ ମୋର ତାତେ ॥
ତହୁଂ ଦୀନବନ୍ଧୁ ଖୁଣ୍ଟିଆ ହେଲେ । ନୀଳାଚଳରେ ଯେ ସେବା ଖଟିଲେ ॥
ଅହୋକରଣଙ୍କ ବର୍ଣ୍ଣ ଯୋଗରେ । ବିସ୍ତାର ବର୍ଣ୍ଣ ସଂହିତା ଗ୍ରନ୍ଥରେ'' ॥

ବର୍ଣ୍ଣଟୀକା, ୫୦—୫୮

କବି ଅଚ୍ୟୁତାନନ୍ଦ କ୍ଷତ୍ରୀୟ ଗୋପୀନାଥଙ୍କର ନାତି । ଗୋପୀନାଥ ଗଜପତି ରାଜାଙ୍କର ଲିପିକରଣ ଥିଲେ । ଅଚ୍ୟୁତାନନ୍ଦଙ୍କ ପିତାଙ୍କ ନାମ ଦୀନବନ୍ଧୁ ଖୁଣ୍ଟିଆ । ସେ କରଣ କର୍ମ କରୁଥିବାରୁ କବି ଅଚ୍ୟୁତାନନ୍ଦ କରଣ ପୁତ୍ର ବୋଲିଇଥିଲେ । ମାତ୍ର ସ୍ୱୟଂ କବି

ଅଚ୍ୟୁତ ପାଳିଥିଲେ ଶୂଦ୍ର । ଗୋପାଳ ଓଗାଳ, କୈବର୍ତ୍ତ ଗୀତା ଆଦି ଲେଖି ସେ ସେହି ହେତୁ ସଂପ୍ରଦାୟର ଲୋକରୂପେ ପରିଚିତ ହେବା ବିଚିତ୍ର କଥା ନୁହେଁ । ତା' ଛଡ଼ା ପିତାମହଙ୍କ ଦେହାନ୍ତ ପରେ ଅଚ୍ୟୁତଙ୍କ ପିତା ଦୀନବନ୍ଧୁ ରାଜକୃପା ସମ୍ପନ୍ନ ପରି-ମାଣରେ ଲାଭ କରିପାରିଲେ ନାହିଁ । ସେ ପ୍ରତାପରୁଦ୍ରଙ୍କ କୃପାଶିଷ ଲାଭ କରିବା ବେଳକୁ ତାଙ୍କ ପରିବାର ଦାରିଦ୍ର୍ୟ ନିପୀଡ଼ିତ ହୋଇ ପଡ଼ିଥିଲା । ତେଣୁ ବାଲ୍ୟ ପ୍ରସଙ୍ଗ ଲେଖିଲା ବେଳେ ସେ ଉଲ୍ଲେଖ କରିଛନ୍ତି—

''ତଳକଣାରେ ମୁଂ ଜନମ ଲଭିଲି କେହି ନ ଚହ୍ନିଲେ ମୋରେ।
ଅଗଣିତ ବୋଲି ମାତା ଡାକୁଥାନ୍ତି ଅନ୍ନ ନ ମିଳଇ ଘରେ ॥''

— ଶୂନ୍ୟ ସଂହିତା ; ୧୮ଶ ଅଧ୍ୟାୟ

ଦାସ୍ୟଭାବ ବା ବୈଷ୍ଣବୀୟ ନମ୍ରତା ହେତୁ ସେ ନିଜକୁ ଦୀନ ଅଚ୍ୟୁତ ବୋଲି ପରିଚିତ କରାଇଥିଲେ ମଧ୍ୟ ତାଙ୍କର ବିବାହ ହୋଇଥିଲା ଏକ ରାଜବଂଶରେ । ପିତାଙ୍କର ରାଜାକୃପା ଲାଭ ଓ ପୂର୍ବର କୌଳିକ ପଦବୀର ବିନିମୟରେ ଏଇ ବିବାହ ସଂଘଟିତ ହେବାରେ କିଛି ବାଧା ନଥିଲା । ତା'ଛଡ଼ା ବୈଷ୍ଣବ କବି ଯଶୋବନ୍ତ ଯେଉଁ ପରିବାରର, ସେଠି ଅଚ୍ୟୁତାନନ୍ଦଙ୍କ ଭଳି ସିଦ୍ଧକବିଙ୍କର ବିବାହ ଅସମ୍ଭବ ନ ଥିଲା । ମନେ କରାଯାଇପାରେ ଯେ, ଏହି ଅଡ଼ଙ୍ଗ ରାଜବଂଶୀ ଲୋକେ ତତ୍କାଳରେ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ ଏବଂ ସଂସାରବିରାଗୀ ଅଚ୍ୟୁତାନନ୍ଦଙ୍କୁ ସଂସାରୀ ହେବାକୁ ପ୍ରବର୍ତ୍ତାଇ ଥିଲେ ।

ଦାରିଦ୍ର୍ୟ ନିପୀଡ଼ିତ ଅଚ୍ୟୁତାନନ୍ଦଙ୍କ ପରିବାର କବିଙ୍କ ଜୀବଦ୍ଦଶା ଭିତରେ ହେଲା ରାଜକୀୟ ସମ୍ମାନର ଅଧିକାରୀ । ବୈଷ୍ଣବ ଭେକ ଗ୍ରହଣ କରିସାରିବା ପରେ ସେ ହୋଇଗଲେ ପତିତ ଜନତାର ସାଂସ୍କୃତିକ ତଥା ଧାର୍ମିକ ଚିତ୍ତବୃତ୍ତିର ପ୍ରତିନିଧି । ତେଣୁ ସେ ଏକ ବିପୁଳ ଜନସଂପ୍ରଦାୟର ପ୍ରିୟତମ ତ୍ରାଣକର୍ତ୍ତା ହୋଇ ପାରିଥିଲେ ।

ନୀଳାଚଳ ଧାମର ଜାତି-ବର୍ଣ୍ଣହୀନ ଧାର୍ମିକ ସମାଜର ଆତ୍ମିକ ବୈଶିଷ୍ଟ୍ୟହିଁ ପଞ୍ଚସଖାଙ୍କୁ ଅନୁପ୍ରାଣିତ କରିଥିଲା । କୌଣସି ନା କୌଣସି କାରଣରୁ ଏମାନେ ଶ୍ରୀକ୍ଷେତ୍ର ସହିତ ସଂପୃକ୍ତହୋଇ ନିଜ ନିଜ ରଚନାବଳୀରେ ଜଗନ୍ନାଥ ଚେତନାକୁ ଅଙ୍ଗୀଭୂତ କରିପାରିଥିଲେ । ଷୋଡଶ ଶତାବ୍ଦୀର ପ୍ରଥମ ପାଦରେ ଏମାନେ ସାହିତ୍ୟ କ୍ଷେତ୍ରରେ ଯଶସ୍ୱୀ ପଦାଙ୍କ ଅଙ୍କନ କଲାପରେ ଓଡ଼ିଶାରେ ଚୈତନ୍ୟଙ୍କ ଆବିର୍ଭାବ ଘଟିଲା । ଜଗନ୍ନାଥ ଏମାନଙ୍କର ଆତ୍ମିକ ଆରାଧ୍ୟ ଦେବତା । ମାତ୍ର ଶିଷ୍ୟ ମଣ୍ଡଳୀଦ୍ୱାରା ବହୁ ପ୍ରଚାରିତ ଚୈତନ୍ୟ ଦେବ ଏମାନଙ୍କପାଇଁ ଆକସ୍ମିକ ଗୁରୁ । ଏହି କାଳରେ ଚୈତନ୍ୟଙ୍କ ଉତ୍କଳ ଆଗମନ ନ ଘଟିଥିଲେ ମଧ୍ୟ ଏମାନେ ଯାହା ହୋଇ-

ଛନ୍ତି, ତାହା ନଷ୍ଟପ୍ରାୟ ହୋଇଥାନ୍ତେ । ବରଂ ପିଣ୍ଡ ବ୍ରହ୍ମାଣ୍ଡର ଉପର କ୍ଷେତ୍ରରେ ରାଗାନୁଗାର ଲଳିତ ଗୁଚ୍ଛ ଗ୍ରୋପକେଶ ପ୍ରେମଭକ୍ତି ବୀଣ ତାରକାରେ ଏମାନେ ଯେଉଁ ଅସଫଳ ପ୍ରୟାସ କରିଛନ୍ତି, ଅନ୍ତତଃ ତାହା ହୋଇ ନ ଥାନ୍ତା । କେବଳ ଗୁରୁଦୀକ୍ଷା ଓ ଶିଷ୍ୟ ପରମ୍ପରାକୁ ଜାବୃତ୍ତ ଧରି ଏମାନେ ପ୍ରତ୍ୟେକେ ସ୍ୱକୀୟ ଆଦର୍ଶକୁ ନେଇ ସୃଜନ ସ୍ୱପ୍ନ ଦେଖିଛନ୍ତି । ସ୍ଥଳବିଶେଷରେ ଅଚ୍ୟୁତାନନ୍ଦ ଏମାନଙ୍କୁ କେବଳ 'ସଖା' ନ କହି 'ଶାଖା' କହିବାକୁ କୁଣ୍ଠାବୋଧ କରିନାହାନ୍ତି ।

ଚିନ୍ତା-ଧାରାର ଉପାସନା ପଦ୍ଧତି ଓ ମନ୍ତ୍ର ଜପ ବିଧିରେ ଏହି ପାଞ୍ଚଜଣଙ୍କର ସ୍ୱାତନ୍ତ୍ର୍ୟ ଦେଖିବାକୁ ମିଳେ । ଧାର୍ମିକ ଚିତ୍ତବୃତ୍ତି ଓ ଉତ୍କଳୀୟ ଭାବଧାରାରେ ଏମାନେ ଅଭିନ୍ନ ହେଲେ ବି ନିଜ ନିଜ କ୍ଷେତ୍ରରେ ସ୍ୱତନ୍ତ୍ରତା ପ୍ରକାଶ କରିଯାଇଛନ୍ତି । ତେଣୁକରି ଏମାନେ ସଖା ଓ ଶାଖା । ଗଜପତି ପ୍ରତାପରୁଦ୍ର ଦେବଙ୍କ ପୃଷ୍ଠପୋଷକତା ପାଇ ଚୈତନ୍ୟ ଓଡ଼ିଶାରେ ନିଜଦ୍ୱାରା ପ୍ରଚାରିତ ଧର୍ମାଦର୍ଶକୁ ବଳିଷ୍ଠ କରୁଥିବା ଲଗ୍ନରେ ଅଚ୍ୟୁତାନନ୍ଦ ତାଙ୍କ ସାନିଧ୍ୟ ଲାଭ କରିଥିଲେ । ଚୈତନ୍ୟଙ୍କ ପାଣ୍ଡିତ୍ୟ ତାଙ୍କୁ ମୁଗ୍ଧ କରିବାରୁ ସେ ତାଙ୍କ ଶିଷ୍ୟତ୍ୱ ସ୍ୱୀକାର କରିଥିଲେ । ମାତ୍ର ସମସ୍ତଙ୍କର ମହାସ୍ରୋତରେ ପ୍ରତାପରୁଦ୍ରଙ୍କର ଏହି ଧାର୍ମିକ ତଲ୍ଲୀନତା ଜାତୀୟ ଅଧଃପତନର କାରଣ ହୋଇ ଦେଖାଦେଲା । ଦୀର୍ଘଜୀବୀ ଅଚ୍ୟୁତାନନ୍ଦ ତାଙ୍କ ଜୀବଦ୍ଦଶାରେ ଦେଖିଲେ ଗଜପତି ବଂଶର ଅବକ୍ଷୟ ଏବଂ ଶୁଣିଥିଲେ ଉତ୍କଳୀୟ ମହାଜାତିର ପରାଧୀନ କାଳୀନ ଆର୍ତ୍ତି-ଯନ୍ତ୍ରଣା । ସେଥିପାଇଁ ସେ ଭବିଷ୍ୟତ ମାଳିକାମାନଙ୍କରେ ଯାହାସବୁ ଲେଖିଥିଲେ ତହିଁରୁ କେତେକ ଅଙ୍ଗେ ନିଭେଇଥିବା ସମକାଳୀନ ଘଟଣା, କେତେକ ଦିବ୍ୟଦୃଷ୍ଟିରେ ଦେଖିଥିବା ଭବିଷ୍ୟତର ସମ୍ଭାବ୍ୟ ଘଟଣା ଓ ଆଉ କେତେକ ଘୋର କଳିପରେ ସତ୍ୟ ଆଗମନର ଆଶ୍ୱାସନାମୟ ବାର୍ତ୍ତା । ଇତିହାସକୁ ଉପାଦାନ ଯୋଗାଇବାପାଇଁ ସେ ଅନେକ ସ୍ଥଳରେ ନିଜ ସମୟର କଥା କହି ଉଠିଛନ୍ତି ।

କେବଳ ଅଚ୍ୟୁତାନନ୍ଦ ନୁହନ୍ତି, ପଞ୍ଚସଖା ସହ ସମକାଳୀନ ମାଳିକା ଲେଖକମାନେ, ଏ ଦୁର୍ଦ୍ଦିନ ଗ୍ଲାନିଯିବ ଓ ଏକ ସମ୍ଭାବନାମୟ ସତ୍ୟଯୁଗର ଆଗମନ ବିଷୟରେ ଆଶାବାଦୀ । ଯବନମାନଙ୍କର ବାରମ୍ବାର ଆକ୍ରମଣ ଫଳରେ ରାଜନୈତିକ ଅସ୍ଥିରତା, ସାମାଜିକ ଜୀବନରେ ଅଶାନ୍ତି ଓ ଧର୍ମ ଜୀବନରେ ଦୋଳାୟମାନତା ଏମାନଙ୍କୁ ମାଳିକା ଲେଖିବା ବା ଭବିଷ୍ୟତ କଥା କହିବାକୁ ବାଧ୍ୟ କରିଛି । ବିଶେଷ-କରି ଅଚ୍ୟୁତାନନ୍ଦ ଏକ ବିପୁଳ ଜନସମାଜ ସହିତ ନିବିଡ଼ଭାବରେ ସଂପୃକ୍ତହୋଇ ପଡ଼ିଥିବାରୁ ଏଭଳି ଭବିଷ୍ୟତ ବାଣୀ ଅଧିକ ପ୍ରଚାର କରିବାକୁ ଯାଇଛନ୍ତି । ଲିଖିତ ଓ ପ୍ରଚାରିତ ତତ୍ତ୍ୱ-ତଥ୍ୟସବୁକୁ 'ନ କହିବୁ କାହିଂ-ଗୁପତ ରଖିବୁ' ବୋଲି ନିଜ ଶିଷ୍ୟମାନଙ୍କୁ ସେ ବାରମ୍ବାର ଚେତାଇ ଦେଇଛନ୍ତି । ଯବନମାନଙ୍କର ଆକ୍ରମଣ ଓ ଧର୍ମବିଦ୍ୱେଷୀ ମନୋଭାବ ଯୋଗୁଁ ସେ ଏଭଳି ବାଣୀ ପ୍ରଚାର କରିଥିବା ମନେହୁଏ ।

ସତ୍ୟ ଆସିବ; ଧର୍ମର ପୁନଃପ୍ରତିଷ୍ଠା ହେବ; ଭବିଷ୍ୟତ ସମ୍ଭାବନାମସ୍ତୁ; ତେଣୁ ତତ୍ତ୍ୱ କଥାସବୁ ଗୋପନ ରଖିବାକୁ ନିର୍ଦ୍ଦେଶ ଦେଇଥିଲେ ସେ । ସେଥିପାଇଁ ବୋଧହୁଏ ତାଙ୍କୁ ଦିବ୍ୟଦ୍ରଷ୍ଟା, ଭବିଷ୍ୟତ ଦ୍ରଷ୍ଟା, ମହାପୁରୁଷ ଅଚ୍ୟୁତାନନ୍ଦ ବୋଲି ଲୋକେ କହିବାକୁ ଆରମ୍ଭ କରିଥିଲେ । ଏକନିଷ୍ଠ ସାଧନା ଓ ବଚନସିଦ୍ଧତାପାଇଁ ତାଙ୍କ ପ୍ରସିଦ୍ଧି ବହୁ-ବ୍ୟାପ୍ତ ହୋଇଥିଲା । ଏହାସତ୍ତ୍ୱେ ତାଙ୍କ ବ୍ୟକ୍ତିଗତ ଜୀବନ ଓ ସାହିତ୍ୟ ସାଧନାକୁ ସମନ୍ୱିତ କରି ଦେଖିଲେ ଜଣାପଡ଼େ ସେ ଜଣେ ବିଦ୍ରୋହୀ ମାନବାତ୍ମା ଥିଲେ । ସେ କର୍ମ ଭିତ୍ତିକ ଜାତି ଉପରେ ଆସ୍ଥା ରଖିଥିଲେ ମଧ୍ୟ ସର୍ବଦା ଏକ ଜାତି-ବର୍ଣ୍ଣହୀନ ସମାଜର ସ୍ୱପ୍ନ ଦେଖୁଥିଲେ । 'ବରଣ ଚରିତ ଗୀତା' ଏହି ଭାବଧାରାର ଏକ ବଳିଷ୍ଠ ପ୍ରତିନିଧି ।

ସମଗ୍ର 'ବରଣଚରିତ ଗୀତା'ଟି ଗୁରୁ ଅଚ୍ୟୁତାନନ୍ଦ ଓ ଶିଷ୍ୟ ରାମଚନ୍ଦ୍ର ଦାସଙ୍କ ବାର୍ତ୍ତାଳାପ ଭିତରେ ରଚିତ ହୋଇଛି । ଏହି 'ଗୀତା'ର ବିବରଣୀରୁ ଯାହା ଜଣାପଡ଼େ, ଚୈତନ୍ୟ ପ୍ରବର୍ତ୍ତିତ ଭକ୍ତି ମାର୍ଗକୁ ଅଚ୍ୟୁତାନନ୍ଦ ପରୋକ୍ଷଭାବେ ସ୍ୱୀକାର କରି ନଥିଲେ । ଶ୍ରୀ କ୍ଷେତ୍ରରେ ଚୈତନ୍ୟ ମାର୍ଗୀଙ୍କ ପ୍ରାବଲ୍ୟ ଲକ୍ଷ୍ୟ କରି ସେହି ସ୍ଥାନ ଛାଡ଼ି ଦେବୀ-ଭୂମି ଝଙ୍କଡ଼କୁ ଏକାନ୍ତ ସ୍ଥାନ ମନେକରି ସେଠାରେ ଏକ ଭକ୍ତ ସମାବେଶ ଆୟୋଜନ କରିଥିଲେ ସେ । ('ବିହାସର ଥାନ ଅତି ସ୍ୱେକାନ୍ତ ବାଞ୍ଛଇ / ସ୍ୱେକାନ୍ତ ବାସିନୀ ଯହିଂ ଠାବରେ ଅଛଇ' । ୫୪୨ । ) ଏହି ସମାବେଶର ପୁରୋଧା ଥିଲେ ଶୂଦ୍ରମୁନି ସାରଳାଦାସଙ୍କ ଜାତି ଭୂପତି ପରିଡ଼ା । (ବହୁତ ଗୋପାଳ ମେଳ ଗୁରୁବାର ଦିନ/ ସାରୋଳ ଦାସ ଜାତି ଆସନ୍ତି ସେ ଥାନ' । ୫୬୩ । ) ନିଜର ଭଜନ ଉପାସନା ମାର୍ଗର ସ୍ୱାତନ୍ତ୍ର୍ୟ ଦର୍ଶାଇବା ନିମିତ୍ତ ସେ ଭକ୍ତ ମଣ୍ଡଳୀରେ ପ୍ରଚାର କରିଦେଇଛନ୍ତି ଯେ—

"ଗୋପରେ ବିହାସ ନଦୀଆରେ କୀର୍ତ୍ତନ ।

ଏଥି ଉଦେ' କଲୁଂ ଏବେ ବିହାସ-କୀର୍ତ୍ତନ । ୫୬୬ ।

ଉଦ୍ଧବ ଆନୁଂ ବୃନ୍ଦାବନ ନାହିଂଟି ବିହାସ ।

ଏ ମଞ୍ଚ ମଣ୍ଡଳେ ଯେତେ ବଇଷ୍ଣମ୍ବ ଦାସ । ୫୬୭ ।

କଳିରେ ବିହାସ ଥାନ ଅଟଇ ଜଙ୍ଗରା ।

ସଙ୍କୀର୍ତ୍ତନ ଆରମ୍ଭ ଯେ ନଦୀଆ ନଗର" । ୫୬୮ ।

ଅଚ୍ୟୁତାନନ୍ଦ ପ୍ରବର୍ତ୍ତିତ ଏହି ବିହାସ କୀର୍ତ୍ତନର କେତୋଟି ବୈଶିଷ୍ଟ୍ୟ ସେ ସ୍ପଷ୍ଟତଃ ଏଥିରେ ସୂଚନା ଦେଇଛନ୍ତି । ଯଥା :—କ) ଆଗରୁ ଗୋପରେ ଥିଲା ରାସ ଏବଂ ନଦୀଆରୁ କୀର୍ତ୍ତନ ଆରମ୍ଭ ହୋଇଥିଲା । ମାତ୍ର ଶକ୍ତିପୀଠ ଝଙ୍କଡ଼ର ସାରଳାଙ୍କ ପାଖରୁ ସେ ଆରମ୍ଭ କଲେ 'ବିହାସ କୀର୍ତ୍ତନ' । ଅବଶ୍ୟ ଏଠାରେ ସ୍ମରଣ କରାଯାଇ ପାରେ ଯେ,

ଚୈତନ୍ୟ ଦେବପୀଠ ଶ୍ରୀକ୍ଷେତ୍ରକୁ ନିଜ କର୍ମଭୂମି ବାଛୁବାବେଳେ ଅଚ୍ୟୁତାନନ୍ଦ ଦେବୀ ପୀଠ ବା ଶକ୍ତିପୀଠ ଝଙ୍କଡ଼କୁ ନିଜର ସାଧନା ଭୂମିରୂପେ ବାଛୁଛନ୍ତି । ଖ) ଚୈତନ୍ୟ ପ୍ରବର୍ତ୍ତିତ ପ୍ରେମଲୀଳାର ମୁଖ୍ୟ ଉପଜୀବ୍ୟ ଶରଦରାସ, ମାତ୍ର ଅଚ୍ୟୁତାନନ୍ଦ ଉପଜୀବ୍ୟ ହେଉଛି ବସନ୍ତ ରହାସ । ଗ) ଚୈତନ୍ୟ ଗୋପୀ-କୃଷ୍ଣ ପ୍ରସଙ୍ଗ ବ୍ୟାଖ୍ୟାନ କଲାବେଳେ, ଅଚ୍ୟୁତାନନ୍ଦ ଗୋପାଳ-କୃଷ୍ଣ କଥାକୁ କେନ୍ଦ୍ର କରି ରହାସ ପରିକଳ୍ପନା କରିଛନ୍ତି । ('ବସନ୍ତ ରାହାସ ମାଳା ଉଚ୍ଛବ କରିବା / ଗୋପାଳ ପୋଅଙ୍କୁ ଯେହ୍ନେ ବରଣ କରିବା' । ୫୬୭ ) । ଘ) ଚୈତନ୍ୟ, ଭେକଧାରୀ ବୈଷ୍ଣବ ସାଜି ପ୍ରେମଭକ୍ତି ଜାଗ୍ରତ କରିବା ପାଇଁ ଆହ୍ୱାନ ଦେଇଥିଲାବେଳେ ଅଚ୍ୟୁତାନନ୍ଦ ସମସ୍ତଙ୍କୁ ଶୂଦ୍ର ଭାବାପନ୍ନ ହୋଇ କର୍ମ ଅନୁସାରେ ସେବକ ହେବାପାଇଁ ଚେତାବନୀ ଶୁଣାଇଥିଲେ । (ଗୃହକାଳ ଅଠରହ ପାଷକ ଯେ ଲେଡ଼ / ଛାଡିଣ କୃଷ୍ଣଙ୍କ ସେବା ଅର୍ପିଣ ନ ଛାଡ଼ । ୧୫୧ । ଏହାସତ୍ତ୍ୱେ ଅଚ୍ୟୁତାନନ୍ଦଙ୍କର ଚୈତନ୍ୟଙ୍କ ପ୍ରତି ଯଥେଷ୍ଟ ସମ୍ମାନ ଓ ଭକ୍ତି ଥିଲା । ତାଙ୍କ ଶିଷ୍ୟ ପରମ୍ପରାରେ ବାନ୍ଧି ହେଲାବେଳେ ସେ ନିଜକୁ କିଛି କମ୍ ଗୌରବାନ୍ୱିତ ମନେ କରି ନାହାନ୍ତି । ଉଦାର ମାନବବାଦୀ କବି ଅଚ୍ୟୁତାନନ୍ଦ ଯାହାଠାରୁ କିଛି ଶିକ୍ଷା କରିଛନ୍ତି, ତାଙ୍କୁ ଗୁରୁ ବୋଲି ସ୍ୱୀକାର କରିଛନ୍ତି—ଠିକ ଅବଧୂତଙ୍କ ଚବିଶ ଗୁରୁ ଭଳି । ସେ ନିଜର ବହୁ ଗ୍ରନ୍ଥରେ ଲେଖିଛନ୍ତି – ଚୈତନ୍ୟ ଦେବଙ୍କ ନିର୍ଦ୍ଦେଶରେ ସନାତନ ଗୋସ୍ୱାମୀଙ୍କଠାରୁ ସେ ଦୀକ୍ଷାଗ୍ରହଣ କରିଛନ୍ତି । ଅଥଚ ଅଚ୍ୟୁତାନନ୍ଦଙ୍କ ରାସଗୁରୁ ହେଲେ ଭାଗବତକାର ଜଗନ୍ନାଥ ଦାସ । ସାରଳାଙ୍କ ନିକଟରେ ବସନ୍ତ ରାହାସ ଆୟୋଜନ କଲାବେଳେ ସେ ପ୍ରଥମେ ଗୁରୁବରଣ କରିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି ।

ଏହି ପ୍ରସଙ୍ଗରୁ ଯାହା ଜଣାପଡ଼େ, ଶାରଳା ପୀଠରେ ଏହି ଭକ୍ତ ସମାବେଶ ହେଲାବେଳକୁ ଚୈତନ୍ୟ ଶ୍ରୀକ୍ଷେତ୍ରରେ ବିଦ୍ୟମାନ ଥିଲେ । ଅଚ୍ୟୁତାନନ୍ଦ ତାଙ୍କର ରାସଗୁରୁ ଜଗନ୍ନାଥ ଦାସଙ୍କୁ ସେ ସ୍ଥଳକୁ ଆସିବା ପାଇଁ ନିମନ୍ତ୍ରଣ ପଠାଇଥିଲେ ମଧ୍ୟ ଚୈତନ୍ୟଙ୍କୁ ଡାକିନାହାନ୍ତି । ମୁଖ୍ୟତଃ ଜଗନ୍ନାଥ, ଯଶୋବନ୍ତ, ଅନନ୍ତ ଓ ଅଚ୍ୟୁତ ଏଠାରେ ସେମାନଙ୍କ ଶିଷ୍ୟମଣ୍ଡଳୀ ସହିତ ଏକାଠି ହୋଇଛନ୍ତି । ବସନ୍ତ ରହାସର ଯେଉଁ ଦୀର୍ଘ ବିବରଣ ବିଧି କବି ଏ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି, ତାହା ଏ ଅଞ୍ଚଳରେ ଏବେ ବି ପ୍ରଚଳିତ ଥିବା 'ବୈଷ୍ଣବ ମେଳା' ଭିନ୍ନ ଅନ୍ୟ କିଛି ନୁହେଁ । ବିବାହ ବା ଶୁଭ-ଅଶୁଭ କାର୍ଯ୍ୟମାନଙ୍କରେ ଗୃହସ୍ଥମାନେ ଗ୍ରନ୍ଥ ବର୍ଣ୍ଣିତ ପ୍ରଣାଳୀରେ ଗୋଟିଏ ବୈଷ୍ଣବ ମେଳା କରିଥାନ୍ତି । ଏ ପରମ୍ପରାଟି ଏହି ସନ୍ଥକବି ଅଚ୍ୟୁତାନନ୍ଦଙ୍କ ଦ୍ୱାରା ପ୍ରବର୍ତ୍ତିତ ।

ରାମ ଦାସଙ୍କଠାରୁ ଦୀକ୍ଷାଗ୍ରହଣ କରିଥିବା ଦ୍ୱାଦଶ ଗୋପାଳ ଏହି ଶାରଳା ପୀଠରୁ ବୈଷ୍ଣବତ୍ତ୍ୱ ଲାଭ କଲାପରେ ତା'ର ପୂର୍ତ୍ତିତାପାଇଁ ପୃଥ୍ୱୀ ପ୍ରଦକ୍ଷିଣ (ଭାରତ

ଭ୍ରମଣ)ରେ ଯାଇଛନ୍ତି । ସେମାନଙ୍କର ଭ୍ରମଣ କାହାଣୀ ଅତିଶୟୋକ୍ତିକ ବିବରଣୀରେ ଭରପୂର । ହେବା ମଧ୍ୟ ସ୍ୱାଭାବିକ । ଅଲୌକିକତାର ପ୍ରଶ୍ରୟ ହିଁ ଲୌକିକ ବ୍ୟାପାରକୁ ସ୍ଥଳ ବିଶେଷରେ ଦୈବିକ ସ୍ତରକୁ ଟାଣିନିଏ । ଏହି ଗ୍ରନ୍ଥରେ ଅଲୌକିକ ଘଟଣାବଳୀ ବର୍ଣ୍ଣିତ ହୋଇଥିବା ସତ୍ତ୍ୱେ ଏହାର ସାହିତ୍ୟିକ ତଥା ଐତିହାସିକ ଭାବମୂର୍ତ୍ତି ନଷ୍ଟ ହୋଇନାହିଁ ।

ମୋଟ ଉପରେ ଅଚ୍ୟୁତାନନ୍ଦଙ୍କ ଗୀତାମାନଙ୍କର ଏହା ସଂକଳିତ ହୋଇଥିବା ପ୍ରଥମ ଖଣ୍ଡ । ପରବର୍ତ୍ତି କାଳରେ ଗୀତାର ଦ୍ୱିତୀୟ ଖଣ୍ଡ ଆତ୍ମପ୍ରକାଶ କରିବ । ଆପଣମାନଙ୍କ ସହୃଦୟତା ଆମର କାମ୍ୟ ।



# ॥ ପ୍ରଥମ ଅଧ୍ୟାୟ ॥

ବନ୍ଦଇ ଶ୍ରୀ ଗଣପତି ଗଉରୀ ନନ୍ଦନ । ପାଶ ଅଙ୍କୁଶ ଯେ ବେନି କରେ ଶୋଭିବନ ।୧।
ଥୂଳ ଉଦର ଶୋଭଇ ଗଜର ବଦନ । ଅମୃତ ମଣୋହିରେ ହିଂ ତୃଷ୍ଣା ତୋର ମନ ॥
ସକଳ କର୍ମ ଆରମ୍ଭେ ତୋହୋର ଯେ ପୂଜା । ଉନ୍ଦୁରି ଦୋହରି ହାର କଣ୍ଠେ ନାଗରାଜା ॥
ସିନ୍ଦୂରବରଣ ତନୁ ଅତି ଶୋଭିବନ । ଧବଳ ବରଣ ନାଥ ତୋହୋର ବଦନ ॥
ତୋହର ମହିମା ନାଥ କେବା ପାରେ କହି । ଧରଣୀ ମଧ୍ୟରେ ଅଛି ନର ଦେହ ବହି ॥
ମୋହରେ ସୁଦୟା କର ଦେବ ଗଣନାଥ । କୃଷ୍ଣର ଚରିତ ବର୍ଣ୍ଣି କରିବଇଁ ଗ୍ରନ୍ଥ ॥
ନମୁଁ ଦେବ ଲମ୍ବୋଦର ତୋହର ପଦ୍ମରେ । ତୋହ କୃପାରେ ଗ୍ରନ୍ଥ କରିବି କିଂଶତରେ ॥
ନମଇଁ ହେ ଆଦିନାଥ ତୋହର ଚରଣ । ଦେବକୀ ନନ୍ଦନ ପ୍ରଭୁ ପରମ କାରଣ ॥
ଜୟ ଜୟ ଜଗନ୍ନାଥ ଜୟ ଗଦାଧର । କଂସ କେଶୀ ବିନାଶିଣ ପୃଥ୍ୱୀ ଭାର ହର ॥
ଆଦି ଅବତାରେ ତୁହି ମୀନରୂପ ଧରୁ । ପ୍ରଳୟ ଜଳରେ ଶଙ୍ଖାସୁରକୁ ସହାରୁ ।୧୦।
ବେଦ ଉଦ୍ଧରିଣ ଆଣି ବିଧାତାକୁ ଦେଲୁ । ଏ ତିନିଭୁବନେ ପ୍ରଭୁ ଧର୍ମ ଯେ ଥାପିଲୁ ॥
ଦ୍ୱିତୀୟେ କୂର୍ମରୂପ ହୋଇଲୁ ମୁରାରି । ମନ୍ଦର ବହିଲୁ ପୃଷ୍ଠେ ତ୍ରିଣ ପ୍ରାୟେ କରି ॥
ଅନନ୍ତ ବାସୁକି ରଜ୍ଜୁ ମେରୁ ଖୁଆ କରି । ସମୁଦ୍ର ମନ୍ଥିଲୁ ଦେବାସୁର କରେ ଧରି ॥
ଅଇରାବତ ହାଥୀ ଯେ ଉତୁପତି ନାଥ । ସମୁଦ୍ର ଭିତରୁ ସେହୁ ହୋଇଲାକ ଜାତ ॥
ସେ ହାଥୀକି ଦେଲୁ ତୁହି ଇନ୍ଦ୍ର ରାଜନଙ୍କୁ । ଧରଣୀରେ ବୃଷ୍ଟି କରି ପାଳେ ପରଜାଙ୍କୁ ॥
ପୁଣି ହିଁ ଜନ୍ମିଲା ତହିଁ ପାରିଜାତ ପୁଷ୍ପ । ସ୍ୱର୍ଗ ଉଦ୍ୟାନରେ ଏହା ଶୋଭିଲା ବିଶେଷ ॥
ସମୁଦ୍ର ମନ୍ଥନୁ ପୁଣି ହୋଇଲାକ ଜାତ । ନବରତ୍ନ ତୁଲେ ଲକ୍ଷ୍ମୀ ଅମୃତ ହିଁ ଜାତ ॥
ଉତୁଟିବା କାରଣ ଯେ ବିଷ କାଳାନଳ । ସଂସାର ଦାହନ ଏହି କରିବ ସକଳ ॥
ବ୍ରହ୍ମା ବୋଲେ ଶିବ ବିଷ ତୁମ୍ଭଙ୍କୁ ଯୋଗାଇ । ତୁମ୍ଭର ଗର୍ଭରେ ସବୁ ବିଷ ଭସ୍ମ ଯାଇ ॥
ବ୍ରହ୍ମାର ବଚନେ ଶିବ ସନମତ କଲେ । କାଳାନଳ ବିଷ ପ୍ରଭୁ ସ୍ୱହସ୍ତରେ ନେଲେ ॥
ବିଷ ଯେ ଭକ୍ଷିଲେ ଶିବ ଗର୍ଭେ ଭସ୍ମ ହେଲା । ଅଳପମାତ୍ରକ ବିଷ କଣ୍ଠରେ ରହିଲା ।୨୧।
କଣ୍ଠେ ଲାଗି ବିଷ ଜ୍ୱାଳା କଲାକ ଶରୀର । କଣ୍ଠଯାକ ନୀଳବର୍ଣ୍ଣ ଦିଶିଲା ତାହାଙ୍କର ॥
ତେଣୁକରି ନୀଳକଣ୍ଠ ନାମ ସେ ବହିଲେ । ବିଷ ତେଜରେ ସଦା ସେ ଜଳରେ ବୁଡ଼ିଲେ ॥
ଖୀରକୁ ଉଠିଲେ ମଥା ଭ୍ରମ ଯେ କରଇ । ତେଣୁକରି ଜଳ ଶିବ ଛାଡ଼ି ନ ପାରଇ ॥
ଜଳର ଭିତରେ ପୁଣି ଗୃହ ଯେ ବାନ୍ଧିଲେ । ସଂସାରର ଜନେ ତହିଁ ପୂଜାବିଧି କଲେ ॥
ଅହର୍ନିଶ ଜଳ ତାଙ୍କ ଶିରରେ ଢାଳଇ । ତେଣୁକରି ବିଷଜ୍ୱାଳା ନିବର୍ତ୍ତି ହୋଅଇ ॥
ଅନନ୍ତ ବାସୁକି ଅଙ୍ଗେ ମଦନରି ଜ୍ୱାଳା । ବିନ୍ଦୁ ଉଛୁଳି ସମୋଦ୍ର କଲ୍ଲୋଳେ ପଡ଼ିଲା ॥
ବିନ୍ଦୁ ପଡ଼ନ୍ତେ ତହିଁରୁ ଉପୁଜି ତାତ୍କାଳେ । ନାନାଦି ବର୍ଣ୍ଣେଣ ବୃକ୍ଷ ଉଠିଲେ ସେ ଜଳେ ॥
ସପ୍ତଦ୍ୱୀପା ପୃଥିବୀରେ କାନନ ଘୋଟିଲା । ଅନନ୍ତ ବାସୁକି ରଜ୍ଜୁ ମେରୁ ଖୁଆ ହେଲା ॥
କୂର୍ମରୂପେ ମେରୁ ଟେକି ଧଇଲୁ ପୃଷ୍ଠରେ । ସମୁଦ୍ର ମନ୍ଥନ କଲୁ ବେନି ଦେବାସୁରେ ॥

ନମସ୍ତଂ ଯେ କାଳରୂପୀ ଦେବ ଭଗବାନ । ଦାନ୍ତଅଗ୍ରେ ପୃଥିବୀକି ଧଇଲୁ ନାରାୟଣ ।୩୧।
ନମସ୍ତଂ ଯେ ନରସିଂହ ରୂପ ଭୟଙ୍କର । ନଖଅଗ୍ରେ ବିଦାରିଲୁ ହିରଣ୍ୟ ଶରୀର ॥
ପ୍ରହ୍ଲାଦ କୁମରକୁ ସ୍ୱର୍ଗେ ଇନ୍ଦ୍ର କଲୁ । ପୃଥିବୀ ଭାରଭର ହରି ଦେବ ଉଦ୍ଧରିଲୁ ॥
ନମସ୍ତଂ ତ୍ରିପୁରବ୍ୟାପୀ ବାବନସ୍ୱରୂପୀ । ତିନିପାଦ ଦାନେ ବଳି ପାତାଳକୁ ଗୁପି ॥
ଇନ୍ଦ୍ର ଆଦି ହରଷ ଯେ ଦେବତା ସନ୍ତୋଷ । ଅଶେଷ ଜଗତର ଯେ ଭାର କଲୁ ଧ୍ୱଂସ ॥
ନମସ୍ତଂ ଯେ ଭୃଗୁପତି ପ୍ରଶୁରାମ ବୀର । ଏକବିଂଶବାର ଯେ କାଟିଲୁ କ୍ଷତ୍ରି ଶିର ॥
ଯୁଦ୍ଧରେ ତର୍ପଣ କରି ଶତ୍ରୁ ଦର୍ପ ହାରି । ଦୁଷ୍ଟଜନ ନିବାରଣ ସନ୍ଥଙ୍କୁ ଉଦ୍ଧରି ॥
ଦଶରଥ ଘରେ ରାମରୂପେ ଅବତାର । ଜାନକୀ ଛଳେ କାଟିଲୁ ଦଶଶିର ଶିର ॥
ନମସ୍ତଂ ଅନନ୍ତ ହଳଧର ଅବତାର । ଘୋର ଦାନବ ସଂହାରି ପୃଥିବୀଭାର ହର ॥
ନମସ୍ତଂ ଯେ ପ୍ରଭୁ ତୁମ୍ଭ ବୌଦ୍ଧ ଅବତାର । ଅଶେଷ ମଙ୍ଗଳକର ପ୍ରାଣୀମାନଙ୍କର ।୪୦।
ଜୟ ଜୟ ଜଗନ୍ନାଥ କଳକୀ ରୂପ ଧରି । ମ୍ଲେଚ୍ଛ ସଂହାରଣ କରୁ କରେ ଖଡ୍ଗ ଧରି ॥
ଏ ବିଧିରେ ହୋଇ ପ୍ରଭୁ ଦଶଅବତାର । ଦୁଷ୍ଟଙ୍କୁ ନିବାରି ତ୍ରିଭୁବନ ଭାର ହର ॥
ଧର୍ମ ଥାପି ସନ୍ଥ ପାଳି ଦୁଷ୍ଟଙ୍କୁ ସଂହାର । ବୈବସ୍ୱତ ମନ୍ୱନ୍ତରେ ଦ୍ୱାପର ଯୁଗର ॥
ଦ୍ୱାରକାଭୁବନେ ବଳେ କୃଷ୍ଣ ହଳଧର । ତ୍ରିଭୁବନ ନାଥ ସେହୁ ଜଗତ ଈଶ୍ୱର ॥
ପାଣ୍ଡବଙ୍କ ପୁରେ ଯେ ମିଳିଲେ ଭଗବାନ । ଦେଖିଣ ଧର୍ମ ଯୁଜେଷ୍ଟି ନମିଲେ ତକ୍ଷଣ ॥
ଶ୍ରୀକୃଷ୍ଣଙ୍କୁ ଦେଖି ପାର୍ଥ ଶୋକଭର ହେଲ । ନକୁଳ ସହଦେବ ଯେ ଆସି ପ୍ରଣମିଲ ॥
ଦେଖିଣ କଲେକ ମାନ୍ୟ ଯେ ଯାହା ଉଚିତ । ସଭାମଧ୍ୟେ ବସାଇଣ ପୁଛନ୍ତି ଉଦନ୍ତ ॥
ସମସ୍ତ କୁଶଳ ବୋଲି ଶ୍ରୀକୃଷ୍ଣ ବୋଇଲେ । ଶୁଣି ଧର୍ମଯୁଜେଷ୍ଟି ଯେ ସନ୍ତୋଷ ହୋଇଲେ ॥
କୃଷ୍ଣଙ୍କୁ ବିହାଂଶ ଯେ ପୁଛନ୍ତି ଧର୍ମରାଏ । ରାଜସୂୟ ଧର୍ମ ଯଜ୍ଞ କହିବା ଉପାୟେ ॥
ଲକ୍ଷେ ରାଜାଙ୍କୁ ମୁଂ କରିବଇଂ ନିମନ୍ତ୍ରଣ । ବ୍ରହ୍ମାଦି ଦେବତା ଆଦି ସକଳ ଋଷିଗଣ ॥
ଦଣ୍ଡୀ ସନ୍ନ୍ୟାସୀ ଭିକ୍ଷୁକ ବଷ୍ଟମ ବ୍ରାହ୍ମଣ । ବୈରାଗୀ ଶୋଷୀ ଦୁଃଖୀଆଦି ଅଭ୍ୟାଗତମାନ ॥
ଯେତେକ ମିଳିବେ ଆସି ଯଜ୍ଞର ନିମନ୍ତେ । ନିଜେହିଂ ସେବା କରିବେ ଯେ ଯାହାମତେ ॥
ଏମନ କଥା ବୁଝାଇ କହିଲେ ଧର୍ମରାଣ । ଲକ୍ଷେ ରାଜା ଅଳଙ୍କାର ଅନ୍ନ ବସ୍ତ୍ରମାନ ।୫୩
ଯେ ଯେମନ୍ତ ମେଳଣି ତା କରିବ ସମକଛ । ତୁମ୍ଭ କଥାମାନ ଛାଡ ନୋହିଲ ଶ୍ରୀବଛ ।।।
ତୁମ୍ଭେ ସର୍ବ ଅନ୍ତର୍ଯ୍ୟାମୀ ସର୍ବଭୂତେ ପୁର । ତୁମ୍ଭେ ଯେ ଭଣ୍ଡାରେ ପ୍ରଭୁ ହେବ ଅଧିକାରୀ ॥
ତେବେ ସିନା ପଞ୍ଚ ସେ ପାଇବେ ସମସର । ତୁମ୍ଭେ ସିନା ସର୍ବଠାରେ ଅଟ ଅଧିକାରୀ ॥
ତୁମ୍ଭରେ ନୋହିଲେ କୃଷ୍ଣ କଷ୍ଟହିଂ ନୋହିବ । କେ ଅବା ପାଇବ କେହୁ ଉପବାସେ ଯିବ ॥
କେ ଅବା ବିମୁଖେ ଯିବ ଅଭିଶାପ କରି । ସକଳ ଧରମ ସିନା ବୁଡ଼ିବ ମୋହୋର ॥
ଶୁଣିଣ ଶ୍ରୀକୃଷ୍ଣ ମନ୍ଦମନ୍ଦ ହସ ହସି । ଏ କଥାକୁ ଚିନ୍ତା କିମ୍ପା କର ପଣ୍ଡୁଶିଷି ॥
ସୁବର୍ଣ୍ଣ ଆସନେ ବସି ଜଗତି ଉପରେ । ଭଣ୍ଡାର ପରଗ୍ରୁପଣେ ଥିବ ତୋ ଗ୍ରାମୁରେ ।୬୦
ସର୍ବ ଦଣ୍ଡେ ସୁଧାକ୍ଷି ମୁହିଂ ସିନା ପୁର । ଯେଯେମନ୍ତେ ତୁଷ୍ଟ ହେବେ ତେମନ୍ତ ମୁଂ କରି ॥
ଶୁଣିଣ ଧର୍ମନନ୍ଦନ ସନ୍ତୋଷ ହୋଇଣ । ଯଜ୍ଞର ଉଛବ ବିଧି କଲେକ ତିଆଣ ॥
ଏଥୁଅନ୍ତେ ଘୃତ ନେଇ ଅଗ୍ନି ମୁଖେ ଦେଲେ । ଯଜ୍ଞବିଧି ଦଶଦିନେ ସମ୍ପୂର୍ଣ୍ଣ ସେ କଲେ ।

ଲକ୍ଷେକ ରାଜାଙ୍କୁ ଅନ୍ନ ବସ୍ତ୍ର ଅଲଙ୍କାର । ପାତ୍ର ମନ୍ତ୍ରୀ ଅମାନାତ୍ୟ ପାଦାନ୍ତ ସକଳ ॥
ଦେବତା ଦାସ ବୈଷ୍ଣବ ବ୍ରାହ୍ମଣ ଅତିଥି । ବାନପ୍ରସ୍ଥୀ ଭଟ୍ଟ ଯେତକାଙ୍ଗା ଦୁଃଖୀ ସୁଖୀ ॥
ସଭଙ୍କୁ ମେଲାଣି କଲେ ଧର୍ମଙ୍କ ନନ୍ଦନ । କୈବର୍ତ୍ତି ଦାସ ରାଜାକୁ କଟକ ଛାଣ ॥
ରତ୍ନ ବସ୍ତ୍ର ଅଲଙ୍କାର ଶାଢ଼ୀ ବଳା ଦେଇ । ଆଜ୍ଞାଦେଲେ ଯାଅ ହୋ ରାଜ୍ୟକୁ ବେଗହୋଇ ॥
ସବୁଦିନେ ଆମ୍ଭର ହୋ ଉପଗାରୀ ଅଟୁ । ବେଳକାଳ ଜାଣିଣ ତୁ ଆମ୍ଭ ମନ ଝଟୁ ॥
ଏମନ୍ତେଣ ଦାସ ରାଜା ମେଲାଣି ମାଗିଲା । ପାଦ୍ୟେପଦ୍ମ ଉଭହୋଇ ଶିରେ କର ଦେଲା ॥
ଆପଣାର ସୈନ୍ୟ ବଳ ଘେନ ବୋଇତରେ । ସିଂଘଳ ଦେଶକୁ ରାଜାଗଲା ଖଟେଟରୋହଂ ।
ଅର୍ଜ୍ଜୁନ ଯେ ଦେଖୁଥିଲେ ଯୁକେଷ୍ଟି ଶ୍ରୀମୁର । ମନେ ବିଚାରିଲେ ଏହା କେମନ୍ତ ନେଷ୍ଠର ॥
ଲକ୍ଷେ ରାଜା ମିଳିଥିଲେ ମହା ମହାରାଜ । ତାହାଙ୍କୁ ସମସ୍ୟା ନାହିଁକଲେ ଧର୍ମଧ୍ୱଜ ॥
ଏହୁ ତ ମହା ଆଶ୍ଚର୍ଯ୍ୟ ଦେଖିଲଇଂ ମୁହିଂ । କାହାଟକୋଳେ ଦାସରାଜା ଜନମ ହୋଅଇ ॥
ଆଜ ପଚାରିବ ମୁହିଂ ଶ୍ରୀହରି ଶ୍ରୀମୁର । ତେବେ ସିନା ଛୁଟିବ ଏ ସନ୍ଦେହ ମୋହର ॥
ଝଟ ବନ୍ଧୁ ବାନ୍ଧବ ସକଳେ ଘରେ ଗଲେ । ଶ୍ରୀକୃଷ୍ଣଙ୍କୁ ଅର୍ଜ୍ଜୁନ ଯେ ଏକାନ୍ତେ ପୁଛିଲେ ॥
ବୋଇଲେ ଶୁଣିବା ପ୍ରଭୁ ସର୍ବ ଅନ୍ତର୍ଯ୍ୟାମୀ । କଥାଏ ପୁଛିବି ଯେ ଶୁଣିବା ଦେବସ୍ୱାମୀ ॥
ମୋହୋ ମନେ କଥାଏକ ଅଛଇ ସଂଶୟ । ତୁହି ମହାପ୍ରଭୁ ତାହା ବିଚାରିଣ କହ ॥
ଶ୍ରୀହରି ବୋଇଲେ ପାର୍ଥ କହ ଯେ ଆମ୍ଭଙ୍କୁ । କେଉଂକଥା ଉବାର ଯେହୋଇଛୁ ତୁମ୍ଭଙ୍କୁ ॥
ଅର୍ଜ୍ଜୁନ ବୋଇଲେ ପ୍ରଭୁ ଶୁଣ ସାବଧାନ । ତୁମ୍ଭ ପଦ୍ମପାଦତଳେ ରହୁ ମୋର ମନ ॥
ଯାହା ଯେତେବେଳେ ମୁହିଂ କରଇ ପ୍ରକାଶ । ସବୁ ମୋତେ ବୁଝାଇ କହୁଛ ପୀତବାସ ॥
ତେଣୁକରି ଭରସା ମୋ ଶ୍ରୀପଦ୍ମ ଚରଣ । ଭଣଇ ଅଚ୍ୟୁତ ଦାସ ରଖ ନାରାୟଣ ।୮।

ଇତିଶ୍ରୀ କୈବର୍ତ୍ତ ଗୀତାୟାଂ ବୈଷ୍ଣବିକ୍ୟାଂ ପାରମହଂସ ସଂହିତାୟାଂ ହରିଅର୍ଜ୍ଜୁନ
ସମ୍ବାଦେ କୈବର୍ତ୍ତ ଦାସ ରାଜା ଚରିତେ ନାମ ପ୍ରଥମୋଽଧ୍ୟାୟଃ ।

---

## ॥ ଦ୍ୱିତୀୟ ଅଧ୍ୟାୟ ॥

ଅର୍ଜ୍ଜୁନ କହଇ ପ୍ରଭୁ ଶୁଣିମା ଗୋସାଇଂ । ଦାସରାଜା ଆତଜାତ କହସି ହୋ ଫେଇ ।୧।
କେମନ୍ତ ପ୍ରକାରେ ସେହୁ ହୋଇଲା କଜାତ । କୈବର୍ତ୍ତିବୋଲିଣ ନାମ କେମନ୍ତେ ବିଖ୍ୟାତ ॥
କି କି କର୍ମ କରଇ ସେ କେବଣ ବିଚାର । ଏହୁ କଥା ବୁଝାଇ କହିବା ଚକ୍ରଧର ॥
ସିଂହଳ ଦ୍ୱୀପରେ ସେ କେମନ୍ତେ ହେଲା ନାଥ । ଏଥିର ସନ୍ଦେଶ ମୋତେ କହ ଜଗନ୍ନାଥ ॥
ତବମୁଖୁଂ ଶୁଣି ମୋ ସଂଶୟ ଦୂର ହେଉ । ତୁମ୍ଭର ଶ୍ରୀମୁଖ ବାକ୍ୟ ଯୁଗେ ଯୁଗେ ଥାଉ ॥
ଶୁଣିଣ ଶ୍ରୀକୃଷ୍ଣ ହସି ବୋଲନ୍ତି ବଚନ । ଅନେକ କଳ୍ପର କଥା ଶୁଣହୋ ଅର୍ଜ୍ଜୁନ ॥
ଏକତ୍ରିଶ ଗଣ୍ଡା । ଯୁଗ ପ୍ରତ୍ୟେକ ମନୁ ହୋଇ । ଚଉଦ କଳ୍ପ ମନୁରେ ବ୍ରହ୍ମକଳ୍ପ କହି ॥
ଅଠରସହସ୍ର ଯୁଗରେ ବ୍ରହ୍ମା ଖଣ୍ଡଦିନ । ଦିବସେ ସର୍ଜଇ ରାତ୍ରେ କରନ୍ତି ଶୟନ ॥
ଦୁଇସହସ୍ର ଯୁଗେ ବ୍ରହ୍ମା ବ୍ରହ୍ମଲୋକେ ଶୋଇ । ଜୀବଜନ୍ତୁ ସ୍ଥାବର ପତଙ୍ଗ ନାଶ ଯାଇ ॥
ଆବର୍ତ୍ତିକ ସମ୍ବର୍ତ୍ତିକ ଦ୍ରୋଣ ଯେ ପୁଷ୍କର । ଚାରିମେଘ ଯୋଡ଼ିଣ ଯେ ବରଷନ୍ତି ଜଳ ॥
ହାତୀଶୁଣ୍ଢ ପ୍ରମାଣେ ଯେ ହୋଇ ଘୋର ବୃଷ୍ଟି । ସମୁଦ୍ର ପୂରଣ ଜଳ ଆକାଶକୁ ଉଠି ।୧୧।

ଭୂଲୋକ ଯେ ଭୁବଲୋକ ସ୍ୱର୍ଗଲୋକ ବଳି । ମହଲୋକ ଯାଏ ଗଲା ପ୍ରଳୟ ଉଛୁଳି ॥
ଚନ୍ଦ୍ର ସୂର୍ଯ୍ୟ ଇନ୍ଦ୍ର ଆଦି ଦଶଦିଗପାଳ । ସକଳେ ବୁଡ଼ିଲେ ଜଳେ ଶୁଣ ପଣ୍ଡୁବାଳ ॥
ଏ ସର୍ବ ପ୍ରଳୟେ ଗଲେ କଳ୍ପବଟ ଥାଇ । ମାହାପ୍ରଳୟ ହୋଇଲେ ବଟ ନ ବୁଡ଼ଇ ॥

ଜଳ ଯେତେ ହୋଅଇ ବଟ ତେତେ ବଢ଼ଇ । ସେ ବଟରେ ବିଶ୍ରାମ କରଇ ମୁହିଂ ଯାଇଂ ॥
ଅର୍ଜ୍ଜୁନ ବୋଇଲେ ପ୍ରଭୁ ଶୁଣିମା ଶ୍ରୀବଚ୍ଛି । ଏମନ୍ତ ପ୍ରକାରେ ବଟ କେଉଂଠାରେ ଅଛି ॥
ଶ୍ରୀକୃଷ୍ଣ ବୋଇଲେ ପାର୍ଥ ସାବଧାନେ ଶୁଣ । ସପ୍ତଦ୍ୱୀପ ମଧ୍ୟେ ଶ୍ରେଷ୍ଠ ଜମ୍ବୁଦ୍ୱୀପ ଜାଣ ॥
ମେରୁର ଦକ୍ଷିଣଭାଗେ ଭରଥଖଣ୍ଡ ସାର । ସିନ୍ଧୁର ଉତ୍ତର ଦିଗେ ନୀଳଗିରିବର ॥

ଶଙ୍ଖନାଭିମଣ୍ଡଳ ମଧ୍ୟରେ ତାର ମୂଳ । ପାଞ୍ଚକୋଶ ମାତ୍ରେ କଳ୍ପତରୁର ବିସ୍ତାର ॥
ପ୍ରଳୟ ହୋଇଲେ ମୁଂ ବିଶ୍ରାମ କରେ ତହିଂ । ଜଳ ଅନଳ ପବନ ତହିଂ ନ ଲାଗଇ ।୨୦।
ଆମ୍ଭେ ସେ ବଟର ମୂଳେ ବସି କଲୁଂ ସ୍ତୁତି । ଶଙ୍ଖ ଯେ ଗୋଟିଏ ଖସି ପଡ଼ିଲା ତଡ଼ିତି ॥

ସେ ବଟପତ୍ରରେ ଆମ୍ଭେ ବିଜେ କଲୁ ଯାଇଂ । ପ୍ରଳୟଜଳେ ସେ ବଟପତ୍ର ଯେ ଭାସଇ ॥
ପବନର ଘାତେ ସେ ଯେ ଉଚ୍ଛୁଳଇ ବାରି । ଟଳଟଳ ହୋଇ ଶୃଙ୍ଗେ ଲହରି ଯେ ମାରି ॥
ସେ ବଟପତ୍ରରେ ଆମ୍ଭେ ଯୋଗନିଦ୍ରା କରି । ଲହରୀ ଶୃଙ୍ଗରେ ବାଜି କମ୍ପେ ଆମ୍ଭ ଶରୀ ॥

ସେମନ୍ତ ଦେଖିଣ ମନେ କଲୁଁ ବିଚାର । କେମନ୍ତ ପ୍ରକାରେ ବଟପତ୍ର ହେବ ଥିର ॥
ସେମନ୍ତ ବୋଲିଣ କର୍ଣ୍ଣମୂଳ ଆଉଂସିଲୁଂ । ମଳି ଏକ ଉକୁଟିଲି ଜଳେ ପକାଇଲୁଂ ॥
ତତକ୍ଷଣେ ସେ ମଳରୁ ପୁରୁଷେ ଜନ୍ମିଲି । ସେ ଜଳେ ପହଁରି ବଟପତ୍ରକୁ ଧଇଲି ॥

ବଟର ପୂର୍ବଭାଗକୁ ଦେଲୁ ଆମ୍ଭେ ଗୃହିଂ । ବଟଶଙ୍ଖ ଧରିଣ ପୁରୁଷେ ଅଛି ରହି ॥
ଆମ୍ଭେ ପୁଚ୍ଛା କଲୁଂ ତାଙ୍କୁ କି ନାମ ତୋହର । କେ ତୋହର ପିତାମାତା କହ ମୋ ଅଗ୍ରର ॥
ସେ ପୁରୁଷ ବୋଇଲା ହୋ ଶୁଣିମା ଗୋସାଇଂ । କେ ମୋହର ପିତାମାତା ମୁହିଂ ନ ଜାଣଇଂ ॥

ତୁମ୍ଭେ ଯେ ମୋହର ପିତା ବିଜେ ବଟପତ୍ର । ତୁମ୍ଭଙ୍କୁ ମୁଂ ଦେଖିଲି କାହାରି ନାହିଂ ଭେଟ ॥
ଶ୍ରୀହରି ବୋଇଲେ ପୂର୍ବେ ଆମ୍ଭର ଭିଆଣ । କଇବର୍ତ୍ତ ଦାସରାଜା ହେଉ ତୋର ନାମ ॥

ପ୍ରଳୟଜଳରେ ଆମ୍ଭେ ଶୋଇ ନ ପାରିଲୁଂ । ତେଣୁ କରି କର୍ଣ୍ଣମୂଳୁଂ ତୋତେ ଜାତ କଲୁଂ ॥
କର୍ଣ୍ଣମୂଳୁଂ ଜାତ ତୋର ଜାତି କଇବର୍ତ୍ତ । କଇବର୍ତ୍ତ ଦାସରାଜା ନାମ ତୋର ଖ୍ୟାତ ॥
ଆଗ୍ୟାଂ ପରମାଣେ ଆସି ବସ ଶୃଙ୍ଗପର । କଣ୍ଡିଆର ଧର ବଟପତ୍ର ହୋଉ ଥିର ।୩୦।
କଇବର୍ତ୍ତ ଦାସ ବୋଲେ ଶୁଣିମା ଗୋସାଇଂ । ମୋହ ବସିବାକୁ ଏଥି ଠାବ ଦିଶୁ ନାହିଂ ॥
ତୁମ୍ଭେ ତ ବଟପତ୍ରରେ ଶୟନ କରିଛ । କାହିଂ ବସି କଣ୍ଡିଆର ଧରିବି, ଶ୍ରୀବଚ୍ଛ ॥
ମୁହିଂ ତ ଜଳରେ ଅଛି ଧରି ବଟଶୃଙ୍ଗ । କାହିଂ ବସି କଣ୍ଡିଆର ଧରିବ ଶ୍ରୀଅଙ୍ଗ ॥

ତେଣୁ କରି ତାହାକୁ ଯେ ବଟେ ଠାବ ଦେଇ । ବସି କରି ଏଥେ କଣ୍ଡିଆର ଧର କହି ।୪୦।
ଶୁଣି କଇବର୍ତ୍ତ ଯେ ବସିଲା ଶୃଙ୍ଗମୂଳ । କିଛି ତ ଏଥିରେ ନାହିଂ ଜାତ କେରୁଆଳ ॥
କାହା ଘେନି କଣ୍ଡିଆର ଧରିବଇଂ ମୁହି । କେମନ୍ତେ ନିଶ୍ଚଳ ହେବ କହ ଭବଗ୍ରାହୀ ॥
ଏହା ଶୁଣି ବେଣୁଦଣ୍ଡ ଦେଲୁଂ ଯେ ବଢ଼ାଇ । ବେଣୁଦଣ୍ଡ କଣ୍ଡିଆର ଧର ବେଗେ ଯାଇଂ ॥
ଆଜ୍ଞା ପରମାଣେ ବେଣୁଦଣ୍ଡ ବେଗ କରି । ଜଳେ ପକାଇଣ ଦଣ୍ଡ ଶୃଙ୍ଗମୂଳେ ଧରି ॥
ବେଣୁଦଣ୍ଡ ଦାସ ରାଜା ଶୃଙ୍ଗେ ଯେ ଧଇଲା । ଅଚ୍ୟୁତାନନ୍ଦ ଯେ ଏହା ଗୀତରେ ଗାଇଲା ॥

ଇତଶ୍ରୀ କୈବର୍ତ୍ତଗୀତାୟାଂ ବୈଯ୍ୟାସିକ୍ୟାଂ ପାରମହଂସ ସଂହତାୟାଂ ହରଅର୍ଜ୍ଜୁନ ସମ୍ବାଦେ କୈବର୍ତ୍ତ ଦାସରାଜା ଜନ୍ମ କଥନେ ବଟପୁଟସମ୍ବାଦେ ନାମ ଦ୍ୱିତୀୟୋଽଧ୍ୟାୟଃ ।

———

## ॥ ତୃତୀୟ ଅଧ୍ୟାୟ ॥

ଶୁଣ ହେ ଅର୍ଜ୍ଜୁନ ବଟପୁଟର ବେଭର । ତେବେ ହେଂସେ ବଟପୁଟ ନୋହିଲ କଣ୍ଠିରା ।
ତାହା ଦେଖି ଆମ୍ଭେ ଯେ ବଗ୍ଧର କଲୁଂ ମନ । ଆଜ୍ଞାରେ ବଟରୁ ପଦେ ଖସିଲ ବନ୍ଧନ ॥
ସେ ବଟର ପଦ ଦେଲୁଂ କଇବର୍ତ୍ତ କର । ବେଣୁଦଣ୍ଡେ ପଦ ବାନ୍ଧ ଧର କଣ୍ଡିଆର ॥
ଦାସରାଜା ବୋଇଲା ଯେ ଶୁଣିମା ଗୋସାଇଂ । କ ପେନ ବାନ୍ଧିବ ଯେ ଦଉଡ଼ି ଏଥେ ନାହିଂ ॥
ତାହା ଶୁଣି କାନ୍ଧୁଂ କାଢ଼ି ସୁବର୍ଣ୍ଣ ପଇତା । ନବଗୁଣ ପଇତା ଯେ ଦେଇଥିଲେ ଧାତା ॥
ନବଗୁଣ ପଇତାଟି ଯେ ଗୁଣ ମୋହର । ଏହା ଦେଇ ବାନ୍ଧ ବଟପୁଟ ହେବ ଥିର ॥
ମୋର ଆଜ୍ଞା ପାଇ ବେଣୁଦଣ୍ଡେ ଯେ ବାନ୍ଧିଲ । ପ୍ରଳୟ ଜଳେ ପକାଇ ମାଡ଼ଣ ବସିଲ ॥
ଥିର ହୋଇଲାକ ବଟପୁଟ ଯେଣୁ ତହିଂ । ଆନନ୍ଦରେ ଶୟନ ଯେ କଲୁଂ ଆମ୍ଭେ ରହି ॥
ଅର୍ଜ୍ଜୁନ ବୋଇଲେ ପ୍ରଭୁ ଶୁଣିମା ଗୋସାଇଂ । ତୁମ୍ଭେ ବଟପୁଟରେ ଯେକାଳେ ଥିଲ ଶୋଇ ॥
ତୁମ ଦେହରେ ପବନ ତରଙ୍ଗ ବାଜଣ । କଇବର୍ତ୍ତ ଜାତ ହେଲା ଶ୍ରୀଅଙ୍ଗରୁ ପୁଣ ।୧୦।
ପୂର୍ବେ ଯେ କହିଲ ବଟପୁଟେ ମୋର ବାସ । ଜଳ ପବନ ଅଗ୍ନିର ପାଇ ନାନା ତ୍ରାସ ॥
ଶ୍ରୀମୁଖରୁ ଶୁଣି ମୋ ସଂଶୟ ହେଉ ଦୂର । ଏ କଥା ବୁଝାଇ କହିବା କମଳାବର ॥
ଶ୍ରୀହରି ବୋଇଲେ ଶୁଣ ଧନଞ୍ଜୟ ବୀର । ସ୍ୱେଥିର ପରମ ସନ୍ଧି କହୁଂ ତୋ ଅଗର ॥
ମନୁପ୍ରଳେ କଳ୍ପପ୍ରଳେ ବ୍ରହ୍ମପ୍ରଳେ ତିନ । ଅଧ୍ୟାତ୍ମ କରି ବହିବା ଶୁଣ ଫାଲଗୁନ ॥
ଏକସ୍ତରଗଣ୍ଡା ଯୁଗେ ମନୁ ଏକ ହୋଇ । ମନୁପ୍ରଳେ ହେଲେ ଜୀବଜନ୍ତୁ ନାଶଯାଇ ॥
ରାଜ୍ୟଭଙ୍ଗ ହୋଇ କେ କାହାକୁ ନ ମାନନ୍ତି । ଧର୍ମ ରାଜନମାନେ ପ୍ରଜା ବୃତ୍ତି ନ୍ୟନ୍ତ ॥
ରାଜ୍ୟ ନଷ୍ଟ ହୋଅଇ ନଥିଲେ ନରପତି । ରାଜ୍ୟରେ ଦର୍ଭିକ୍ଷ ହେଲେ ଦଣ୍ଡେ ଯେ ମାଡନ୍ତି ॥
ଚଉଦ ମନୁରେ ଏକ ପ୍ରଳେ ବୋଲି କହୁ । ବ୍ରହ୍ମାଙ୍କୁ ରାତ୍ରେ ଦିବସେ ଅଟଇଟି ସେହୁ ॥
ତ୍ରିଶସ୍ର ଯୁଗରେ ବ୍ରହ୍ମାଙ୍କ ଦିନେ ହୋଇ । ରାତ୍ରେ ଏ ସଂଖ୍ୟାରେ ବ୍ରହ୍ମା ଥିଲେ କଲ୍ପେ ଶୋଇ ॥
ବ୍ରହ୍ମାର ଶୟନେ ପ୍ରଳୟମେଘ ଧରି ପୋତି । ମୂଷଳଧାରା ପ୍ରମାଣେ କରେ ଘୋରବୃଷ୍ଟି ।୨୦।
ବ୍ରହ୍ମାଣ୍ଡ ପୂରଣ ଜଳ ଆକାଶକୁ ଯାଇ । ଛପନ କୋଟି ଜୀବଜନ୍ତୁ ଯେ ନାଶ ପାଇ ॥
ଭୂଲୋକ ଯେ ଭବଲୋକ ସ୍ୱରଲୋକ ତିନ । ମହଲୋକ ଯାଏ ଗଲା ପ୍ରଳୟର ପାଣି ॥
ଦଶଦିଗପାଳ ଚନ୍ଦ୍ର ସୂର୍ଯ୍ୟ ଯାଇ ନାଶ । ସପ୍ତଦ୍ୱୀପରୁ ସପ୍ତବଂଶ ଅବତାର ଶେଷ ॥
ମନୁପ୍ରଳେ କଳ୍ପପ୍ରଳେ କହିଲୁଂ ଯେ ବେନି । ବ୍ରହ୍ମାଣ୍ଡ ପ୍ରଳୟ ଏବେ ଶୁଣ ଫାଲଗୁନ ॥
ବ୍ରହ୍ମପ୍ରଳୟ ହେଲେ ବ୍ରହ୍ମାଣ୍ଡ ନାଶ ଯାଇ । ପୃଥ୍ୱୀ ଆପ ତେଜ ବାୟୁ ଆକାଶ ନ ଥାଇ ॥
ଏ ସବୁ ପଶନ୍ତି ଆସି ମୋହର ଶରୀରେ । ମହାତତ୍ତ୍ୱ ପଶଇ ଯେ ପ୍ରକୃତି ଦେହରେ ॥
ପ୍ରକୃତି ଯେ ବଟପୁଟ ଆଦି ମହାମାୟୀ । ନିରାକାର କୋଳକରି ନିଦ୍ରା ସେହି ଯାଇ ॥
ସେ ପ୍ରକୃତି କେତେ କାଳେ ହୋଇ ଅବସାନ । ଈଶ୍ୱର ପୁରୁଷ ଯେବେ ଦେହେ ହୋଇଲୀନ ॥
ସେହି ନିରାକାର ରୂପରେଖ ନାହିଂ ତାର । ଅକ୍ଷର ଯେ ଶୂନ୍ୟମଣ୍ଡଳ ଆକାର ॥
ଉର୍ମି ଧୂମ୍ର ଜ୍ୟୋତି ଜ୍ୱାଳା ଚଉପାଶେ ଧରି । ଭିନ୍ନ ଭିନ୍ନ ମଣ୍ଡଳ ତାହାର ମଧ୍ୟେ ପୂରି ।୩୦।

ତାହାର ମଧ୍ୟରେ ଅଗ୍ନି ମଣ୍ଡଳଟି ଜାଣ । ସେ ମଣ୍ଡଳ ଗୋଟି ଏକାକ୍ଷର ବୋଲି ଶୁଣ ॥
ସେ ଅକ୍ଷର ଗୋଟି କାହିଁ ମିଶଇ ଯେ ନାହିଁ । ସବୁର ଶୂନ୍ୟରେ ଥାଇ ନାମ ଯେ ଭଣାଇ ॥
ସେ ଅଣାକାର ମଣ୍ଡଳ ନିରାକାର ଜାଣ । ରୂପରେଖ ନାହିଁ ତାର ଅପେ ନିରମାଣ ॥
ସେହି ଶୂନ୍ୟରହି ମହା କଳ୍ପବଟ ହୋଇ । ମହାଶୂନ୍ୟ ମଧ୍ୟରେ ଯେ ତାର ବାସ କହି ॥
ବ୍ରହ୍ମା ବିଷ୍ଣୁ ଶିବ ଠାହିଁ ନ ପାବନ୍ତି ଭେଟ । ଚନ୍ଦ୍ର ସୂର୍ଯ୍ୟ ଅପ ବାୟୁ ଦେବଙ୍କ ଅଭେଟ ॥
ସେ ବୃକ୍ଷର ପ୍ରତିଗ୍ରସ୍ଥା ମୋହର ପ୍ରକାଶ । ତେଣୁକରି ପ୍ରତିବିମ୍ବ ହୁଅଇ ବିକାଶ ॥
ସେ କାରଣୁଂ ପ୍ରତିବିମ୍ବ ଉତ୍ପତ୍ତି ହୁଅଇ । ତହିଁରୁ କୀଟ ପତଙ୍ଗ ଆଦି ଜନ୍ମ ହୋଇ ॥
କେତେ ଲୁପ୍ତ ହୋଇ କେତେ ପିଣ୍ଡ ପାଲଟଇ । ମୁକୁରରେ ଯେହ୍ନେ ପ୍ରତିବିମ୍ବ ଆଶ୍ରୟଇ ॥
ଏହିମତ ମୋର ମାୟା ସଂସାର ପ୍ରଚୁର । ଯାହା ଅନ୍ତ କହି ନ ପାରଇ ବେଦବର ॥
ଆହୁରି କଥାଏ ପାର୍ଥ ମନଦେଇ ଶୁଣ । ତୋହର ଦେହରେ ଛାଇ ଅଛଇଟି କି ପୁଣ ।୪୦।
ମାୟା ଦେହ ଗଲେ ଛାଇ ଆକାଶେ ଲୁଚଇ । ସେହିମତ ମୋହ ମାୟା ପ୍ରକାଶୁଂ ଅଛଇ ॥
ଜଳର ଭିତରେ ଦିଶେ ଚନ୍ଦ୍ର ସୂର୍ଯ୍ୟ ଛାଇ । ମୁକୁରରେ ପ୍ରତିବିମ୍ବ ଯେହ୍ନେ ପ୍ରକାଶଇ ॥
ସବୁଠାରେ ପୂରି ମୁଂ ହୋଅଇ ପରକାଶ । ବ୍ରହ୍ମା ହର ସୁର ଋଷି ନ ପାଆନ୍ତି ଲେଶ ॥
ଅର୍ଜ୍ଜୁନ ବୋଇଲେ ହରି ପାଇଲି କାରଣ । ଏବେ କହ କଇବର୍ତ୍ତ ଚରିତ ଯେମାନ ॥
ଶ୍ରୀମୁଖ ବଚନ ଶୁଣି ଲଭିବ କାରଣ । ଭଣଇ ଅଚ୍ୟୁତ ଦାସ ରଖ ନାରାୟଣ ॥

ଇତି ଶ୍ରୀ କୈବର୍ତ୍ତ ଗୀତାୟାଂ ବୈୟାସିକ୍ୟାଂ କୈବର୍ତ୍ତ ଦାସରାଜା ଚରିତେ ବ୍ରହ୍ମଜ୍ଞାନ
ଯୋଗଶାସ୍ତ୍ର କଥନଂ ହରି ଅର୍ଜ୍ଜୁନ ସମ୍ବାଦେ ନାମ ତୃତୀୟୋଽଧ୍ୟାୟଃ ।

---

## ॥ ଚତୁର୍ଥ ଅଧ୍ୟାୟ ॥

ଅର୍ଜ୍ଜୁନ ବଚନ ଶୁଣି ବୋଲନ୍ତି ମୁରାରି । ଗୃରସହସ୍ର ଯୁଗଯାଏ ଜଳରେ ବିହାରି ।୧।
ଦାସ କୈବର୍ତ୍ତ ଯେ ଥିଲା କଣ୍ଡିଆର ଧରି । ଆଳସ୍ୟରେ ନିଦ୍ରା ସେହୁ ଗଲା ମହାବଳୀ ॥
ପ୍ରଳୟ ଜଳରେ ଯେ ରାଘବ ଚରୁଥିଲା । ଦାସର ସହିତେ କଣ୍ଡିଆରକୁ ଗିଳିଲା ॥
ପ୍ରଳୟ ଜଳରେ ବଟପତ୍ର ଯେ ଚଳଇ । ନିଦ୍ରା ଭାଂଜି ଗଲା ଦାସରାଜା ପାଶେ ନାହିଁ ॥
ନିଦ୍ରାରୁ ଉଠିଣ ଯେ ଜଳକୁ ଦେଲୁ ଦୃହିଂ । ଯୋଗବଳେ ଜାଣିଲୁଂ ରାଘବ ଗଲା ଖାଇ ॥
ତତକ୍ଷଣେ ହେଲୁଂ ଆମ୍ଭେ ମୀନ ଅବତାର । ଜଳ ମଧ୍ୟେ ବୁଡ଼ିଣ ସେ ରାଘବେ ପ୍ରହାର ॥
ଟୋପୋଡ଼େ ମାରିଣ ଗାଲ ଚିରିଲୁଂ ତାହାର । କୈବର୍ତ୍ତ ଦାସରାଜାକୁ କଲୁଂ ଯେ ବାହାର ॥
କଣ୍ଡିଆର ସହିତେ ସେ କୈବର୍ତ୍ତକୁ ଆଣି । ଆଜ୍ଞା ଯେ ବହିଲୁଂ ଆମ୍ଭେ ତାକୁ ତତକ୍ଷଣି ॥
ତୋତେ ଯେ ଗିଳିଲା ମୀନ ତୋହର ବଇରି । ଏହାକୁ ମାରିବୁ ଜନ୍ମେ ଜନ୍ମେ ଅବତରି ॥
ତୋହର ସଗୋତ୍ର ଜାତି କୁଟୁମ୍ବ ଯେମାନ । ସମସ୍ତେ ଏ ଜୀବ ମାରି ପୋଷିବେ ଜୀବନ ।୧୦।
ଏ ଆମ୍ଭର ଆଜ୍ଞା କଳ୍ପେ କଳ୍ପେ ରହିଥାଉ । ଏତେକ କହିଣ ନିଦ୍ରା ଗଲୁଂ ଆମ୍ଭେ ତହିଁ ॥
ଚୈରସହସ୍ର ଯୁଗଯାଏ ଜଳରେ ଶୋଇଲୁଂ । ନିମିଷମାତ୍ରକ କଲ୍ପ ପ୍ରଳୟ ମଣିଲୁଂ ॥
ବ୍ରହ୍ମଲୋକେ ବ୍ରହ୍ମା ଯେ ଶୟନ କରିଥିଲା । ଉଠିଣ ବ୍ରହ୍ମାଂଣ୍ଡେ ଜୀବଜନ୍ତୁ ନାଶଗଲା ॥
ତକ୍ଷଣେ ପ୍ରଳୟ ଜଳ କାରୁଣ୍ୟସିନ୍ଧୁରେ । ଶୀଘ୍ରେଣ ପହିଂରି ଗଲା ଦଣ୍ଡିକ ଭିତରେ ॥
ଏମନ୍ତେ କାରୁଣ୍ୟଜଳ ମୀନ ହୋଇଗଲା । ଦଣ୍ଡିଆ ଭିତରେ ଶେଷଜଳ ସା ଥାଇଲା ॥

ବ୍ରହ୍ମସ୍ଥ ସୃଷ୍ଟି ବ୍ରହ୍ମା ସଂସାର ସର୍ଜିଲ । ଯେତେଂସ୍ଥାନେ ଯେତେଂ ବିଶ୍ୱ ଘଟଣା ସେ କଲ ॥
ବଟପୃଷ୍ଠେ ବସି ତହୁଂ ବିଚାର ସେ କଲୁଂ । ବୈକୁଣ୍ଠପୁରକୁ ବିଜେ କରିବା ବୋଇଲୁଂ ॥
କୈବର୍ତ୍ତିକୁ ବୋଇଲୁଂରେ ଦାସରାଜା ଶୁଣ । ଆମ୍ଭେ ଯାଉଅଛୁ ଏବେ ବୈକୁଣ୍ଠ ଭୁବନ ॥
ଦାସରାଜା ବୋଇଲାଯେ ଶୁଣିମା ଗୋସାଇଁ । ମୁହିଂ ଏବେ କେତେଂଠାରେ ରହିବଇଂ ଯାଇଂ ॥
ଏ ମାହାପ୍ରଳୟୁ ଜଳେ ସେବା କରିଥିଲି । ଏବେ ଯାଉଅଛ ତୁମ୍ଭେ ଅକାରଣେ ମଲି ।୨୦।
କି କି କର୍ମ କରିବି ସେ କେବଣ ଆଚାର । ଅଶେଷ ବ୍ରହ୍ମାଣ୍ଡେ ପ୍ରଭୁ ତୁମ୍ଭେ ସେ ଠାକୁର ॥
ଦାସରାଜାଠାରୁ ପ୍ରଭୁ ଶୁଣି ଏ ବଚନ । ଦଣ୍ଡେ ଅନ୍ତର୍ଭୂତ ରହି ହୋଇଲେ ମଉନ ॥
ମନେ ବିଚାରିଲେ ଏହାକୁ କିସ ସେ କହିଇ । ଆପଣା ଶ୍ରୀଅଙ୍ଗୁ ମୁହିଂ ଜାତ କରିଥାଇ ॥
ରାଜୁତପଣ ଏହାକୁ ଯୋଗାଇ ବିଧିରେ । କରିବା ରାଜା ଏହାକୁ ସିଂହଳ ଦ୍ୱୀପରେ ॥
ମନର ମଧ୍ୟରେ ସେ ଏମନ୍ତେ ପାଞ୍ଚ କଲୁଂ । ସିଂହଳ ଦ୍ୱୀପକୁ ଯାଅ ବୋଲିଣ ବୋଇଲୁ ॥
ଏହି ବଟଶୃଙ୍ଗ ଘେନି ବେଗହୋଇ ଯାଅ । ଆମ୍ଭ ଆଜ୍ଞା ପରମାଣେ ତହିଂ ପୂଜା ପାଅ ॥
ଏମନ୍ତ ବୋଲିଣ ଦାସରାଜାଙ୍କୁ କହିଲୁଂ । ସିନ୍ଧୁର ଭିତରୁ ତୀରେ ଆସିବୁ ପାଞ୍ଚିଲୁ ॥
ପତ୍ରାଳପଣ୍ଡୁରେ ସେ ଯେ ପାଦ ନ ରହଇ । ପତ୍ରାଳରେ ପାଦ ସେ ପାତାଳେ ଭେଦଯାଇ ॥
ମହାମାୟୀ ବଟପୁଟ ବିଧିରେ ଅଟଇ । ନିରାକାର କୋଳକରି ସିନ୍ଧୁରେ ସେ ଥାଇ ॥
ଆଗ୍ୟାଂ ଦେଲୁଂ ଅଶ୍ୱ ଏକ ତୁହି ବେଗେ ହୁଅ । ସୋମୋଦ୍ର ଭିତରୁ ନେଇ ତୀରରେ ଲଗାଅ ॥
ଆଗ୍ୟାଂବଲେ ବଟପୁଟ ଅଶ୍ୱ ରୂପ ହେଲ । ଚାରି ଯୋଜନ ଯାଏ ସେ ପୃଷ୍ଠ ବିସ୍ତାରିଲ ।୩୧।
ଦାସରାଜା ସଙ୍ଗେ ଘେନି ବସିଲୁଂ ଅଶ୍ୱରେ । ଶୀଘ୍ରେଣ ଆସିଣ ଅଶ୍ୱ ମିଳିଲା କୂଳରେ ॥
ଚଇତ୍ରପୂର୍ଣ୍ଣିମା ଗୁରୁବାର ସେ ଅଟଇ । କାସେଲୀ ବୋଲିଣ ନାମ ଦେଲଇଂ ସେ ମୁହିଂ
ଜନମଦନ ସେ ତାର ନାହିଂ ଖୋଜିବାକୁ । ଦାସରାଜେ ଦେଲୁଂ ପୁଣି ସେ ମାଇ ଅଶ୍ୱକୁ ॥
ବିଶ୍ୱକର୍ମା ରାଇଣ ସେ ଆଗ୍ୟାଂଦେଲୁ ତାଙ୍କୁ । କାଷ୍ଟରେ ନିର୍ମାଣି ନାବ ଦେବୁଂ ସେ ଆମ୍ଭଙ୍କୁ ॥
ତତକ୍ଷଣେ ବିଶ୍ୱକର୍ମା ଆଣିଦେଲ ନାବ । ବୋଇଲୁଂ ହେ ଦାସରାଜା ନାବେ ବସ ବେଗ ॥
ଏହି ନାବେ ଯାଅ ତୁ ସିଂହଳଦ୍ୱୀପ ମଧ୍ୟ । ଏ ଅଶ୍ୱ ଗୋଟିକି ନିଅ ନାବରେ ଚଢ଼ାଇ ॥
ସେବକ ବର୍ଣ୍ଣରେ ତୁହି ବଡ଼ ସେ ହୋଇଲୁ । ପ୍ରାଣୀଜନମାନଙ୍କର ଉପଗାର କଲୁ ॥
କର୍ଣ୍ଣମୂଳୁ ଜାତ ତୋର ଜାତିଂକ ଏବର୍ତ୍ତି । ଏ ଅଶ୍ୱକୁ ନିଅ ଏବେ ଚଢ଼ାଇ ବୋଇତ ॥
ଏ ବୋଇତ ଘେନିଯାଅ ବଣିଜ କରିବୁଂ । ଏଅଶ୍ୱ ଗୋଟିକି ନେଇ ବାହନ କରିବୁ ।୪୦।
ଏମନ୍ତ ବୋଲିଣ ଦାସରାଜାକୁ କହିଲୁ । ସେ ବୋଇତ ଅଶ୍ୱ ଦେଇ ରାଜପଦ ଦେଲୁ ॥
ଅର୍ଜ୍ଜୁନ ବୋଇଲେ ପ୍ରଭୁ ଶୁଣିମା ଗୋସାଇଂ । ଉତ୍ତମ କଥାଏ ମୋର ମନେ ପଡ଼ିଲାଇ ॥
କର୍ଣ୍ଣମୂଳୁଂ କୈବର୍ତ୍ତିକୁ କରିଅଛ ଜାତ । ପୂର୍ବଯୁଗେ କେତେ ବର୍ଣ୍ଣ କାହିଂ କଲ ଜାତ ॥
ଏକଥା ବିଚାରି ମୋତେ କହିବା ଗୋସାଇଂ । ପୂର୍ବର ବାରତା ଏ ପାଶୋରି ଥିଲି ମୁହିଂ ॥
ଶ୍ରୀକୃଷ୍ଣ ବୋଇଲେ ପାର୍ଥ ସାବଧାନେ ଶୁଣ । ନିରାକାରୁଂ ଆକାର ସେ ପୂର୍ବର ଭିଆଣ ।୪୫।
ପୃଥ୍ୱୀ ଆପ ତେଜ ବାଇ ଆକାଶ ନଥିଲା । ନିଃଶବଦ ଘରୁ ସେ ହୁଂକାର ଧ୍ୱନି ହେଲା ॥
ଧର୍ମ ଧୂର୍ମ ନ୍ୟୋତ ଜ୍ୱାଳା ହେଲ ଗୁରିକଳା । ଯୋମ ମଣ୍ଡଳକୁ ରଖି ମଧ୍ୟର ମଣ୍ଡଳା ॥
ରବିମଣ୍ଡଳକୁ ରଖି ତାହାର ମଧ୍ୟରେ । ମହାତେଜେ ଅନଳ ସେ ଜଳଇ ସେଠାରେ ॥
ତହିଂର ମଧ୍ୟରେ ମୁହିଂ ବିରାଟ ଜନ୍ମିଲି । ଏକାକ୍ଷର ବୋଲିକରି ନାମ ଭଣାଇଲି ॥

ଓଂକାର ମଣ୍ଡଳୁ ମୁଂ ଯେ ଜନମ ହୋଇଲି । ସାମ ଋକାର୍ଥବ ଯଜୁ ଶଙ୍କର ବହିଲି ।୫୦।
ଓର୍ମ ସାମ ଧୂର୍ମ ଯଜୁ ଜ୍ୟୋତ ଋକ ହେଲା । ଜ୍ୱାଲାରୁ ଅଥର୍ବ ବେଦ ଏ ଯେ ଋଷି କଲା ॥
ଏମନ୍ତେ ଯେ ଶ୍ରୁତିବେଦ ଚଉପାଶେ ଥାପି । ମଧ୍ୟରେ ରହିଲି ମୁହିଂ ଅଗ୍ନି ରୂପେ ବ୍ୟାପି॥
ମାନେବ ଜନ୍ମର ଭେଦ ଶୁଣହୋ ଅର୍ଜୁନ । ବ୍ରହ୍ମା ଜନମ ହେଲା ଅଧରୁ ମୋର ପୁଣ ॥
ମୁଖରୁ ଉତ୍ପତ୍ତି ହୋଇ କଣ୍ଠେ ବିଶ୍ରାମିଲା । କଣ୍ଠେ ବିଶ୍ରାମିଣ ସେ ବହୁତ ଋଷ୍ଟି କଲା ॥
ଏକମୁଖ ହୋଇଥିଲା ଶୁଣ ହୋ ଅର୍ଜୁନ । ଆଉ ଏକ ମୁଖ ତାର ଜନ୍ମିଲାକ ପୁଣ ॥
ବ୍ରହ୍ମପଦ ନିମନ୍ତେ ବହୁତ ଋଷ୍ଟି କଲା । ଦେବମୁଖ ତାହାର ଯେ ରକ୍ତବର୍ଣ୍ଣ ହେଲା ॥
କଣ୍ଠ ଆସିଣ ହୃଆରେ ବିଶ୍ରାମ ଯେ କଲା । ବ୍ରହ୍ମାପଦ ଲୋଭରେ ଅନେକ ସ୍ତବ କଲା ॥
ସ୍ୱୟମ୍ଭୁ ବହୁଣ ଯେ ସେଠାରୁ ଝସିଲା । ନାଭିମଣ୍ଡଳରେ ମୋର ସମାଧି ସାଧିଲା ॥
ନାଭିମଣ୍ଡଳରେ ରହି ସ୍ତବ ଉଚ୍ଚାରିଲା । ସ୍ୱୟମ୍ଭୁ ହୋଇଥିଲା ଚତୁର୍ମୁଖ ହେଲା ॥
ଶ୍ରୁତିମୁଖେ ଶ୍ରୁତିବେଦ ଧଣଣ ଜପଇ । ନାଭିମଣ୍ଡଳରୁ ମୋର ଜାତ ଯେ ହୋଅଇ ॥
ତେଣୁକରି ଚତୁର୍ମୁଖ ଅଟଇ ବ୍ରହ୍ମାର । ଧରଣୀ ସର୍ଜନାକରି ପାଳଇ ସଂସାର ।୭୧।
କଟିରୁ ଶଙ୍କର ମୋର ହୋଇଲେକ ଜାତ । ଧରଣୀ ଉପରେ ବୃଦ୍ଧ ହୋଇଲେ ସିଦ୍ଧୁତ ॥
ଶଙ୍କର ଅଙ୍ଗରୁ ଯେତେ ଜନମ ହୋଇଲେ । ଭବଲୋକ ଭୁବଲୋକ ମହଲୋକ ହେଲେ ॥
ଦେବ ଦେବୀ ହୋଇଣ ସେ ସଂସାରେ ବିଖ୍ୟାତ । ଦୁର୍ଗା ଅମ୍ବିକା ନାରାୟଣୀ ସ୍ୱେଚ୍ଛେକ ସ୍ଥିତା।
ସୁରମୁନି ଜନ୍ମ ହେଲେ ବ୍ରହ୍ମାର ଅଙ୍ଗରୁ । ସନ୍ନ୍ୟାସୀ ହୋଇଲେ ଜନ୍ମ ମୋର ମସ୍ତକରୁ ॥
ବକ୍ଷସ୍ଥଳୁ ବନବାସୀ ଜନମ ହୋଇଲେ । ହୃଦ ପଦ୍ମରୁଂ ପୁଣି ବ୍ରହ୍ମଋଷି ଜନମିଲେ ॥
ମୋହର ଭୁଜରୁ ଜାତହେଲେ କ୍ଷତ୍ରି ଜାତି । ଉଦରୁ ହୋଇଲେ ମୋର ବୈଶ୍ୟ ଉତପତ୍ତି ।
ଉରୁ ଭୁଜ ନାଭି ହୃଦୁଂ ହୋଇଲେ ବ୍ରାହ୍ମଣ । ଶୂଦ୍ର ପାଦୁ ଜାତ ହୋଇ ସେବଇ ପସ୍ପର ॥
ସେବାକାରୀ ପଣେ ସେହୁ ଥାଇ ଦିବାରାତ୍ର । ଭଣ୍ଡାର ପରସ୍ତ ବୋଲି ଜଗତେ ବିଖ୍ୟାତ ॥
ଆବର ଭଣ୍ଡାର ବୋଲି ହୋଇଲାକ ଖ୍ୟାତ । ପାଦପଦ୍ମ ପଖାଳି ମୋ କରଇ ପବିତ୍ର ।୭୦।
ନଅ ବର୍ଣ୍ଣରୁ ଯେ ଏ ଛତିଶ ବର୍ଣ୍ଣ ହେଲେ । ଯେ ଯାହାର ବୃତ୍ତି ଘେନ ଜାତି ଭଣାଇଲେ ॥
ବ୍ରହ୍ମା ବେଦ ଉକ୍ତେ ସୃଷ୍ଟିକ ସର୍ଜିଲା । ବୈଶ୍ୟ ଯେ ବଣିଆ ଭିବେଦନ ବଞ୍ଚାଇଲା ॥
କ୍ଷତ୍ରିୟର ସେନାବୃତ୍ତି ଅଟଇ ବିଧିରେ । ନାନା ଫନ୍ଦାକରି ସେହୁ କୃଷିକର୍ମ କରେ ॥
ବୃତ୍ତିକ ଘେନିଣ ଜାତି ନାମ ଭଣାଇଲେ । ସେହି କର୍ମ ଘେନିକରି ସଂସାର ଚଳିଲେ ॥
ହୀନକର୍ମେ ହୀନଜାତି ଟେକ ବ ସବୁନ୍ତ । ବେଦର ଯେମନ୍ତ ପାର୍ଥ ନ ପାବନ୍ତି ଅନ୍ତ ॥
ବେଦରୁ ହୋଇଲା ସେ ଯେ ନାନା ଶାସ୍ତ୍ରଗତ । ଏ ନବବର୍ଣ୍ଣରୁ ତେହ୍ନେ ହୋଇଲାକ ଖ୍ୟାତ॥
ଏ ନବବର୍ଣ୍ଣ ଯେ ପାର୍ଥ ସାରୋଦ୍ଧାର ଜାଣ । ଆରୁ ଅନ୍ୟ ଅନ୍ୟେ ନଷ୍ଟକର୍ମେ ହେବେ ପୁଣ ॥
ନଷ୍ଟଭ୍ରଷ୍ଟ କର୍ମ ଯେବେ ସଂସାରେ ନୋହନ୍ତା । କାହା ଘେନ ବ୍ରହ୍ମା ଆଉ ସୃଷ୍ଟି ସରଜନ୍ତା ॥
ବିଷ୍ଣୁଙ୍କର ମାୟା ମୋର ଏହିମତ ଜାଣ । ମଦନମଦରେ କାର ନ ରହଇ ଜ୍ଞାନ ॥
ସମସ୍ତେ ଯେ ଏକଜାତି ଜ୍ଞାନବଳେ ହେବ । ସଂସାର ଚଳିବା ପାଇଂ ଏସବୁ ବାହ୍ୟ ।୮୦
ଶ୍ରୀକୃଷ୍ଣ ବଚନେ ପାର୍ଥ ବୋଧ ଯେ ପାଇଲା । ଅଚ୍ୟୁତାନନ୍ଦ ଯେ ଏହା ଗ୍ରନ୍ଥରେ ଲେଖିଲା ॥
ଶ୍ରୀକୃଷ୍ଣ ଅର୍ଜୁନ ବାଣୀ ଯେ ଶୁଣେ ଶ୍ରବଣ । କୋଟିଜନ୍ମ ପାପ ତାର ହୋଅଇ ମୋଚନ ॥
ଅହେ ଜନେ ଜାଣ ଏହୁ ସୁଜ୍ଞାନ ସମ୍ପତ୍ତି । ଶୁଣାଇ ଶୁଣଇଂ ସେହୁ ଲଭଇ ମୁକତି ॥

ଇତିଶ୍ରୀ କୈବର୍ତ୍ତ ଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ ଦାସରାଜା ଚରିତେ
ନବଜାତ ଜନ୍ମ କଥନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଚତୁର୍ଥୋଽଧ୍ୟାୟଃ ।

— — —

## ॥ ପଞ୍ଚମ ଅଧ୍ୟାୟ ॥

ଅର୍ଜ୍ଜୁନ ପୁଚ୍ଛଇ ଶୁଣ ପ୍ରଭୁ ଭଗବାନ । ଏବେ କହ କଇବର୍ତ୍ତ ଚରିତ ଯେମାନ ।୧।
ଶ୍ରୀହରି ବୋଇଲେ ତୁମ୍ଭେ ଶୁଣ ହେ ଅର୍ଜ୍ଜୁନ । ଦାସରାଜାକୁ ଯେ ନାବ ଅଶ୍ୱ ଦେଲୁ ପୁଣ ॥
ବୋଇତ ଅଶ୍ୱ ନେଇ ସିଂହଳଦ୍ୱୀପ ଚଳ । ମୋହର ଆଜ୍ଞା ଥାଉ ଚନ୍ଦ୍ର ସୂର୍ଯ୍ୟ ଥିବା କାଳ ॥
ବୋଇତ ବେଉସା କର ନ ହୋଇବ କ୍ଷତ । ହାଥୀ ଅଶ୍ୱ ପାଦାନ୍ତ କଷିବେ ତୋର କଥା ।
ପୂର୍ବେ ଯେ ରାଘବ ତୋତେ ଗିଳିଲକ ଧରି । ତାହାକୁ ମାରିଣ ବେଗ କର ବସୁନ୍ଧରି ॥
ତୋହର ବଇରି ତାକୁ ମାରନ୍ତୁ ଅବଶ୍ୟ । ଆମ୍ଭେ ଆଜ୍ଞା ଦେଉ ଅଛୁଁ କିଛି ନାହିଁ ଦୋଷ ॥
ଦାସରାଜା ବୋଇଲ ଯେ ଶୁଣି ମା ଗୋସାଇଁ । ସ୍ଥାନଜୀବ ମାଇଲେ ଯେ ପାପ ପାଇବଇଁ ॥
ମୋତେ ଯେ ମାଇଲ ତାକୁ ମୁହିଂ ନ ମାରିବି । ଜୀବ ଯେ ମାଇଲେ ମୁହିଂ ନରକେ ପଡ଼ିବି ॥
ଏ ପାପକର୍ମକୁ ମୋତେ ନ କହ ଗୋସାଇଁ । ଆନ ଜୀବକାୟେ ମୋତେ ଦେବାକ ବତାଇ ।
ତ୍ରେତୟା ଯୁଗରେ ଯେ ଶ୍ରୀରାମ ଅବତାର । ରାବଣ ହରିନେଲା ସୀତାଙ୍କୁ ତାହାଙ୍କର ।୧୦।
ସୁଗ୍ରୀବର କୂଳେ ରାମ ହୋଇଲେ ମଇତ୍ର । ମଇତ୍ର ଛଳେ ଶ୍ରୀରାମ ବାଳି କଲେ ହତ ॥
ଅଦୋଷେ ମାଇଲେ ରାମ ବାଳି ନୃପବର । ତାହାର ନନ୍ଦନ ଜାମ୍ବେଶବର ଯେ ବୀର ॥
ମାଦବ ସଂହାରିଣ ଓଁଶସ୍ତ୍ର ତଳେ ବସି । ସେ ତୁମ୍ଭକୁ ବାଣ ଯେ ବିନ୍ଧିଲ ବ୍ରହ୍ମରାଶି ॥

ଶ୍ରୀକୃଷ୍ଣ ବୋଇଲେ ଦାସ ଶୁଣ ମୋର ବାଣୀ । ତାହା ତୋତେ ବୁଝାଇ କହିବାକ ପୁଣି ॥
ମୋତେ ଯେ ଭଗତ କରେ ତାକୁ ମୋର ଦୟା । ତାହା ଠାରେ ନ ଥାଇ ମୋହର କିଛି ମାୟା ॥
ମୋର ଆଜ୍ଞା ନ ଲଙ୍ଘିଛି ପାତାଳର ଗାର । ମୋର ଆଜ୍ଞା ମେଣ୍ଟିବାକୁ ଶକତି କାହାର ।
ମୋହର ଆଜ୍ଞାରେ ଛନ୍ତି ଦଶଦିଗପାଳ । ପୃଥ୍ୱୀ ନ ଲଙ୍ଘଇ ସେ ସପତସିନ୍ଧୁ ଜଳ ॥
ଆମ୍ଭ ଆଗ୍ୟାଂ ପ୍ରମାଣେ ସେ ମେରୁ ମହୀଧର । ଅନନ୍ତ ବାସୁକି ପୃଥ୍ୱୀ ଧରିଛନ୍ତି ଶିର ॥
ଆମ୍ଭ ଆଜ୍ଞା ପରମାଣେ ପବନ ବହଇ । ଆମ୍ଭ ଆଜ୍ଞା ପ୍ରମାଣରେ ଉଦେ ଦିବା ହୋଇ ॥
ଆମ୍ଭର ଆଜ୍ଞାରେ ଯେ ସରଜନା ବ୍ରହ୍ମାଣ୍ଡ । ଆମ୍ଭର ଆଜ୍ଞାରେ ଯେ ନଥାଇ ଯମଦଣ୍ଡ ॥
ଆମ୍ଭର ଆଜ୍ଞାରେ ବିଭୀଷଣ ଯେ ରାଜନ । ଲଙ୍କାରେ ନିଜକୁ ବର ଦେଲୁଂ ସାବଧାନ ॥
ମୋରେ ଯେ ଭଜଇ ତାକୁ ମୋର ପଦ ଦେଇ । ଭଗତର ହିତେ ଯୁଗେଯୁଗେ ଦେହ ବହି ॥
ମୋର ଦେହ ନ ରହଇ ମର୍ତ୍ତ୍ୟମଣ୍ଡଳରେ । ଭକତ ସର୍ବଦା ଥାଇ କଳ୍ପ କଳ୍ପାନ୍ତରେ ॥
ଏସନ ପ୍ରକାରେ ଦାସରାଜାଙ୍କୁ ବୁଝାଇ । ସୁବର୍ଣ୍ଣର ଜାଲ ଏକ ଦିଆଇଲ ମୁହିଂ ॥
ପ୍ରସନ୍ନ ହୋଇଣ ଦାସରାଜାକୁ ତା ଦେଲୁଂ । ଏ ଜାଲ ଘେରାଇ ମୀନ ମାରନ୍ତୁ ବୋଇଲୁଂ ॥
କିଛି ଦୋଷ ନାହିଂ ତୋର ମୋର ଆଜ୍ଞା ଯେନ । ଯୁଗେଯୁଗେ ରହିଥାଉ ଏ ମୋର ବଚନ ॥
ଶୁଣି ଦାସରାଜା ଯେ ବୋଇଲ ମହାବାହୁ । ତୁମ୍ଭର ସୁବର୍ଣ୍ଣ ଜାଲ ମୋତେ ଆଜ୍ଞା ନୋହୁ ॥
ଏତେକ ସୁବର୍ଣ୍ଣ ମୁହିଂ କାହୁଁ ଯେ ଆଣିବ । ସୁବର୍ଣ୍ଣର ଜାଲ ଗୋଟି ନିର୍ମାଣ କରିବ ॥
କ୍ଷେତ୍ରର ଖଣ୍ଡ ମାରଣା ଏ ରାଜ୍ୟ ନେବେ ବନ୍ଧି । ଦୋସାଧୁ ରହାଇ ମୋତେ ବନ୍ଦୀ ଯେ କରାଇ ॥
ଆହେ ମହାପ୍ରଭୁ ତୁମ୍ଭ ଆଜ୍ଞା କେ ମେଣ୍ଟିବ । ଆନମତେ ଜାଲ ନିର୍ମାଣ କରି ଆଜ୍ଞା ଦେବ ।୩୦।

ଶ୍ରୀହରି ବୋଇଲେ ତେବେ କର ଏହି ବିଭ । ମୀନହିଂ ମରିବେ କେବେ ଜାଲ ନ ଛୁଡ଼ିବ ॥
ଏତେ ବୋଲି ହରି ଦାସରାଜାଙ୍କୁ ଅନାଇଁ । ବୀଜ ମୁଠିଏକ ଦେଲୁଂ ତାର ହସ୍ତେ ନେଇ ॥
ଏ ବୀଜ ବୃକ୍ଷ ବକଳ ଘେନ ସୂତା ଟାଣ । ସୂତାକାଟି ତହିଂରେ ହୋ ଦାସ ଜାଲ ବୁଣ ॥
ଅର୍ଜୁନ ବୋଇଲେ ପ୍ରଭୁ ଶୁଣିବା ଗୋସାଇଁ । କାହୁଂ ସେ ବୀଜ ଆଣିଲ ମୋତେ କହ ଫେଇ ॥
ଶ୍ରୀକୃଷ୍ଣ ବୋଇଲେ ପାର୍ଥ ସାବଧାନେ ଶୁଣ । ପୂର୍ବର ବାରତା ତୋତେ କହୁଅଛୁ ପୁଣ ॥
ପୂର୍ବେ ଶତେ ଯୁଗ ସିନ୍ଧୁ ମନ୍ଥନର କାଳେ । ଅନନ୍ତ ବାସୁକୀ ବୀଜ ଖସିଲକ ଜଳେ ॥
ସୋମନ୍ତ୍ର ମନ୍ଥନେ ମେରୁ ଖୁଆ ହୋଇଥିଲା । ମନ୍ଥନ ତାପେ ବାସୁକୀ ମଦନ ପୀଡ଼ିଲା ॥
ତତକ୍ଷଣେ ଉଛୁଳି ବିନ୍ଦୁ ତୀରରେ ଲଗିଲା । ସେ ବୀଜ ମଧ୍ୟରୁ ବୃକ୍ଷ ଅଙ୍କୁରିତ ହେଲା ॥

ତୀରରେ ଲଗନ୍ତେ ତହିଂ ବୃକ୍ଷ ହେଲା ଜାତ । ତେଣୁକରି ଛଣପଟ ନାମ ତାର ଖ୍ୟାତ ॥
ବୀଜ ଘେନି ଦାସରାଜା ତତ୍କାଳେ ବୁଣିଲା । ବୁଣିଲା ମାତ୍ରକେ ବୃକ୍ଷ ବହନ ଉଠିଲା ।୪୦।
ଆବର କଥାଏ ପାର୍ଥ କହିବାକ ଶୁଣ । ପାଟ ପାତନରୁ ଶୁଦ୍ଧ ଛଣପଟ ଜାଣ ॥
ଛଣପଟ ସୂତ୍ର ସିଦ୍ଧ ବ୍ରାହ୍ମଣ ଯେ ବ୍ରତ । ତେଣୁକରି ଶୁଦ୍ଧ ଅଟେ ଦାସ କଇବର୍ତ୍ତ ॥
ଶୁଣ ଏବେ ଅର୍ଜୁନ ହୋ ସ୍ଥିରକରି ମନ । ସେ ବୀଜ ଦେଇଣ ଦାସେ କହିଲୁ ଏସନ ॥
ତୋହର ଜୀବିକା ଏବେ ଦାସରାଜା ଶୁଣ । ଚୂଡ଼ାଭୁଜା ଆଦି ଯେ ଭଜାଇ ବିକ ପୁଣ ॥
ଲିଆ ଯେ ଉଖୁଡ଼ା ପୁଣି ମିଠାଇ କରିବୁ । ଖଜା ଖୋସା ବାଉଳି ଯେ ବଜାରେ ବିକିବୁ ॥

ପୁଣି ଯେ କାକରା ପେଡ଼ା ଅନୋଳା ମିଶାଇ । ପଞ୍ଚବର୍ଣ୍ଣ କରିଣ ବଜାରେ ବିକ ନେଇ ॥
ନାବ ଜାଲ ଚୂଡ଼ା ତୈର୍ଥି ଶାଳର ବେଉସା । ଏହି ବାଣିଜ୍ୟରେ ତୋର ପେଟ ହେବ ପୋଷା ॥
ଆଗତ ଭବିଷ୍ୟ ଏବେ ଦାସରାଜା ଶୁଣ । କାଷ୍ଠ ଭିଆଇଣ କରି ବାସେଲୀ ନିର୍ମାଣ ॥
ଏ ବାସେଲୀ ଇଷ୍ଟ ତୋର ବଂଶରେ ରହିବ । ଚଇତ୍ର ପୂର୍ଣ୍ଣିମା ଦିନ ପୂଜା ସେ ପାଇବ ॥
ଆଗତ ଭବିଷ୍ୟ ଏହୁ ମନେ ହେଜିଥିବୁ । ଅଶ୍ୱରୂପେ ଭୋଗଦେଇ ଏହାକୁ ପୂଜିବୁ ।୫୦।
ଦିନବାର କହୁଅଛିଂ ଦାସରାଜା ଶୁଣ । ଚଇତ୍ର ପୂର୍ଣ୍ଣିମା ଇଷ୍ଟପୂଜାର ବିଧାନ ॥
ପୁତ୍ରଯାକ ଲିପିବୁ ଯେ ଚୂର୍ଣ୍ଣେ କରି ତୋର । ଅରୁଆ ତଣ୍ଡୁଳ ବାଟି ପକାଇବୁ ଛେର ॥
ସକଳ କୁଟୁମ୍ବ ଶୁକ୍ଳବସ୍ତ୍ର ଯେ ପିନ୍ଧିବ । ବିଧିମତେ ନବତନ ପାକ ଯେ କରିବ ॥
ବନ୍ଧୁ କୁଟୁମ୍ବ ସହିତେ ବରଣ କରିବ । ଅତିଥି ଅଭ୍ୟାଗତଙ୍କୁ ସୁଷ୍ଟେ ଭୁଞ୍ଜାଇବ ॥
ବୋଇତ ନାବ ପରିଙ୍ଗା ରଙ୍ଗା ଜାଲ ଆଦି । ନାବରେ ବସାଇ ପୂଜା ପୂଜିବ ସମ୍ପାଦି ॥

ପୂଜାର ଦିବସ ଜାଣି ତନ୍ତ୍ର ମନେ ଘେନ । ତୁହେ ଗୃହେ ଲେପ ଚୂର୍ଣ୍ଣ ବିଚିତ୍ର କରିଣ ॥
କୁଳବଧୂମାନେ ଯେ ହୋଇଣ ଶୁଦ୍ଧମନ । ନବବସ୍ତ୍ର ଅଲଙ୍କାର ପିନ୍ଧି ସୁଯତନ ॥
ନାବ ଜାଲ ଧୋଇବ ଆପଣେ କରି ସ୍ନାନ । ନାବକୁ ବିଚିତ୍ରକରି କରିବ ମଣ୍ଡନ ॥
ସିନ୍ଦୂରେ ମଣ୍ଡିବ ମଙ୍ଗ ଜବାପୁଷ୍ପ ହାର । ଗର୍ଭରେ ମଣ୍ଡପ ମଣ୍ଡି ବେଢ଼ାଇ ଚଉର ॥
ଚଉପାଶେ ଲମ୍ବାଇବ ପୁଷ୍ପ ତୋରଣମାନ । ଭିତରେ ଚାନ୍ଦୁଆ ଟାଣି ବିଚିତ୍ର ବିଧାନ ।୬୦।
ମୋର ରୂପ ସିଂହାସନ ଉପରେ ବସାଇ । ଦିବ୍ୟ ବସ୍ତ୍ର ଅଲଙ୍କାର ସୁଗନ୍ଧେ ମଣ୍ଡାଇ ॥
ବିବିଧ ବର୍ଣ୍ଣେଣ ତାଳ ମୃଦଙ୍ଗ କାହାଳ । ମୋର ନାମ ଗାଇବ ଯେ ପଞ୍ଚମୁଖେ ବୋଲ ॥
ନାନାଦି ଶୀତଳ ଦ୍ରବ୍ୟ ଘଣ୍ଟ ଧୂପ ଦୀପ । ମୋର ନାମେ ପୂଜା ଯେ କରିବ ମନ୍ତ୍ରେ ବିପ୍ର ॥
ନାବ ଅଗ ମଙ୍ଗେ ବିଶ୍ୱକର୍ମା ପୂଜାସାରି । ଗନ୍ଧ ଯେ ଚନ୍ଦନ ନଇବେଦ୍ୟ ବିଧିକରି ॥

ନବରତନ ବସ୍ତ୍ର ଆଗମଙ୍କେ ବେଢ଼ାଇବ । ବିଶ୍ୱକର୍ମା ମନ୍ତ୍ରେ ତହିଁ ପୂଜା ଯେ କରିବ ॥
ପଦ୍ମମଙ୍କେ ବସାଇ ଜାଲକୁ ପୂଜାକରି । ନବରତନ ବାସ ପୁଷ୍ପ ଦିବ୍ୟ ଗନ୍ଧବାରି ॥
ଅନନ୍ତବାସୁକୀ ମନ୍ତ୍ରେ ନୈବେଦ୍ୟ କରିବ । ନାନାବିଧ ଶୀତଳ ଦ୍ରବ୍ୟ ଧୂପଦୀପ ଦେବ ॥
ଏ ବିଧିରେ ପୂଜା ଦାସରାଜା ହୋଇବେ ତୁଷ୍ଟ । ପଛେ ଦେବୁ ବଳି ଅର୍ଘ୍ୟପୂଜା ମହାମାସ୍ତି ॥
ମୋତେ ଯେ ପୂଜଇ ତାକୁ ବିପତ୍ତି ନ ଥାଇ । ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ପାଇ ॥
ଅନ୍ତକାଳେ ମୁହିଁ ତାକୁ ହୁଅଇ ପ୍ରସନ୍ନ । ଅବଶ୍ୟ ଲଭଇ ସେହୁ ବୈକୁଣ୍ଠଭୁବନ ।୭୦।
ଏମନ୍ତ ସମ୍ବାଦ ଯେହୁ କର୍ଣ୍ଣରେ ଶୁଣନ୍ତି । କୋଟି କଲ୍ପାନ୍ତର ସେହୁ ବୈକୁଣ୍ଠରେ ଯାନ୍ତି ॥
ଶ୍ରବଣପଥରେ ପଶି ମୋହର ବଚନ । ଗୁରୁତର ପାପମାନ ହୋଇଅଇ ଛେଦନ ॥
ବିଷ୍ଣୁର ବଚନ ଯେହୁ ନ ଶୁଣନ୍ତି କର୍ଣ୍ଣ । ଜୀବନ୍ତା ନ ବୋଲି ତାକୁ ମୃତାର ସମାନ ॥
ଶୁଣାଇ ଶୁଣଇ ଯେହୁ ଲଭଇ କାରଣ । କହଇ ଅଚ୍ୟୁତ ଦାସ କର ଉଦ୍ଧାରଣ ।୭୪।

ଇତିଶ୍ରୀ କୈବର୍ତ୍ତ ଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ ଦାସରାଜା ଚରିତେ ଇଷ୍ଟପୂଜା ବିଧି ବର୍ଣ୍ଣନେ ହରି **ଅର୍ଜୁନ** ସମ୍ବାଦେ ନାମ ପଞ୍ଚମୋଽଧ୍ୟାୟଃ ।

---

## ॥ ଷଷ୍ଠ ଅଧ୍ୟାୟ ॥

ଆହୁରି କଥାଏ ଏବେ ଦାସରାଜା ଶୁଣ । ତୋହର ବନ୍ଧୁ ବାନ୍ଧବ କୁଟୁମ୍ବାଦି ଜନ ।୧।
କାଠର ଘୋଡ଼ାକୁ ସଜ କରିଣ ଯତନ । ଅଶ୍ୱଆରପଣେ ତହିଁ କରି ଆରୋହଣ ॥
ବାଣ ନିଶାଣ ଯେ ଛତ୍ରୀ ତରାସ ଉଡ଼ାଇ । ରାଜା ପରି ବାଙ୍କ ଦ୍ୱାରେ ଅଶ୍ୱକୁ ଫେରାଇ ॥
ଶାଢ଼ୀ ସୁନାବଳା ରାଜା ପାଖଠାରୁ ପାଇ । ଚମାଳ କରିଣ ଗୀତ ଗାଇଣ ବୁଲଇ ॥
ନାରୀଗଣ ମିଳି ଯେ ମଙ୍ଗଳଧ୍ୱନି କରି । କାଠଘୋଡ଼ା ବନ୍ଦାଇବେ ଅର୍ଘ୍ୟସ୍ଥାଳୀ ଧରି ॥
ଅନ୍ତକାଳେ ମୋର ତହିଁ ହୋଇବ ପ୍ରବେଶ । ତାହାକୁ ଦିଅଇ ମୋହ ବୈକୁଣ୍ଠରେ ବାସ ॥
ତୋତେ ଆଜ୍ଞାଦେଲୁଂ ସେ ସିଂହଳଦ୍ୱୀପେ ଯାଅ । ରାଜପଣେ ବସିଣ ଯେ ତହିଁ ପୂଜା ପାଅ ॥
ଶ୍ରୀହସ୍ତରେ ଶାଢ଼ୀ ଦାସରାଜାକୁ ଯେ ଦେଇ । ଶାଢ଼ୀ ପାଇ ଦାସରାଜା ପାଦେ ପଡ଼ିଲାଇ ॥
ଭକ୍ତିଭରେ କରଯୋଡ଼ି କଲା ବହୁ ସ୍ତୁତି । ଯେଣିକି ତାହାର ଯେତେ ବିନସ୍ତ ଭକତି ॥
ଶୁଣିଲୁ କି ଅର୍ଜୁନ ହୋ ଦାସରାଜା ବାଣୀ । ମନର ସଂଶୟ ତୋର ତୁଟିଲ ତ ଜାଣି ।୧୦।
ଏମନ୍ତ ପ୍ରକାରେ ଦାସରାଜା ଜନ୍ମ ହେଲା । ବୋଇତ ଅଶ୍ୱକୁ ସେହୁ ଆମ୍ଭଠାରୁ ନେଲା ॥
ଶାଢ଼ୀ ବାନ୍ଧି ତା ରାଜ୍ୟରେ ରାଜପଦ ଦେଲି । ନାନା ଜୀବିକା ତାହାକୁ ବତାଇଣ ଦେଲି ॥
ଆମ୍ଭର ସହିତେ ସେହୁ ବୋଇତେ ବସିଲା । ଅଶ୍ୱକୁ ଘେନିଣ ସେ ସିଂହଳଦ୍ୱୀପେ ଗଲା ॥
ଅନ୍ତର୍ଧାନହୋଇ ଆମ୍ଭେ ଶୂନ୍ୟରେ ଗମନ । ଯାଇଣ ପ୍ରବେଶ ହେଲୁଂ ବୈକୁଣ୍ଠଭୁବନ ॥
ସେ ବୈକୁଣ୍ଠପତି ପାଦପଦ୍ମରେ ଶରଣ । ଭଣଇ ଅଚ୍ୟୁତ ଦାସ ରଖ ଭଗବାନ ।୧୫।

ଇତିଶ୍ରୀ କୈବର୍ତ୍ତ ଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ କୃଷ୍ଣ ଅର୍ଜୁନ ସମ୍ବାଦେ ଦାସରାଜା ସିଂହଳଦ୍ୱୀପ ଗମନ ନାବ ପୂଜା ବର୍ଣ୍ଣନେ ନାମ ଷଷ୍ଠୋଽଧ୍ୟାୟଃ ।

---

## ॥ ସପ୍ତମ ଅଧ୍ୟାୟ ॥

ଶ୍ରୀକୃଷ୍ଣ ମୁଖକୁ ଚାହିଁ ପୁଚ୍ଛଇ ଅର୍ଜ୍ଜୁନ । ଦାସରାଜା ଗଲା ଯେ ସିଂହଳଦ୍ୱୀପେ ପୁଣ ।୧।
କେମନ୍ତ ପ୍ରକାରେ ସେହୁ ହୋଇଲେକ ରାଜା । ସୁଦୟା କରିଣ କହିବାକ ଦେବରାଜା ॥
ଶ୍ରୀହରି ବୋଇଲେ ଯାହା କହିଲୁ ଅର୍ଜ୍ଜୁନ । ଦାସରାଜା ଗଲା ତହୁଁ ସିଂହଳଦ୍ୱୀପେଣ ॥
ସେ ଦେଶର ରାଜା ଥିଲା ଅପୁତ୍ର କି ହୋଇ । ରାଜା ନାଶ ଗଲରୁ ସେ ଅରାଜକ ହୋଇ ॥
କଂସ୍ୟ କଳସ ଯେକ ହାଥୀମାଥେ ଦେଇ । ଯା ଶିରେ ଢାଳିବ କୁମ୍ଭ ହସ୍ତେ ରାଜାହୋଇ ॥
କେହି ଜଣେ ହୋଇବାକୁ କ୍ଷମ ଯେ ନୋହିଲା । ରାଜାର ବିହୀନେ ରାଜ୍ୟ ଗୋଳ ଉପୁଜିଲା ॥
ସମସ୍ତ ପାତ୍ର ମନ୍ତ୍ରୀ ଯେ କରନ୍ତି ବିଚାର । ହସ୍ତୀକି ମଣ୍ଡନ କରି ବୁଲାଅ ନଗର ॥
ପୁଷ୍ପ ଚନ୍ଦନରେ କରି ହସ୍ତୀକି ମଣ୍ଡନ । ତା ପରେ ନେତ ଚନ୍ଦୁଆ ସଜାଡ଼ ଯତନ ॥
ଆଲମ୍ବ ବଲମ୍ବ ପାଶେ ଚହଳ ଉଡ଼ଇ । ପଞ୍ଚାଶ ଛତିଶି ବାଦ୍ୟ ଆଗରେ ବାଜଇ ॥
ହୁଳହୁଳି ଶବଦରେ ବ୍ରହ୍ମାଣ୍ଡ ପୂରିତ । ଏରୂପେ ହାଥୀକି ମଣ୍ଡି ଆଣିଲେ ତୁରିତ ।୧୦।
କଂସ୍ୟ ଛିଲଟେ ଗଙ୍ଗାଜଳ ଯେ ଭରିଲେ । ପୁଷ୍ପହାର ଗୋଟିଏ କଳସେ ବେଢ଼ାଇଲେ ॥
ତୀର୍ଥଜଳପୂର୍ଣ୍ଣ କୁମ୍ଭ କରି ଶୁଣ୍ଢେ ଦେଲେ । ମଙ୍ଗଳଉତ୍ସବ ନାଦେ ହାଥୀ ଫେରାଇଲେ ॥
କଂସ୍ୟ କଳସ ଘେନି ରାଜକୁଞ୍ଜର । ରାଜାର ନଅରୁ ସେ ଯେ ହୋଇଲା ବାହାର ॥
ଯେମନ୍ତ ପ୍ରକାରେ ହାଥୀ ବୁଲଇ ନଗରେ । ବୁଲିଣ ପ୍ରବେଶି ହେଲା ଦାସରାଜା ଠାରେ ॥
ତୀର୍ଥଜଳ ପୂର୍ଣ୍ଣକୁମ୍ଭ ତାର ଶିରେ ଢାଳି । ପ୍ରୋହିତ କଲ୍ୟାଣ ପାତ୍ର ମନ୍ତ୍ରୀ ଜଗୁଲି ॥
ରାଜାର ସଂଯୋଗ ଯେ ଜାଣିଲେ ପଡ଼ିହାରୀ । ନେତ୍ରପର ଚାନ୍ଦୁଆ ଯେ ମଶିମା ଫୁକାରି ॥
ଅମାନାତ୍ୟ ହାଥୀ ଯେ ମାହୁନ୍ତ ରଥୀଗଣ । ଚତୁରଙ୍ଗ ବଳ ବେଗେ ମିଳିଲେକ ପୁଣ ॥
ହସ୍ତୀରେ ବିଜୟ ରାଜଛତ୍ର ଧରାଇଣ । ଚାମର ମନ୍ଦୁର ଛେଲି ଢାଳନ୍ତି ଆପଣ ॥
ଆଗରେ ନିଶାଣ ଶ୍ୱେତଛତ୍ର ଆଦିମାନ । ପରିବାରୀ ଝଟିଛନ୍ତି ବିବିଧ ବର୍ଣ୍ଣେଣ ॥
ଦୋନି ପାର୍ଶ୍ୱରେ ପଡ଼େ ଆଲଟ ଚାମର । ଉଡ଼ଇ ପାତାଙ୍କ ନେତ ଅତି ମନୋହର ।୨୦।
ଆଗରେ ବାଜଇ ମୀରତୁରୀ ଯେ କାହାଳି । ଢୋଲ ଦମା ଦମକର ଶବଦ ଉଛୁଳି ॥
ପାଟଛତ୍ର ତରାସ ଉଡ଼ନ୍ତି ଅପ୍ରମିତ । ଭାଟେ କୟେବାର ଯେ ଗଣିକା ନୃତ୍ୟଗୀତ ॥
ବ୍ରହ୍ମପୁରେ ପଢ଼ନ୍ତି ମଙ୍ଗଳାଷ୍ଟକ ସ୍ତୋତ୍ର । ଦାସ ବଇଷ୍ଣବ ତପୀ ସନ୍ନ୍ୟାସୀ ମହନ୍ତ ॥
ବିପ୍ରେ ବେଦ ଉଚ୍ଚାରନ୍ତି ସାମ ଯେ ଗାୟନ । ହୁଳହୁଳି ଦିଅନ୍ତି ନାରୀ ଶୁଭେ ଘନଘନ ॥
ଯେମନ୍ତ ଶୁଭଯୋଗରେ ଦାସରାଜା ଯାଇ । ଜଗତୀ ଉପରେ ବିଜେ କଲା ନୃପସାଇଁ ॥
ପୁରୋହିତ ବ୍ରାହ୍ମଣେ ମିଳି ଅଭିଷେକ କଲେ । ସୁବର୍ଣ୍ଣ ପଇତା ରାଜା କନ୍ଧେ ଲମ୍ବାଇଲେ ॥
ସାମବେଦ ପଠନେ ଯେ ଗୋତ୍ର ଉଚ୍ଚାରଣ । ଦାସରାଜା ବୋଲି ନାମ କଲେକ ବଖାଣ ॥
ଅର୍ଜ୍ଜୁନ ବୋଇଲେ ପ୍ରଭୁ ଆହ୍ମର କଥାଏ । କେବଣ ରାଜାର ଝିଅ ନାୟେକା ତା ହୋଏ ॥
ଶୁଣିଣ ଶ୍ରୀହରି ତହୁଁ ବୋଲନ୍ତି ବଚନ । ପଶ୍ଚିମ ଦେଶରେ ଥିଲା ଯେକ ରାଜା ଜଣ ॥
ଗିରିରାଜ ବୋଲିଣ ଯେ ମୋହର ଭଗତ । ବିଷ୍ଣୁର ଅଂଶରେ ଜାତ ସେହି ନୃପନାଥ ।୩୦।
କେତେ ସମ୍ବତ୍ସର ସେହୁ ରାଜପଣ କଲା । ଦିଗ ବେହରଣେ ରାଜା ଦିନେକ ଚଳିଲା ॥
ମହାନଦୀ ନାମେଣ ଏକଇ ଦିବ୍ୟ ନଈ । ପଶ୍ଚିମ ଦିଗରୁ ସେ ଯେ ଆସୁଅଛି ବହି ॥

ସେ ନଦୀର ଙ୍କରେ ରଜା ପ୍ରବେଶ ହୋଇଲ । ଅତ୍ୟନ୍ତ ସୁନ୍ଦର ନୀର ନୟନେ ଦେଖିଲ ॥
ସେ ନଦୀରେ ସର୍ବଲୋକ କରୁଥାନ୍ତି ସ୍ନାନ । ଦେବଅଙ୍ଗ ଲଗି ନଦୀ ଦେବତା ସମାନ ॥
ସୁରବେଣ ସ୍ତ୍ରିରୂପୀ ଅଛଇ ସେ ନଦୀ । ସପତ ପାତାଳ ସେହୁ ବହୁଥାଇ ଭେଦ ॥
ଦଇବ ଘଟଣା ଦେଖ ଅପରୂପ କୃତ୍ୟ । ଦେବୀରୂପ ବହି ନଦୀ ହେଲ ଉନମତ୍ତ ॥
ରୂପ ଯଉବନ ତାର ବକାଣି ନ ସରୁଛି । ଅଙ୍ଗେଲାଂ ପାଟଣ ଗନ୍ଧ ପୁଷ୍ପେ ଯେ ଖଞ୍ଜିଛି ॥
ଲଲାଟ ସିନ୍ଦୂର ବନ୍ଦୁ ଭ୍ରୂଲତା କମାଣ । ଗଣ୍ଡ ମଣ୍ଡଳେ ମକର ଖେଳୁଥାଏ ପୁଣ ॥
ତିଲ ପୁଷ୍ପ ଜିଣା ନାସେ ଖଞ୍ଜିତ ବସଣି । ବିମ୍ବ ଅଧରକୁ ଶୋଭା ପାଉଥାଇ ପୁଣି ॥
ମୁକୁତାର ମାଳ ଉରପରେ ଲମ୍ବିଥାଇ । ବାସଫୁଟି ଉର ଶୋଭା ବିରାଜ ଦିଶଇ ।୪୦।
ବାହେ ବାଜୁବନ୍ଧ କରେ ସୁବର୍ଣ୍ଣର ଚୁଡ଼ୀ । ଅମୂଲ୍ୟ ମୁଦ୍ରିକାମାନ ଅଙ୍ଗୁଳିରେ ଜଡ଼ି ॥
ନେପୁର ବାଜେଣୀ ବଳା ରୁଣଝୁଣ ହୋଇ । ମଦନମଦରେ ବାଳା କଟାକ୍ଷେ ଅନାଇ ॥
ସୁଗଠିତ ତନୁ ତା ଅପୂର୍ବ ଶୋଭାରାଶି । ବିବେକ ହାରିବ ପୁଂସ ଦେଖିଣ ସେ ରୂପସୀ ॥
ଏମନ୍ତ ଭଙ୍ଗୀରେ ସ୍ତ୍ରି ଉଭା ଯେ ହୋଇଲ । ଜଳଯାକ ଆପଣା ଶରୀରେ ସହରିଲ ॥
ରାଜାକୁ ରମିବ ବୋଲି ମନେ ବିଚାରିଲ । ପାଦତଳ ରେଣୁ ସେ ଯେ ସୃଷ୍ଟି କରାଇଲ ॥
ସୃଷ୍ଟି ରେଣୁ ଉପରେ ଯୁବତୀ ଉଭାହେଲ । ବାଙ୍କ କରିଣ ବଦନ ରାଜାକୁ ଚାହିଁଲ ॥
ସତ୍ୟଯୁଗ କଥା ଏହୁ ଶୁଣ ହେ ଅର୍ଜୁନ । ସ୍ତ୍ରି ଠାରେ ରାଜାର ଯେ ପଡ଼ିଲ ନୟନ ॥
ମନେ ବିଚାରିଲ ମୋର ଅନେକ ଦେଇ । ଏମନ୍ତ ସୁନ୍ଦରୀ ହୋଇ ଜଣେ ତହିଁ ନାହିଁ ॥
ନିବଇଂ ଏହାକୁ ନେଇ ମୋର ନଗରକୁ । ଏହାସଙ୍ଗେ ପ୍ରୀତି କରି ତୋଷିବି ଚିତ୍ତକୁ ॥
କାମାତୁରେ ପୀରତିରେ ମନ ବଳାଇଲ । ରାଜା ଯାଇ ସେ କନ୍ୟାର ପାରୁଶେ ମିଳିଲ ॥
ସହଜେ ନିର୍ଜନ ସ୍ତ୍ରି କାମଲୋଭୀ ହୋଇ । ମନ୍ଦହାସେ ରାଜାକୁ ସେ ବଚନ କହଇ ।୫୧।
ଶୋଭାବନ୍ତ ଦେଖି ରାଜା ଆଲିଙ୍ଗନ କଲ । ବହୁକାଳେ ଦୁହିଁଙ୍କର ଅଙ୍ଗସଙ୍ଗ ହେଲ ॥
ସେ ନଦୀ କାମେଣୀ ସାଥେ ରାଜା ପ୍ରୀତି କଲେ । ନାନାରସ କେଳିକରି ଦୁହେଁ ତୁଷ୍ଟହେଲେ ॥
ରାଜା ଅଙ୍ଗସଙ୍ଗରୁ ସେ କନ୍ୟା ଗର୍ଭବାସ । ସେହିକ୍ଷଣି ଜନମ ହୋଇଲ ବାଳଶିଷ ॥
ମାୟାନାରୀ ଗର୍ଭୁଂ ସହୁଂ ଦୁହିତା ଜନ୍ମିଲ । ପୁଣି ସେହି ମହାନଦୀ ଜଳ ପାଲଟିଲ ॥
ଜଳମଧ୍ୟୁଂ ଦୁହିତା ଯେ ଭାସିଣ ଉଠିଲ । ଗିରିରାଜା କୁମାରୀକି କୂଳକୁ ଆଣିଲ ॥
ମନେ ବିଚାରିଲ ଯେ ଦୁହିତା ମୋର ନାହିଁ । ଏ ଦୁହିତା ଗୋଟିକ ଯେ ପ୍ରତିପାଳିବଇଂ ॥
ରାଜାପଣେ ପୃଥ୍ୱୀରେ ଅଛଇ ଚିର ରାହୁ । ଗିରିମା ବୋଲିଣ ମୋର ଝିଅ ନାମ ହୋଉ ॥
ଏମନ୍ତ ବିଚାରି ତାକୁ ନେଇଣ ରାଜନ । ପ୍ରବେଶ୍ୟ ହୋଇଲେ ଆସି ଆପଣା ଭୁବନ ॥
ରାଜା ଆଜ୍ଞାଂ ଦେଲେ ବେଗେ ଦୁଧିଆଳୀ ଆଣ । ଆଜ୍ଞାଂ ପାଇ ଡଗର ଯେ ଚଳିଲ ବହନ ।୬୦।
ଦୁଧିଆଳୀ ନାମ ତାର କମଳା ଅଛଇ । ଧାଈର ମଧ୍ୟରେ ପୁଣି ଶ୍ରେଷ୍ଠ ଅଟେ ସେହି ॥
ଡଗର ତକ୍ଷଣେ ନେଇ ରାଜାର ସମ୍ମୁଖେ । ରାଜା ଦୁହିତାକୁ ଦେଲେ ତାହାର କୋଳରେ ॥
ସେ ଦୁଧଧାଈର କୋଳେ ଗିରିମାକୁ ଦେଲେ । ଏ ଦୁହିତା ପ୍ରତିପାଳ ବୋଲିଣ ବୋଇଲେ ॥
ଅପଣା ସୀର୍ଯ୍ୟରୁ ଜାତ କାହାକୁ ଦେବଇଂ । ଦୁହିତାକୁ ଘେନି ଧାଈ ନଗରେ ଚଳଇ ॥
ପ୍ରବେଶିଲ ଯାଇ ସେହି ରାଣୀହଂସ ପୁରେ । ସକଳ ରାଣୀ ବସାଇ କହଇ ସତ୍ବରେ ॥
ଦଶହୋହରଣ କଥା ରାଣୀ ଆଗେ କହି । ମହାନଦୀ ଗର୍ଭୁଂ ଜାତ ଏ ଦୁହିତା ହୋଇ ॥

ଶୁଣିଣ ସମସ୍ତ ରାଣୀ ହରଷ ହୋଇଲେ । ଦୋହିତା ଗୋଟିକେ ଅତି ସତ୍ଯରେ ପାଳିଲେ ॥
ଏହିପରି ତହିଂ କେତେ ସମ୍ବତ୍ସର ଗଲା । ଗିଣମାର ଯୁବାକାଳ ଆସି ପ୍ରବେଶିଲା ॥
ଦୁହିତାର ପାଇଂ ରାଜା ବର ଯେ ଖୋଜିଲା । ବିଭା ଦେବାପାଇଂ ଦାସରାଜାକୁ ବରିଲା ॥
ଗୋତ୍ର ଉଚ୍ଚାରିଣ ବିଭାଦେଲା ଗିରିରାଜ । ତୃଣଶତ ଅଶ୍ବ ଦୁଇଶତ ମତ୍ତଗଜ ।୭୦।
ଶତେକ ଯେ ପରିବାରୀ ରତ୍ନ ଅଲଙ୍କାରେ । ଶତେରଥ ଦେଲା ରାଜା ଧନର ଭଣ୍ଡାର ॥
ଦୃଧ ଧାଈ କମଳାକୁ ରାଜା ବିଦାକଲା । ସନ୍ତୋଷ କରାଇ ଗିଣମାକୁ ସମର୍ପିଲା ॥
ଗୋରୁ ଯେ ମଇଷିଂ ରାଜା ଦେଲା ଅପ୍ରମିତ । ଖଟ ଦୋଳି ବାଙ୍ଗିଆ ଯେ ଘାଟଗଣ୍ଡା ନେତ ॥
ଦାସରାଜା ପାଶ୍ରେଟିଲା ରାଜା ସାଥେ ଆସି । ଦୋହିତା ସମର୍ପି ଆପଣାର ରାଜ୍ୟେ ପଶି ॥
ଦାସରାଜା ବିଭା ବାଣୀ ସମ୍ପୂର୍ଣ୍ଣ ହୋଇଲା । ଅଚ୍ୟୁତଦାସଯେ ଏହା ଗୀତରେ ଗାଇଲା ।୭୫।
ଇତିଶ୍ରୀ କୈବର୍ତ୍ତଗୀତାୟାଂବୈଷ୍ଣବିକ୍ୟାଂପାରମହଂସସଂହିତାୟାଂ ଦାସରାଜା ମଙ୍ଗଳକୃତ୍ୟେ
ଚରିତ ବର୍ଣ୍ଣନେ ହରିଅର୍ଜ୍ଜୁନ ସମ୍ବାଦେ ନାମ ସପ୍ତମୋଽଧ୍ୟାୟଃ ।

---

## ॥ ଅଷ୍ଟମ ଅଧ୍ୟାୟ ॥

ଅର୍ଜ୍ଜୁନ ବୋଇଲେ ହେ ଶୁଣିମା ଲକ୍ଷ୍ମୀକାନ୍ତ । ସିଂହଳଦ୍ୱୀପର ନାମ ହୋଇଲା କେମନ୍ତ ।୧।
ଶୁଣିଲେ ସିନା ମନରେ ପ୍ରତେ ଯିବ ମୁହିଂ । ଏଥିର ଯେ ଆଦ୍ୟ ଅନ୍ତ କହସି ବୁଝାଇ ॥
ଶ୍ରୀହରି ବୋଇଲେ ଏ ଅନେକ ଦିନକଥା । ସତ୍ୟଯୁଗ ରାଜନ ଯେ ତାହାର ବେବସ୍ଥା ॥
ସ୍ୱୟଂଭୁବ ମନୁର ଯେ ପୁତ୍ର ପ୍ରିୟବ୍ରତ । ଅତି ପ୍ରିୟପଣେ ସେ ମୋ ଚରଣ ଭଗତ ॥
ଚକ୍ରବର୍ତ୍ତୀ ରାଜା ତାର ନବଖଣ୍ଡ ପୃଥ୍ୱୀ । ବାହୁବଳେ ସାଧି କଲା ସକଳ ନୃପତି ॥
ମୋର ପଦ୍ମପାଦରେ ତା ନିରନ୍ତର ଭକ୍ତି । ଅହର୍ନିଶ ମୋହଠାରେ ଦେଇଥାଇ ମତି ॥
ଏମନ୍ତ ଯୋଗେଣ ବ୍ରହ୍ମକଳ୍ପ ଯେ ହୋଇଲା । ଯେ ରାଜାର କଥା ଆମ୍ଭ ମନରେ ପଡ଼ିଲା ॥
ସୁଶୀଳ ବିବେକୀ ସେ ବଡ଼ାଇ ତପୋବନ୍ତ । କେମନ୍ତେ ସେ ନାଶଯିବ ମୋହର ଭଗତ ॥
ରାଜାର ସ୍ନାନକାଳରେ ଆମ୍ଭେ ବିଜେକରି । ଜଳ କୁମ୍ଭେ କ୍ଷୁଦ୍ର ମୀନ ହୋଇଣ ବିହରି ॥
ସେ କୁମ୍ଭ ଜଳରେ ରାଜା କରନ୍ତେଏ ସ୍ନାନ । ରାଜାଅଗେପଡ଼ିଲୁଯେଦେଖିଲା ନୟେନ ।୧୦।
ବୋଇଲେ ଏମୀନଗୋଟିକାହିଂନେ ଅଇଲା । ଯତ୍ନକରି ରାଜା ବେଗେ ହସ୍ତରେ ଘେନିଲା ॥
ହସ୍ତେତୋଳିଧରିସେରାଜନ ମୋତେ ତୁହିଂ । ଜଳକୁମ୍ଭ ଭିତରେ ତା ପୂରାଇଲା ନେଇ ॥
ତହିଂରେଯେମୋରଂଠାବନୋହିଲାକ ପୁଣ । ଚଉକାଭିତରେ ମୋତେ ଛାଡ଼ିଲା ରାଜନ ॥
ଚଉକାଭିତରେ ଠାବ ନୋହିଲାକ ଯହିଂ । ପୋଖରୀଭିତରେ ମୋତେ ଛାଡ଼ିଲାକ ତହିଂ ॥
ତହିଂ ଥାନ ନୋହିଲା ନଦୀରେନେଇ ଥୋଇ । ନଦୀରେ ପୂରିଲା ଦେହ ତହିଂ ଠାବନୋହି ॥
ନଦୀରୁ ଉଧାରି ପୁଣ ସୋମନ୍ତ୍ରେ ଥୋଇଲା । ସପତସୋମନ୍ତ୍ରଯାକେ ମୋ ଦେହ ପୂରିଲା ॥
ଦେଖିଣ ଚକିତ ରାଜା ନ ସ୍ଫୁରଇ କିଛି । ବୋଲଇ କେଉଂ ଦେବତା ମାୟା କରିଅଛି ॥
କଷ୍ଟରେ ଜାଣିଲା ଏ ଅଟଇ ନାରାୟଣ । ଅନେକ ଯେ ସ୍ତୁତି କଲା ଆମ୍ଭର ଚରଣ ॥
ତାହାର ଭଗତ ଦେଖି ପ୍ରସନ୍ନ ହୋଇଲୁ । ତୁ ରାଜା ଯେ ପୁଣ୍ୟବନ୍ତ ମୋତେ ସେବାକଲୁ ॥
ତୋର ସ୍ନାନକୁମ୍ଭରେ ମୁଂ ମୀନରୂପେଥାଇ । ଚହ୍ନିନପାରିଲୁମୋତେ ମନେଭ୍ରମହୋଇ ।୨୦।
ଏବେ ତୋତୋ କଥାଏ ମୁଂ କହଇ ଉତ୍ତର । କାଲି ଦିବସର ବେଳ ଦେନି ଯେ ପ୍ରହର ॥

କଳ୍ପ ପ୍ରଳୟ ହୋଇବ ସେ ବେନି ପ୍ରହର । ତେଣୁ ତୋତେ କହିବାକୁ ଅଇଲୁଂ ସତ୍ୱର ॥
କାଲି ଯେ ସୁବର୍ଣ୍ଣ ନାବ ଲଗିବ ଏଠାଇଂ । କୁଟୁମ୍ବମାନଙ୍କୁ ନେଇ ବସିବୁ ଏହିଠାଇଂ ॥
ଦୁଇପ୍ରହର ବେଳେ ତୁ ନାବକୁ ଭେଟିବୁ । ଆମ୍ଭ ଅଜ୍ଞା ପ୍ରମାଣେ ତୁ ନାବରେ ବସିବୁ ॥
ସେ ଜଳ ଉଚ୍ଛଳି ଯେ ଆକାଶ ଛେପିଯିବ । ଚନ୍ଦ୍ର ସୂର୍ଯ୍ୟ ଆଦି ଦଶଦିଗପାଳ ସଙ୍ଗ ॥
ନାବ ଯେ ଭାସିବ ତୋର ଅନ୍ତରୀଳହୋଇ । ନଙ୍ଗର ପକାଇ ବାନ୍ଧ ଦଉଡ଼ି ଲଗାଇ ॥
ମହାପ୍ରଳୟଜଳ ଗମ୍ଭୀର ସିନ୍ଧୁ ବାରି । ପବନର ଘାତେ ପୁଣି ଉଠିବ ଲହରୀ ॥
ଥଳକୂଳ ନ ପାଇ ଆମ୍ଭଙ୍କୁ ମନେ ଧ୍ୟାନ । ତେତେବେଳେ ମୁହିଂ ତୋତେ ହୋଇବି ପ୍ରସନ୍ନ ।
ମୀନରୂପେ କାୟା ମୋର ଶତେକ ଯୋଜନ । ଗମ୍ଭୀର ଜଳରେ ଭେଦିଥିବ ହୋ ରାଜନ ॥
ମୋହର ଶିରରୁ ବେନି ଶୃଙ୍ଗ ଯେ ହୋଇବ । ମୋଟ ବେନି ସହସ୍ରାର୍ଦ୍ଧ ଦଶସ୍ର ହେବ ।୩୦।
ଜଳ ଭେଦି ଦୁଇ ଲେମ ଉପରେ ଭାସିବ । ସେଇଲେ ମେ ବାନ୍ଧିବୁ ନାବ ନଙ୍କଲେ ରହିବ ॥
କ୍ଷୁଧା ତୃଷା ଜଳ ବାୟୁ ଅଗ୍ନି ଭୟ ନାହିଂ । ଗୃରସସ୍ର ଯୁଗ ଯାଏ ବସିଥିବୁ ତହିଁ ॥
ପ୍ରଳୟ ଅନ୍ତରେ ଜଳ କ୍ଷୀଣ ଯେବେ ହେବ । ଏ ବେନି ଶୃଙ୍ଗ ଯେ ମୋର ଏହିଠାରେ ଥିବ ॥
ଏହିମତେ କଳପ ପ୍ରଳୟ ହୋଇଥିଲା । ଚଳଯୁଗେ ସ୍ୱରେ ଶୃଙ୍ଗ ସେଠାରେ ରହିଲା ॥
ତେଣୁକରି ସିଂହଳ ଯେ ଦ୍ୱୀପ ନାମ କହି । ଆଗରୁ ମୁଂ ବଗୃରଧ ଭଆଇ ଅଛଇ ॥
ଯେମନ୍ତ ପ୍ରକାରେ ଯେ ସିଂହଳଦ୍ୱୀପ ହୋଇ । କହିଲୁ ଅର୍ଜୁନ ତୋତେ ଏକଥା ବୁଝାଇ ॥
ସିଂହଳଦ୍ୱୀପର ଯେ ଅଟଇ ଆୟତନ । ଲକ୍ଷେ ଯୋଜନ ପୃଥିବୀ ଅଟେ ସେହି ସ୍ଥାନ ॥
ସେ ଦେଶରେ ନୃପତି ସେ ଦାସରାଜା ହୋଇ । ଧନ ଅଂଶେ ଛନ୍ଦି କେହି କଣ୍ଟି ନ ପାରଇ ॥
ଚଉପାଶେ ସମୋଦ୍ର ସେ ତହିଂର ମଧ୍ୟରେ । ରମ୍ୟକଦ୍ୱୀପ ଅଛଇ ତାହାର ଭିତରେ ॥
କର୍ଣ୍ଣାଟ ଦେଶ ଯେ ପୁଣି ତାର ପଶ୍ଚିମକୁ । ହେଙ୍ଗୁଳାଟ ଦେଶ ଅଛି ତାର ଦକ୍ଷିଣକୁ ।୪୦।
ପୂର୍ବ ଦଗେ ଜମ୍ବୁଦ୍ୱୀପ ହେତୁକରି ଜାଣ । ଶ୍ରୀପୁରୁଷୋତ୍ତମ ନାମ ହୋଇଣ ବଖାଣ ॥
ସିଂହଳଦ୍ୱୀପର କଥା ବୁଝିଲୁ କି ନାହିଂ । ମୀନରୂପେ ଲେମ ମୋର ଶୃଙ୍ଗ ସେ ଅଟଇ ॥
ସେ ମୀନର ବେନି ଶୃଙ୍ଗ ସେଠାରେ ରହିଲା । ତେଣୁ ତ ସିଂହଳଦ୍ୱୀପ ତା ନାମ ହେଲା ॥
ସିଂହଳ ଦ୍ୱୀପର ନାମ ଏମାର ବଖାଣ । ପଶିଲା ଅଚ୍ୟୁତ ଦାସ କୃଷ୍ଣରେ ଶରଣ ।୪୪।

ଇତି ଶ୍ରୀ କୈବର୍ତ୍ତ ଗୀତାୟାଂ ବୈଯ୍ୟାହିକ୍ୟାଂ ପାରମହଂସ ସହିତାୟାଂ
ସିଂହଳଦ୍ୱୀପ ବର୍ଣ୍ଣନେ ହରି ଅର୍ଜୁନ ସମ୍ବାଦେ ନାମ ଅଷ୍ଟମୋଽଧ୍ୟାୟଃ ।

---

## ॥ ନବମ ଅଧ୍ୟାୟ ॥

ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଶୁଣ ହୋ ଅର୍ଜୁନ । ସିଂହଳଦ୍ୱୀପର କଥା କହିବଇଂ ପୁଣ ।୧।
ଅପୂର୍ବ କଥାଏ ତୋତେ କହିବା ଅର୍ଜୁନ । ସେ ଦେଶରେ ଯେତେ ସ୍ତ୍ରୀ ଙ୍କ ଅନ୍ତ ଉତ୍ପନ୍ନ ॥
ସମସ୍ତେ ପଦ୍ମିନୀ ଅଂଶ ଘେନି ଜନମନ୍ତି । ଅତ୍ୟନ୍ତ ସୁନ୍ଦରୀ ଶୋଭା ରୂପ ବର୍ଣ୍ଣକାନ୍ତି ॥
ପୂର୍ଣ୍ଣଚନ୍ଦ୍ର ପ୍ରାୟେ ମୁଖ ଉତ୍ପଳ ନୟନୀ । ଗୃହିଂଲେ ହରନ୍ତି ଯୋଗୀ ନଯୁର ସିଦ୍ଧମୁନି ॥
ଅର୍ଜୁନ ବୋଇଲେ ପ୍ରଭୁ ଶୁଣିମା ଶ୍ରୀହରି । ସିଂହଳଦ୍ୱୀପର କଥା ଏଥେ ବୁଝିପାରି ॥
କୈବର୍ତ୍ତ ଦାସରାଜାଙ୍କ ଝିଅ ଯେ ହୋଇଲେ । ତାହାର ପୁତ୍ର ଦୁହିତା ହେଲେ କି ନୋହିଲ ॥
ଅର୍ଜୁନଙ୍କୁ ଚାହିଂଣ ବଦନ୍ତି ନାରାୟଣ । ଦାସରାଜା ଚରିତ ହୋ ସାବଧାନେ ଶୁଣ ॥

ଗିରିମାଙ୍କୁ ଦାସରାଜା ବରି ଯେ ହୋଇଲ । କନ୍ଦୁଦିନେ ବନ୍ଧାପନା ବର୍ଦ୍ଧମାନ ହେଲ ॥
ଏହିମତ ଗଲା ପୁଣି କେତେ ସମ୍ବତ୍ସର । ପୁତ୍ର କି ଦୁହିତା ଜାତ ନୋହିଲ ରାଜାର ॥
ଯେଣୁକରି ବିଭା ହେଲା ଅନେଶତ ଦେଈ । ସମସ୍ତଙ୍କ ମଧ୍ୟେ ପାଟ ଗିରିମା ବୋଲାଇ ।୧୦।
ଏକଦିନେ ଦାସରାଜା ଥାଇ ଅନ୍ତଃପୁର । ଗିରିମା ସଙ୍ଗତେ ରାଜା କଲେକ ବିଚାର ॥
ରାଜ୍ୟରେ ରାଜୁତପଣ ଅଟଇ ମୋହର । ଜଗତି ଅଟ୍ଟାଳି ମେଢ଼ ମଣ୍ଡପ ଯେ ପୁର ॥
ରାଣୀମାହାଦେଇଦାସୀଅଛନ୍ତି ମୋ ଯେତେ । ହାତୀ ରଥୀ ପାଦାନ୍ତ ଅଶ୍ୱ ଅପ୍ରମିତେ ॥
ସମସ୍ତ ନିଷ୍ଫଳ ସିନା ଅଟଇ କର୍ମର । ପୁତ୍ର କି ଦୁହିତା ଜାତ ନୋହିଲ ଆମ୍ଭର ॥
ଯେଣୁକରି ଶୁଣ ରାଣୀ ମୋହର ବଚନ । ଦ୍ୱିଜବର ଡକାଇ କରିବା ଯଜ୍ଞଦାନ ॥
ରାଜାକଥା ଶୁଣି ରାଣୀ ହୋଇଲ ସନ୍ତୋଷ । ଆରଦିନ ବ୍ରାହ୍ମଣଙ୍କୁ ଡକାଇଣ ପାଶ ॥
ପାତ୍ରମନ୍ତ୍ରୀ ଗୁରୁ ବଇଷ୍ଣବ ତପୀ ଜ୍ଞାନୀ । ସମସ୍ତଙ୍କୁ ବସାଇ ପୁଚ୍ଛନ୍ତି ନୃପମଣି ॥
ରାଜନ୍ତ ବୋଇଲେ ତୁମ୍ଭେ ଶୁଣହୋ ବ୍ରାହ୍ମଣ । କେଉଁ ପାପ ଅର୍ଜିଲି ମୁଁ ପୂର୍ବଜନ୍ମେ ପୁଣ ॥
ଏ ସର୍ବ ସମ୍ପଦ ମୋର ବ୍ୟର୍ଥ ଅଟଇ । ଯେଣୁକରି ପୁତ୍ର ବା ଦୁହିତା କୋଳେ ନାହିଁ ॥
ତୁମ୍ଭେ ପୁରୋହିତ ଗୁରୁ କହ ଏଥି ବାଟ । କେମନ୍ତେ ମୋହର ହରିବ ପୁତ୍ରକଷ୍ଟ ।୨୦।
ଏ ମାୟା ସଂସାରେ ସିନା ପୁତ୍ରଟି କାରଣ । ପିଣ୍ଡଦାନେ ପିତୃ ତୋଷେ କୁଳର ନନ୍ଦନ ॥
କୁଳର ନନ୍ଦନ ଯାହା ଘରେ ଜାତ ନୋହି । ସେ ଲୋକମାନଙ୍କ ମୁଖ ପ୍ରଭାତେ ନ ଚାହିଁ ॥
ଯେଉଁ ନାରୀ ଗର୍ଭେ ପୁତ୍ର ନୁହଇଟି ଜାତ । ବନ୍ଧ୍ୟା ବୋଲିକରି ତାକୁ ବୋଲନ୍ତି ଜଗତ ॥
ରଜସ୍ୱଳା ସ୍ନାନସାରି ଆସିବାର ବେଳେ । ସେ ନାରୀକି ଅନ୍ୟ ନାରୀ ନଛୁଇଁବ ଛାଲେ ॥
ଯେବେ ତାକୁ ଛୁଇଁ ପୁଣି ସ୍ନାହାନ ଯୋଗାଇ । ତାହାର ଦୋଷ ଅବଶ୍ୟ ଏହାରେ ଲାଗଇ ॥
ଆଗମ ପୁରାଣେ ମୁହିଁ ଶୁଣିଛୁ ଗୋସାଇଁ । ବେନକୋଟି ପାପକଲେ ଅପୁତ୍ରିକ ହୋଇ ॥
ତିନକୋଟି ପାପ କଲେ ଦୁହିତା ନୁହଇ । ଚାରିକୋଟି ପାପ କଲେ ମଡ଼ାଛୁ ହୁଅଇ ॥
ପାଞ୍ଚକୋଟି ପାପ କଲେ ସ୍ତ୍ରୀ ବନ୍ଧ୍ୟା ହୋଇ । ଛଅକୋଟି ପାପ କଲେ ପୁଷ୍ପ ନ ଫୁଟଇ ॥
ହନ୍ତିଡୀ ବୋଲିଣ ତାକୁ ସଂସାରରେ ବୋଲନ୍ତି । ଏକଥା ସ୍ମରଣେ ମୋତେ ଲାଗିଲାକ ଭ୍ରାନ୍ତି ॥
ପ୍ରଭାତରେ ଅପୁତ୍ରିକ ବନ୍ଧ୍ୟାର ବଦନ । ନ ଚାହିଁବ ପୁଣ ତାରେ ନ ଭାଷି ବଚନ ॥
ଯେବେ ତାକୁ ଭାଷା କହିଦେବଟି ଜଣର । ଷଡ଼ସ୍ନାନ କଲେ ପ୍ରାଣୀ ତେବେ ହୋଇ ପାର ॥
ବନ୍ଧ୍ୟା ଅପୁତ୍ରିକ ଲୋକ ଚଣ୍ଡାଳରେ ସରି । ଶୁଭ ଅଶୁଭ କାର୍ଯ୍ୟରେ ତାହାଙ୍କୁ ନ ବରି ।୩୨।
ଅକସ୍ମାତେ ବରଣ ଯେ କରଇ ତାହାଙ୍କୁ । ପିତୃଲୋକେ ନ ଆସନ୍ତି ତାର ମନ୍ଦିରକୁ ॥
ଏହିକଥା ବିଚାରିଣ ମୋତେ ଅଗ୍ୟାଂଦିଅ । ଏ ଧନ ସମ୍ପଦ ମୋର ସବୁ ତୁମ୍ଭେ ନିଅ ॥
ରାଜାର ବଚନ ଶୁଣି ବୋଲନ୍ତି ପଣ୍ଡିତ । ପୁତ୍ର ଯେବେ ପାଇବୁ ତୁ କର ଯଜ୍ଞବ୍ରତ ॥
ଚାରିଦିଗରୁ ଯେ ଖୋଜି ଆଣିବୁ ବ୍ରାହ୍ମଣ । ଚତୁର୍ବେଦୀ ବ୍ରାହ୍ମଣଙ୍କୁ କରିବୁ ବରଣ ॥
ଏମାନଙ୍କୁ ମନତୋଷ କରିଦେବୁ ଦାନ । ତିଳକାଞ୍ଚନ ସହିତ ଗୋ-ମହିଷ ପୁଣ ॥
ବ୍ରାହ୍ମଣ ବଇଷ୍ଣବେ ମିଷ୍ଟାନ୍ନ ଭୁଞ୍ଜାଇବୁ । ଯେଯାହା ମାଗିବ ତାହା ମନତୋଷେ ଦେବୁ ॥
ମହାଦେବ ଶିରେ ଜଳ ଲକ୍ଷେ କୁମ୍ଭ ଢାଳି । ଲକ୍ଷେ ଚମ୍ପା ଦେବୁ ଲକ୍ଷେ ବେଲପତ୍ର ତୋଳି ॥
ଯଜ୍ଞଅନ୍ତେ ଅନ୍ନ ଯୋଗାଇବୁ ସର୍ବେ ରହି । ରାଜ୍ୟ ଦେଶ ଘୋଷ ବନ୍ଧୁ କୁଟୁମ୍ବ ବସାଇ ॥
ସନ୍ତୋଷେଣ ରାଜା ସେହୁ କରିବେ ଭୋଜନ । ମନୋବାଞ୍ଛା ପୂର୍ଣ୍ଣ ହେବ ପୁତ୍ର ହୋଇ ଜନ୍ମ ॥
ଯେମନ୍ତ ପ୍ରକାରେଣ କହିଲେ ଦ୍ୱିଜବର । ସେହି ପରକାରେ ବିଧି କଲା ନୃପବର ।୪୨।

ସେଥୁଅନ୍ତେ ହକରଇ ପାଟ ମାହାଦେଈ । ଯଜ୍ଞ ଚରୁଅନ୍ନ ମୁନି ରାଣୀହସ୍ତେ ଦେଇ ॥
ତତକ୍ଷଣେ ମାହାଦେଈ କଲେ ତା ଭକ୍ଷଣ । କଲ୍ୟାଣ ବାଞ୍ଛିଲେ ମୁନି ପୁତ୍ର ହୋଉ ଜନ୍ମ ॥
ଚରୁଅନ୍ନ ଭୁଞ୍ଜିଣ ଯେ ପାଟ ମହାଦେଈ । ମୁନିଙ୍କ ଚରଣେ ପୁଣି ପ୍ରଣାମ କରଇ ॥
ପ୍ରୋଦରେଣୁ ଯେନ ଶିତେ ଭିତରେ ଚଳିଲା । ତନୁ ଆଳସରେ ହାଇ ଘନ ଘନ ହେଲା ॥
ଅରୁଚ କରଣ ଅନ୍ନ ପାଣି ନ ରୁଚଇ । କମଳା ଧାଈ ତା ପାଶେ ସଦା ଖଟିଥାଇ ॥
ସେହିମନ୍ତ ରାଣୀ ଗର୍ଭ ହେଲା ଅଷ୍ଟମାସ । ଦିନୁଂଦିନ ଦେହ ଗରୁହୋଥଇ ଆଳସ ॥
ସେହିରୂପେ ଦଶମାସ ସମ୍ପୂର୍ଣ୍ଣ ହୋଇଲା । ଉଆସ ଭିତରେ ରାଣୀ ପେଟ ବଥାଇଲା ॥
ଅସ୍ତବ୍ୟସ୍ତ ହୋଇ ରାଣୀ ପଲଙ୍କେ ଶୋଇଲା । ଦେଖୁ ଦେଖୁ କୁମର ଯେ ଜନମ ହୋଇଲା ॥
ସୁବାସ ଜଳରେ ତାର ଅଙ୍ଗ ପଖାଳିଲେ । ଚନ୍ଦନକାଷ୍ଠରେ ଯେ ଏନୁଡ଼ି ଲଗାଇଲେ ॥
ନାଭି ଛେଦନକରି ଏନୁଡ଼ି ଲଗାବନ୍ତି । ଧାଈ ମୁଦୁସୁଲୀମାନେ ପାଶେ ଖଟିଥାନ୍ତି ୫୬।
ଖଟ ଦୋଳି ପାଟଭୁଲି ଆଣି ଯୋଗାଇଲେ । ଧାଈ ମୁଦୁସୁଲୀ ସଙ୍ଗେ ଗଟଣି ରହିଲେ ॥
ବାଜଇ ଢୋଲ ଟମକ ମଙ୍ଗଳ ମହୁରି । ଆବର ଭେରୀ ମୃଦଙ୍ଗ ବାଦ୍ୟନାଦ କରି ॥
ଏଥୁଅନ୍ତେ ରାଜନ ଯେ ପ୍ରୋହିତେ ହକାରି । ପାଟ ଜନ୍ମଚିପ ରାଇ ଏସନ ପତ୍ତ୍ୱର ॥
ଜନମ ହୋଇଲା ପୁତ୍ର କେମନ୍ତେ ଯେ ଯୋଗ । ଶୁଭାଶୁଭ ଫଳ ସବୁ କହ ଦଇବଗ୍ୟଂ ॥
କୋଷ୍ଟି କାଟି ଗ୍ରହପୁନ ଲଗ୍ନ ବିଚାରଇ । ଧନିଷ୍ଠା ନକ୍ଷତ୍ର ଏ ମକର ରାଶି ହୋଇ ॥
ସର୍ବ ଶୁଭକ୍ଷଣେ ଯେଣୁ ସୁଲକ୍ଷଣବନ୍ତ । ଅମୃତ ଯୋଗରେ ପୁତ୍ର ହୋଇଅଛୁ ଜାତ ॥
ଦାନ୍ତିକ ସୁଶୀଳ ଶୂର ନୃପକୁଳଚନ୍ଦ୍ର । ହାରିବର୍ଣ୍ଣ ବୋଲି ନାମ ହେଲା ଯେ ନରେନ୍ଦ୍ର ॥
ଅମୃତଯୋଗରେ ଜାତ ହୋଇଛି ନନ୍ଦନ । ରମ୍ୟକ ଦ୍ୱୀପରେ ଏହୁ ହୋଇବ ରାଜନ ॥
ଘଟିଛି ଏମନ୍ତ ଯୋଗ ପାଠ ଯେ କହିଲା । ଦୈବଗଂ ବୁଝାଇ ରାଜା ସମ୍ମୁଖରେ କହିଲା ॥
ଶାଢ଼ୀ ସୁନାବଳା ଦରବଗ୍ୟଂଙ୍କୁ ଯେ ଦେଇ । ଅଥ ଭଲୁପିଣ ଲେଖିଦେଲେ ରାଜ୍ୟଭୂଇଂ ॥
ହାଟ ପେଣ୍ଠ ଗ୍ରାମ ଜୁର କରାଇ ରାଜନ । ଆନନ୍ଦରେ ପୂର୍ଣ୍ଣ ରାଣୀହଂସ ଯେ ଭୁବନ ॥
ଏହିମତ କେତେ ସମ୍ବତ୍ସର ଗତ ହେଲା । ଦ୍ୱିତୀୟ ରାଣୀ ପୁଣି ଗର୍ଭବାସ ହେଲା ।୬୫।
ଦଶମାସ ଯହୁଂ ତାର ସମ୍ପୂର୍ଣ୍ଣ ହୋଇଲା । ଅଥ ଶୁଭଯୋଗେ ରାଣୀ ପ୍ରସବ ଯେ କଲା ॥
ଦ୍ୱିତୀୟ ରାଣୀ ଶଭ୍ର ପୁତ୍ର ଜନମିଲା । ଜ୍ୟୋତିଷ ଡକାଇ ରାଜା ରାଶି ଗଣାଇଲା ॥
ରୋହିଣୀବୃଷ ରାଶି ଯେ ହୋଇଲା ତାହାର । ନୀଳାର୍ଣ୍ଣବ ବୋଲି ନାମ ଅଟଇ ଏହାର ॥
ହେଙ୍ଗୁଳାଟ ଦ୍ୱୀପେ ଏ ହୋଇବ ନୃପବର । ଏହିମତେ ଦଇବଜ୍ଞ କହିଲ ସମ୍ମୁଖର ॥
ପୁଣି ମନଦେଇ ଏବେ ଦାସରାଜା ଶୁଣ । ଆଗତଭବିଷ୍ୟ କଥା ଲେଖିଲୁକ ପୁଣ ॥
ତୃତୀୟ ଯେ ବାର୍ଯ୍ୟ ମସ୍ତ ଗର୍ଭରେ ରହିବ । ମସ୍ତ୍ୟବତୀ ମସ୍ତ୍ୟ ସେ ବେନି ଜନ୍ମ ହେବ ॥
ତୃତୀ ଅନ୍ତେ ସିଂହଳଦ୍ୱୀପରେ ସେହୁ ରାଜା । ଶୁଭେଣ ପାଳିବ ସେହୁ ଜନ ଯେ ପରଜା ॥
ସେସନେକ ଦଇବଜ୍ଞ ରାଜାଙ୍କୁ ବୋଇଲେ । ରାଜା ରାଣୀ ସଙ୍ଗେ ଶୁଣି ହରଷ ହୋଇଲେ ॥
ଲକ୍ଷେ ଧନ ଭଣ୍ଡାରୁ ଯେ ଦୈବଜ୍ଞଙ୍କୁ ଦେଇ । ମନ ସନ୍ତୋଷରେ ରାଜା ମେଲାଣି କରଇ ॥
ଏଥ ଅନନ୍ତରେ କେତେ ଦିନ ଭୋଗ କଲା । ପିତୃଶ୍ରାଦ୍ଧ ଦିନ ଆସି ଯୋଗେଣ ଘଟିଲା ॥
ପ୍ରୋହିତ ବ୍ରାହ୍ମଣ ରାଇ ନୃପତି ପୁଚ୍ଛଇ । କେମନ୍ତ ପ୍ରକାରେ ପିତୃଶ୍ରାଦ୍ଧ ମୋର ହୋଇ ॥
ତୁମ୍ଭେ ଯେ ପଣ୍ଡିତ ଗୁରୁ କହ ଏଥ ଭେଦ । କେମନ୍ତେଣ ମୁହିଂ ଯେ ଦେବଇଂ ପିତୃଶ୍ରାଦ୍ଧ ॥
ରାଜନ ମୁଖରୁ ଶୁଣିହିଂ କହନ୍ତି ପଣ୍ଡିତେ । ଏ ରାଜଧାନୀରେ ଶ୍ରାଦ୍ଧ କରନ୍ତେ ଯୁକତେ ॥

ରାଜଅଂଶେ ଛତ୍ରୀକୁଳେ ତୁମ୍ଭ ଆଚରଣ । ମୃଗ ମାରି ଆଣୋଇ ଶିକାର ବହନ ॥
ବରାହ ହରିଣ ରାଜା ସ୍ୱେମାନ ମାରନ୍ତି । ରାଜକର୍ମ ଏଥେ ପିନା ପିତୃ ତୋଷ ପୁଣ ॥
ଛତ୍ରୀଅଂଶେ ରାଜା ତୋତେ ବିଧାତା ସର୍ଜିଛି । ଶିକାରର ଦୋଷତୋରେ ନ ଲାଗିବ କିଛି ॥
ପଣ୍ଡିତଙ୍କ ବାକ୍ୟ ଶୁଣି ରାଜନ ବୋଲଇ । ମୃଗ ନ ମାରିଲେ ପିତୃଶ୍ରାଦ୍ଧ କେମନ୍ତେହୋଇ ॥
ଏହା କହି ରାଜନ ସାହାଣି ହକାରିଲେ । ଅଶ୍ୱ ସଜକରି ବେଗେଆଣ ଆଜ୍ଞାଦିଲେ ।୮୬।
ଖରତରେ ସାହାଣି ପଦାତ ବଲ ଦେଲା । ଧନୁ କମାଣ ଘେନଣ ରାଜା ବଜେକଲା ॥
ଅଶ୍ୱ ଚଢ଼ି ମହାନଦୀ ପାର ହୋଇଗଲେ । ଘୋରବସୁନ୍ୟରେ ଯାଇଂ ପ୍ରବେଶ ହୋଇଲେ ॥
ଶ୍ରୀକୃଷ୍ଣ ଅର୍ଜ୍ଜୁନ କଥାମୃତେ ଯାର ମନ । କୋଟି କୋଟି ପାପତାର ହୁଅଇ ଦହନ ॥
ଜଳନ୍ତା ଅନଳେ ଯେମନ୍ତେ ତୃଣ ପୋଡ଼ିଯାଇ । ସେହିମତ ଅଙ୍ଗୁ ତାର ପାପଧ୍ୱଂସ ହୋଇ ॥
ଜଗନ୍ନାଥ ଚରଣେ ଶରଣ ମୋହର । ଭଣଇ ଅଚ୍ୟୁତ ଦାସ ଦୋଷ କ୍ଷମାକର ।୮୭।

ଇତିଶ୍ରୀ କୈବର୍ତ୍ତଗୀତାୟାଂ ବୈଷ୍ଣବସିଦ୍ଧାନ୍ତେ ପାରମହଂସ ସଂହିତାୟାଂ ଦାସରାଜା ମୃଗୟା ଗମନ ଚରିତେ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ନାମ ନବମୋଽଧ୍ୟାୟଃ ।

---

## ॥ ଦଶମ ଅଧ୍ୟାୟ ॥

ଅର୍ଜ୍ଜୁନ ବୋଇଲେ ତୁମ୍ଭେ ଶୁଣ ନନ୍ଦବଳା । ଦାସରାଜା ଅଶ୍ୱ ଘେନି ମୃଗୟାକୁ ଗଲା ।୧।
କେମନ୍ତ ପ୍ରକାରେ ତହୁଂ ଶିକାର କରଇ । ଏହି କଥା ମହାପ୍ରଭୁ କହିବା ବୁଝାଇ ॥
ଶ୍ରୀହରି ବୋଇଲେ ଶୁଣ ପଣ୍ଡୁର ନନ୍ଦନ । ଦାସରାଜା ମୃଗୟାକୁ ଗଲା ତୋପମନ ॥
ମୃଗୟା ଭୂମିରେ ରାଜା ପ୍ରବେଶ ହୁଅନ୍ତେ । ମୃଗ ମୃଗୁଣୀକି ତହୁଂ ଦେଖିଲା ଏକାନ୍ତେ ॥
ମୃଗମୃଗୁଣୀଯେ ଦୁହେଂ ଉନମତ୍ତ ହୋଇ । ଦୁହେଂ କାମ ଉନ୍ମାଦରେ କ୍ରୀଡ଼ଇ ସେଠାଇ ॥
ଏମନ୍ତ ଭାବ ତାଙ୍କର ଦେଖିଣ ରାଜନ । ତତକ୍ଷଣେ ରାଜା ଅଙ୍ଗେ ପୀଡ଼ିଲା ମଦନ ॥
ରାଜାର ଅଙ୍ଗରୁ ବୀର୍ଯ୍ୟ ଖସିଣ ପଡ଼ନ୍ତେ । ଶିଆଳି ପତ୍ର ଠୋଲାରେ ଧରିଲା ତୁରିତେ ॥
ଧରିଣ ତାହାକୁ ମନେ କରଇ ବିଚାର । ଭୂମିରେ ପଡ଼ିଲେ ପିନା ପାପ ହେବ ମୋର ॥
ମାତୃହରଣର ଦୋଷ ଲାଗିବ ଯେ ମୋତେ । ଏମନ୍ତ ବିଚାରି ସେ ରହିଲା ଅର୍ମିତେ ॥
ପୁତ୍ରିହିଂ ତାହାର ଗର୍ଭେ ହୋଇଲାକ ଗ୍ୟାଂନ । ରାଣୀଠାକୁ ଦେବଲ ମୁହିଂ ଲଭିବ କାରଣ ୧୦
ଏ ବୀର୍ଯ୍ୟକୁ ରାଣୀ ଯେବେ ଗର୍ଭକୁ କ୍ଷେପିବ । ତତକ୍ଷଣେ ରାଣୀ ନିଶ୍ଚେ ଗର୍ଭବାସ ହେବ ॥
ସେମନ୍ତ ବୋଲିଣ ଏକ ଚିଲକୁ ଡାକିଲା । ଚିଲ ଆସି ରାଜା ଆଗେ ପ୍ରବେଶ ହୋଇଲା ॥
ବଦରର ପତ୍ର ପୁଣି ଆଣିଲା ରାଜନ । କର୍ମ୍ମିଳ କଣ୍ଟାରେ ସେସେ ଲେଖିଲା ବଚନ ॥
ସତ୍ୟଯୁଗ କଥା ଏହୁ ଶୁଣ ହୋ ଅର୍ଜ୍ଜୁନ । ଲେଖାସଙ୍ଗେ ବୀର୍ଯ୍ୟଦେଲେ ଚିଲହସ୍ତେ ପୁଣ ॥
ଭାଷାରେ ଲେଖିଲେ ରାଣୀ ଶୁଣମୋ ବଚନ । ଚିଲ ହସ୍ତେ ଯଙ୍ଗଂଦ୍ରବ୍ୟ ଦେଇଅଛି ଘେନ ॥
ମନତତ୍ତ୍ୱ କରି ତୁମ୍ଭେ ଏହାକୁ ଭକ୍ଷିବ । ସେଥିରେ ଅନ୍ୟଥାକରି ମନେ ନ ଭାବିବ ॥
ଭୂମିରେ ପଡ଼ିଲେ ବୀର୍ଯ୍ୟ ଦୋଷତହୁଂ ହୋଇ । ତେଣୁକରି ତୁମ୍ଭଠାକୁ ଦେଲି ପଠାଇ ॥
ମନବାଞ୍ଛା କରି ଏ ଅକ୍ଷୟେ ବୀଜ ସାର । ଭକ୍ଷିନା ମାତ୍ରକେ ଗର୍ଭ ହୋଇବ ତୁମ୍ଭର ॥
ଏମନ୍ତ ଲେଖିଣ ପତ୍ର ଚିଲହସ୍ତେ ଦେଲେ । ପାଟମହାଦେଈ ହସ୍ତେ ଦେବୁ ତୁ ବୋଇଲେ ॥

ଲେଖା ଘେନି ଚିଲପକ୍ଷୀ ତହୁଂ ଚଳିଗଲା । ମହାନଦୀ ମଧ୍ୟରେ ସେ ଉଡ଼ି ଯାଉଥିଲା ।୨୦।
ସେମନ୍ତ ସମସ୍ତେ ଦେଖ ବୁଧାତାଙ୍କିଆଣ । ଆଉ ଏକ ଚିଲ ଆସି ଧଇଲାକ ପୁଣ ॥
ମାଛ କି ମାଂସସ କସ ନେଉଅଛୁ ତୁହି । ତୋହର ହସ୍ତରେ ମୁହିଂ ଥରକେ ଦେଖଇଂ॥
ନଖଘାତେ ଠୋଲଗୋଟି ଚିରି ହୋଇଗଲା। ବେନିଖଣ୍ଡ ହୋଇ ବୀଜ ଜଳରେ ପଡ଼ିଲା ॥
କନକା ରୋହିମାଛ ସେ ଜଳେ ଚରୁଥିଲା । ଆଧାର ପରାୟେ ମଣି ସେ ବୀଜ ଗିଳିଲା ॥
ଧାତକାରେ ସେ ମୀନ ହୋଇଲା ଗର୍ଭବାସ । ମଛଗଣେ ସଙ୍ଗେ ଚରେ ରଜନୀ ଦିବସ ॥
ଗର୍ଭଗତ ହେଲା ମୀନ ନପାରଇ ଚଳି । ଗମ୍ଭୀର ଜଳରେ ସେ ରହିଲା ଭୂମି ଧରି ॥
ସତ୍ୟ ପାଳି ଚିଲ ଯାଇ ରାଣୀକି କହିଲା । ବଦଣ୍ଡ ପତ୍ରର ଲେଖା ରାଣୀ ହସ୍ତେ ଦେଲା ॥
ଲେଖା ପତ୍ର ରାଣୀମାନେ ଶୋକଭର ହୋଇ । ଯେଉଂ ଦ୍ରବ୍ୟ ଦେଲେ ରାଜା କସ କଲୁ ତୁହି ॥
ରାଣୀଆଗେ ସବୁ ସମାଚାର ଜଣାଇଲା । କହିଣ ସେ ଚିଲପକ୍ଷୀ ବେଗେ ଉଡ଼ିଗଲା ॥
ତେଣେ ହୋ ଅର୍ଜ୍ଜୁନ ରାଜା ମୃଗୟାରେ ଥିଲା । ମୃଗ ସମ୍ବର ବରାହ ଶିକାର ସେ କଲା ।୩୦।
ତାହା ଘେନି ନଗରେ ହୋଇଲେ ପରବେଶ । ବିଧିମତେ ପିତୃଶ୍ରାଦ୍ଧ ସାଙ୍ଗ ହେଲେ ତୋଷ ॥
ବ୍ରାହ୍ମଣ ପୁରୋହିତଙ୍କୁ ମେଲାଣି କରାଇ । ରାଣୀ ଅନ୍ତଃପୁରକୁ ସେ ବିଜେ ନରସାଇଂ ॥
ହରଷ ହୋଇଣ ସେ ରାଣୀକି ପଚାରଇ । ଚିଲହସ୍ତେ ଯେଉଂ ଦ୍ରବ୍ୟ ଦେଲି ପଠାଇ ॥
ସେ ଦ୍ରବ୍ୟକୁ କସ କଲୁ କହି ଗୋ ସତ୍ୱରେ । ପାଟମହାଦେଈ କହେ ରାଜା ସାକ୍ଷାନ୍ତରେ ॥
ତୁମ୍ଭେ ଦେଇଥିବା ପତ୍ର ଦେଖ ନୃପମଣି । ଚିଲ ଦେଇଗଲା ପୁଣି କହିଣ ଏ ବାଣୀ ॥
ରାଜା ଦେବା ପଦାର୍ଥ ମୁଂ ଘେନି ଉଡ଼ିବଡ଼ି । ମହାନଦୀ ମଧରେ ଯେ ଆସୁଥିଲି ଉଡ଼ି ॥
ହାତେ ମୋର ପତ୍ରଠୋଲ ଦୃଶ୍ୟୁଂ ଦେଖିକରି । ଆରୁ ଏକ ଚିଲ ଆସି ନେଲା ଝାମ୍ପମାରି ॥
ପତ୍ର ଟଣ ସେ ପଦାର୍ଥ ବେନିଖଣ୍ଡ ହୋଇ । ମହାନଦୀ ଜଳରେ ଯେ ପଡ଼ିଲାକ ଯାଇ ॥
ରୋହିମାଛ ଗୋଟାଏ ସେ ଜଳେ ଚରୁଥିଲା । ଆହାର ବିଚାରି ତାକୁ ତକ୍ଷଣେ ଗିଳିଲା ॥
ଏହା କହି ପତ୍ର ଦେଇ ଚିଲ ଉଡ଼ିଗଲା । ତୁମ୍ଭେ ଦେଇଥିବା ଦ୍ରବ୍ୟ କାହିଂ ମୋ ଦେଖିଲା॥
ରାଣୀଠାରୁ ଶୁଣି ରାଜା ବିଷାଦେ ରହିଲା । ଏହିମତ ପୁଣି କେତେ ଦିନ ବହିଗଲା ।୪୦।
ଦଶମାସ ଦଶଦିନ ମଛ ଗର୍ଭ ହେଲା । ଶବର ଥୋପରେ ଦିନେ କନକା ପଡ଼ିଲା ॥
ରାଜାଯୋଗ୍ୟ ମଛ ଯହିଂ ଶବର ଦେଖିଲା । ରାଜା ପାଶେ ନେଇ ଭେଟି ଦେବଇଂ ବୋଇଲା
ଏମନ୍ତ ବିଚାରି ରାଜା ପାଶେ ଗଲା ନେଇ । ଦେଖିଣ ନୃପତି ବଡ଼ ସନ୍ତୋଷ ହୁଅଇ ॥
ଆଜ୍ଞାଦେଲେ ସୂପକାର ଏହା ନିଅ ଘର । ବେଗକରି ଏ ମାଛକୁ ମଣୋହି କି କର ॥
ସେ ମୀନ କାଟନ୍ତେ ନେଇ ରୋଷାଇଶାଳରେ । ମାଛପେଟୁଂ ବାଳକେ ଡ଼ାକିଲା ଉଚସ୍ୱରେ॥
ବିଚାରି କରିଣ ବେକ ସଳଖରୁ କାଟ । ଆମ୍ଭେ ବେନି ବାଳକ ଯେ ଅଛୁଂ ମାଛ ପେଟ ॥
ଶୁଣିଣ ଚକିତ ସେ ହୋଇଲେ ସର୍ବଜନ । ବେକ ସଳଖରୁ ମୀନ କାଟିଲେ ବହନ ॥
ଦେଖିଲେ ମାଛ ପେଟେ ମନୁଷ୍ୟ ଦୁଇଗୋଟି। ସୂର୍ଯ୍ୟର କିରଣ ପ୍ରାୟେ ତେଜ ସେ ପ୍ରକଟି ॥
ଗୋଟିଏ ଅଣ୍ଡିରି ତହିଂ ଗୋଟିଏ ଯେ ମାଈ । ଦେଖିଲେ ମାଛପେଟୁଂ ମନୁଷ୍ୟ ଜନ୍ମ ହୋଇଅଛି ॥
ରାଜା ଆଗେ ତତକ୍ଷଣେ ଜଣାଇଲେ ଯାଇ । ମାଛପେଟୁଂ ମନୁଷ୍ୟ ଯେ ଜନମ ହୋଅଇ ॥
ଝିଅ ପୁଅ ଦୁଇଗୋଟି ହୋଇଲେକ ଜାତ । ଅବଧାନ କର ହେ ଦେଖ ନରନାଥ ॥
ତାହା ଶୁଣିକରି ରାଜା ସଭାରୁ ଉଠିଲେ । ରନ୍ଧାଶାଳଦ୍ୱାରେ ଯାଇ ପ୍ରବେଶ ହୋଇଲେ॥
ଦେଖିଲେ ରାଜା ବାଳୁତ ଦୁହିତା ନନ୍ଦନ । ଦଶ ଚନ୍ଦ୍ର ସେ ବେନି ଅଟନ୍ତି ଶୋଭନ ॥

ମନେ ବଚାରିଲ ପୁତ୍ର ଦୁହିତା ଏ ଦୁଇ । ଏ ବେନି ବାଳକେ ମୁଁ ଯେ ପ୍ରତିପାଳିବଇଁ
ମୃଗସ୍ୱାର କଥା ରାଜା ରାଣୀ ଆଗେ କହି । ଯଜ୍ଞଂବୀଜ ଦେଇଥିଲି ଚିଲ ହସ୍ତେ ମୁହିଁ ॥
ସେହି ବୀଜ ଘେନି ଚିଲ ଉଡ଼ି ଆସୁଥିଲା । ଆଉ ଏକ ଚିଲ ସାଥେ ତା କନ୍ଦଳ ଲାଗିଲା ॥
ପଞ୍ଚ ଠୋଲି ଚିରି ବୀଜ ବେନିଖଣ୍ଡ ହେଲା । ମହାନଦୀ ଜଳେ ଯାଇ ସେ ବୀଜ ପଡ଼ିଲା ॥
ସେ ଜଳ ଭିତରେ ରୋହିମାଛ ଚରୁଥିଲା । ଅହାର ବିଚାରି କରି ସେ ବୀଜକୁ ଗିଳିଲା ॥
ଚିଲ ଆସିକରି ତୁମ୍ଭ ହାଥେ ପଞ୍ଚ ଦେଇ । ଯଜ୍ଞଂ ସମାଚାର ସେ ତୁମ୍ଭଙ୍କୁ ଗଲା କହି ୭୦।
ସେହି ବୀଜ ବେନିଖଣ୍ଡେ ଏ ବେନି ବାଳକ । କନକା ଦେହି ଗର୍ଭେ ରହିଲେ ଏସନେକ ॥
ଶୁଣି ପାଟରାଣୀ ମନ ସନ୍ତୋଷ ହୋଇଲା । ନୃପକାର କଥା ରାଣୀ ମନରେ ପଶିଲା ॥
ଦୁଇ କଥା ମନ ମଧ୍ୟେ କରିଲା ଏକନ୍ତ୍ର । ହିତ ବୋଲିକରି ସେହୁ ବିଚାରିଲା ଚିତ୍ତ ॥
ଧାଈ ମୁଦୁଲୀଙ୍କି ସେ ଦେଲେ ବେନି ବାଳେ । ତତକ୍ଷଣେ ଅଙ୍ଗ ପଖାଳିଲେ ବାସକଲେ ॥
ଅଗୁରୁ ଚନ୍ଦନକାଷ୍ଠେ ଏନ୍ତୁଡ଼ି ଜାଳିଲେ । କୁମାର କୁମାରୀଙ୍କର ନ ଭି ଛେଦ କଲେ ॥
ଘଣ୍ଟଦୋଳି ବାଜି ଆସେ ଶେଯ ପାଟଧୂଳି । ଢୋଲ ଟମକ ଯେ ବାଜେ ମଙ୍ଗଳମହୁରୀ ॥
ହେଥିଅନ୍ତେ ରାଜା ପଞ୍ଚମନ୍ତ୍ରୀ ହକାରିଲା । ଦୈବଜ୍ଞଂ ଡକାଇ ଭଲମନ୍ଦ ଯେ ବୁଝିଲା ॥
କେମନ୍ତ ଯୋଗରେ ପୁତ୍ର ହୋଇଛୁ ଜନମ । ଭଲ ମନ୍ଦ କି ହୋଇଲା କହନ୍ତୁ ବହନ ॥
କୋଷ୍ଠି ସ୍ଥାପି ଗ୍ରହ ଲଗ ଇଣ୍ଟ ଶୁଭ କହି । ସର୍ବ ଶୁଭ ମଙ୍ଗଳ ହୋଇଲା ତୁମ୍ଭଙ୍କୁହିଂ ॥
ମଘା ନକ୍ଷତ୍ରକୁ ସିଂହରାଶି ଯେ ହୋଇଲା । ଏକ୍ରମରେ ରାଜା ହେବା ଯୋଗ୍ୟଯେ ଲେଖିଲା ।
ମାତାରେ ପିତାରେ ହ'ବେ ଦୋଷନାହିଂକିଛୁ । ସର୍ବଶୁଭ ଲକ୍ଷଣ ଏହାର ହୋଇଅଛୁ ।୭୫।
ମତ୍ସ୍ୟର ଗର୍ଭରୁ ଜନ୍ମ ହୋଇଲାକ ଯହିଂ । ମତ୍ସ୍ୟରାଜ ବୋଲି ନାମ ବୋଲିଇଲା ତହିଂ ॥
ଏହାର ସଙ୍ଗତେ ଯେ ଦୁହିତା ଉତପତ୍ତି । ସ୍ୱେଶୁକରି ନାମ ତାର ଅଟେ ମତ୍ସ୍ୟବତୀ ॥
ବଡ଼ ଶୁଭଯୋଗେ ଏହୁ ହୋଇଲା ଦୁଲଣୀ । ଚକ୍ରବର୍ତ୍ତୀ ରାଜାର ଏ ହେବ ପାଟରାଣୀ ॥
ସ୍ୱେହିମତ ଦଇବଜ୍ଞଂ କହିଲା ଗ୍ରହମତ । ଶୁଣିକରି ସନ୍ତୋଷ ହୋଇଲେ ନୃପବର ॥
ମତ୍ସ୍ୟବତୀ ମତ୍ସ୍ୟରାଜ ହୋଇଲେ ଜନମ । ରାଜା ରାଣୀ ସମସ୍ତଙ୍କ ହରଷିତ ମନ ॥
ଶାଢ଼ୀ ସୁନାବଳା ସେସେ ଦୈବଜ୍ଞଙ୍କୁ ଦେଇ । ଗୋରୁ ମଇଂଷି ଆବର ଭୂମିଦାନ ଦେଇ ॥
ହାଟ ତୁଠ ଗ୍ରାମ ନୂର କଲକ ରଜନ । ମୀନ ପେଟୁ ମନୁଷ୍ୟ ପାଇଲି ବୋଲି ଜାଣ ॥
ମୋତେ ଶୁଭ ହେଲା ବୋଲି ଆନନ୍ଦିତ ମନ । ବ୍ରାହ୍ମଣେ ଡ଼କାଇ ରାଜା ଦେଲା ବହୁଦାନ ॥
ଗଜ ଅଶ୍ୱ ଗୋରୁ ମଇଂଷି ଯେ ଦାନ ଦେଲା । ଅନ୍ନବସ୍ତ୍ର ଧଳକ ଅନ ସେ ଭୂମି ଦେଲା ॥
ଏଥୁଅନ୍ତେ ଧାଈ ଯେ ପୁତ୍ରକୁ ପ୍ରତିପାଳି । ଦିନକୁ ଦିନ ପୋଷନ୍ତେ ବଢ଼ନ୍ତି ମହାବଳୀ ॥
ମତ୍ସ୍ୟରାଜ ଜନ୍ମ ହୋଇ ଶୁଭେଣ ବଢିଲା । ଅଚ୍ୟୁତ ଦାସ ଯେ ଏହା ଗୀତରେ ଭଣିଲା।୮୨।

ଇତିଶ୍ରୀ କୈବର୍ତ୍ତ ଗୀତାୟାଂ ବୈସ୍ୱାସିକ୍ୟାଂ ପାରମହଂସ ସଂହିତାୟାଂ ଦାସରାଜା ଚରିତେ ମତ୍ସ୍ୟରାଜ ମତ୍ସ୍ୟବତୀ ଜନ୍ମକଥନେ ହରି ଅର୍ଜ୍ଜୁନ ସମ୍ବାଦେ ନ ମ ଦଶମୋଽଧ୍ୟାୟ ।

———

## ॥ ଏକାଦଶ ଅଧ୍ୟାୟ ॥

ଅର୍ଜ୍ଜୁନ ବୋଇଲେ ଶୁଣ ପ୍ରଭୁ ଜଗନ୍ନାଥ । ଦାସରାଜା ବଂଶକେହ୍ନେ ହୋଇଲା ବିଖ୍ୟାତ ।୧।
ଏକଥା ବିସ୍ତାରି ମୋତେ କହିବା ଗୋସାଇଂ । କେମନ୍ତେ ବିଖ୍ୟାତ ହେଲା ଜଗତ ବଢ଼ାଇ ॥

ଶ୍ରୀହରି ବୋଇଲେ ଯହୁଁ ପ୍ରସ୍ତୁତ କଲୁ ବୀର । ଶୁଣ ବଂଶ ଯେହ୍ନେ ଶ୍ରେଷ୍ଠେକ ବଢ଼ିଲ ତାହାର ॥
ସୀତା ଗୀଲା ମତ୍ସ୍ୟବସ୍ତୁ ଉଦପୂନ ହେଲେ । ଅନେକତ ପୁନି ମାହାଦେବଙ୍କୁ ଜାତକଲେ ॥
ଗିଣମା ତହୁଂ ପୁଣି କ୍ରମରେ ଜନ୍ମାଇଲ । ଦାଶଧୀବର ବୋଲି ଯେ ନାମତାରହେଲ ॥
ଏମନ୍ତେଣ ଦାସରଜା ବଂଶ ଯେ ବଢ଼ିଲେ । ସପ୍ତଦ୍ୱୀପା ପୃଥିବୀରେ ବିଖ୍ୟାତ ହୋଇଲେ ॥
ରାଜାମାନଙ୍କର ଝିଅ ପୁତ୍ରେ ବିଭାକରି । ଦୋହିତା ପ୍ରଦାନ କଲା ରାଜପୁତ୍ରେ ବରି ॥
ଏହିରୂପେ କୈବର୍ତ୍ତିର ବଂଶ ଯେ ବଢ଼ିଲେ । ନଥଳୀ କୈବର୍ତ୍ତ ବୋଲି ନାମ ଭଣାଇଲେ ॥
ଅର୍ଜୁନ ବୋଇଲେ ପ୍ରଭୁ ପାଇଲି ପରତେ । ଏବେ କହ ଛଣପଟ ଜାଲ କଉଂ ମତେ ॥
ଶ୍ରୀହରି ବୋଇଲେ ତାହା ଶୁଣ ଗୁ ଅର୍ଜୁନ । ଛଣପଟ ଜାଲର ମୁଂ କହଇ ବିଧାନ ।୧୦।
ପିଥା କାଠି ସନ୍ତାନେ ଯେ ବିଶ୍ୱକର୍ମା ଦେଲେ । ଚକ ତାକୁ ଶରେ ସୂତା ଈଶ୍ୱର କାଟିଲେ ॥
ପାର୍ବତୀ ସୂତା କଟାଇ ଜାଲ ଯେ ବୁଣିଲେ । ଭୂତପ୍ରେତ ଡାଏଣୀ ଯେ ମାହାଭୟେକଲେ ॥
ଯେ ଜାଲ ଫାଶକୁ ଦେଖି ଭୂତପ୍ରେତଗଣେ । ଗ୍ରାମରୁ ପଳାଇ ଯାଇ ରହିଲେ ଅରଣ୍ୟେ ॥
ଗୁଣ୍ଡି ଝେପାଜାଲ ବୁଣି ପୋଲୁହା ବୁଣିଲେ । ପାହାଡ଼ିଆ ଘଣ୍ଟିମାଳ ଦାଣ୍ଡୁଆଣି କଲେ ॥
ଦୋଅଛ ବୁଣିଣ ଯେହ୍ନେ କଲେକ ଜାଲେଇ । ମୁଣ୍ଡ ଭଙ୍ଗଂରଅ ବୁଣି ଲୁହାଗୁଣା ଦେଇ ॥
ପେଙ୍ଗି ଜାଲ ବୁଣି ଯେ ଯେ ବୁଣିଲେ ପେଲଣା । ଈଶ୍ୱର ଜାଲେ ଶୋଭ ଫାନ୍ଦ ତଳେ ଲୁହାଗୁଣା ॥
ଏମାନ ଦାସରାଜାଙ୍କୁ ଶିଖାଇଣ ଦେଲେ । ଦଲ ଶଇନ ଯୋଜନଣ ଫାଶ ପକାଇଲେ ॥
ଏମନ୍ତେ ଈଶ୍ୱର ମ ଛମାଶ ଶିଖାଇଲେ । ନ ଆସିବା ଜୀବଙ୍କା ପାର୍ବତୀ କହିଦେଲେ ॥
ରାଜଆସନରେ ବସି ସର୍ବ ଅଧିକାରୀ । କ୍ଷତ୍ରିସ୍ୱ ଧରମ ରାଜା ବିଚାରିଣା କରି ॥
ନାବ ଜାଲ ଚୁଡ଼ା ତ୍ରୁଙ୍ଗି କ୍ଷତ୍ରିସ୍ୱ ବଂଶର । କନ୍ଧରେ ପଇତା ହାଥେଧନୁ ଧନୁ ତୀର ।୨୦।
ଏହିରୂପେ କୈବର୍ତ୍ତିର ବଂଶ ଯେ ବଢ଼ିଲ । ନାନାହ ବର୍ଣ୍ଣିକମାନ ଆଣି ଭିଆଇଲ ॥
କେହୁ ବା କୃଷି ଚଷିଣ ବଳଦ ବାହିଲ । କୃଷୀ କଇବର୍ତ୍ତି ବୋଲି ନାମ ଭଣାଇଲ ॥
ରଥ ଗଜ ଅଶ୍ୱ ଯେ ପାଦାନ୍ତବଳ ଗୋଟି । ଦାସରାଜା ପାଶେ ଏହିମାନେ ଥାନ୍ତି ଖଟି ॥
ଏମନ୍ତେ କୈବର୍ତ୍ତି ଦାସରାଜାର ବିଧାନ । ଜ୍ଞାତି ଗୋତ୍ର ବନ୍ଧୁ ଯେ ବହୁତ ଉତପନ୍ନ ॥
କେହି ବା ବୋଇତ ଚଢ଼ି ବର୍ଣ୍ଣିଜରେ ଗଲ । ବୋଇତଆଲ ବୋଲିଣନାମ ଭଣାଇଲ ॥
କେହୁଥିବା ଜାଲବାହି ମାଛ ଯେ ମାଇଲେ । ଜାଲିଆ କେଉଟ ବୋଲି ନାମ ଭଣାଇଲେ ॥
କେ ଅବା ନାବ ଯୋଜନଣ ବଣିଜ ଭରଇ । କେ ଅବା ମଲଙ୍ଗନାବ ପଲଖା ଚଳାଇ ॥
କେହୁ ବା ଚୁଡ଼ା କୁଟିଣ ବେପାର ଯେ କଲେ । ଚୁଡ଼ାକୁଟା କଇବର୍ତ୍ତି ସେହୁ ବୋଲାଇଲେ ॥
ଲିଆ ମୁଡ଼ି ଉଖୁଡ଼ା ଯେ ବଜାରେ ବିକିଲେ । ଲିଆଲୀ କୈବର୍ତ୍ତ ବୋଲିନାମଭଣାଇଲେ ॥
ପୂର ଯେ ଜାକର ଗୁଡ଼ ଦେଉଥା କରନ୍ତି । ଗୁଡ଼ିଆସାହୁ ବୋଲିଣ ସଂସାରେ ବୋଲନ୍ତି ॥
ନାବ ଲିଆ ଚୁଡ଼ାଏ ଯେ ଶ୍ରେଷ୍ଠ ଉତ କର୍ମ । ମାଛ ମାରିବାର କର୍ମ ସବୁଠାରୁ ହୀନ ।୩୨।
ଦୋକାନ କରିବା ଯହୁଂ କଇବର୍ତ୍ତି କଲେ । ମଦ୍ୟ ମାଂସଜୀବିକାରେ ଧୀବର ବଢ଼ିଲେ ॥
ମଦ ମାଂସଖାଇ ଯେ ଲକ୍ଷ୍ମୀନ୍ତ ପ୍ରତପାଳ । ବର୍ଣ୍ଣଶଙ୍କର ସଂସାରେ କରନ୍ତି ତମାଳ ॥
ଗୀତ ଗାଇ ପୂର୍ଣ୍ଣାପ୍ତ ଧରଣ ଯେ ବଜାଇ । ମାନ୍ୟ ଗଉରବ ସେ କାହିଁହୁଂ ନ ଜାଣଇ ॥
ପ୍ରସନ୍ନ ହୋଇ ଦାସଙ୍କୁ କହିଦେଲେ ଶମ୍ଭୁ । ମଦ୍ୟପାନ କଲେ ତୁହି ନର୍କରେ ପଡ଼ିବୁ ॥
ଅଭକ୍ଷ ଭକ୍ଷଣେ ତୁହି ନୋହିବୁଟି ଉତ୍ତମ । ଉତ୍ତମକୁଳେ ଜନମି କଲେ ହୀନକର୍ମ ॥

ଆଗମପୁରାଣେ ଏହା ପଣ୍ଡିତେ କହନ୍ତି । ନଷ୍ଟେ ଦେହ ପ୍ରାଣୀର ହୋଅଇ ନର୍କଗତି ।।
ସୁଖ ବର୍ଜିତ ଯେ ନାନା ଜୀବ କରେ ହତ । ନାନା ଜାତି ସଙ୍ଗତରେ ମଦ୍ୟପାନେ ରତ ।।
ଶୂକର କୁକ୍କୁଟ ମତ୍ସ୍ୟ ପୋଡ଼ି ଖାନ୍ତି ଭରି । ମଦ୍ୟପାନ ଅନ୍ତେ ଯେ ତାହାକୁ ଭୋଗକରି ।।
ଝିଅ ବୋହୂ ଜେଠାଈ ମାଇଁ ମାଉସୀ ଦୁହିତା । ଭଉଣୀ ଭଣିଜୀ ଆର ଯେତେକ ମାନିତା ।।
ନ ମାନନ୍ତି ଏମାନ ସେ ଧର୍ମ ନ ବିଚାରି । ମତ୍ତକରେ ମହାପାପେ ଯାନ୍ତି ନର୍କପୁରୀ ।୪୨।
ସେମାନେ କୁଳପତି ମାତା ନ ମାନନ୍ତି । ମାତା ଗର୍ଭ ଜନ୍ମି ତାକୁ ବିଷମୂନା ଚାନ୍ତି ।।
ପାପ ପୁଣ୍ୟ ଭଲମନ୍ଦ କିଛୁ ନ ଜାଣନ୍ତି । ଏସନେ ଧୀବର ବଂଶ ସଂସାରରେ ବଢ଼ନ୍ତି ।।
ଦେହର ଖର୍ପରେ ତାଙ୍କୁ ଯମ ଦିଏ ବାସ । ଏହିମତି ଧୀବର ଯେ ହୋଇଛନ୍ତି ନାଶ ।।
ଏ କଥାକୁ ଦାସରଜା ବୁଝି ପୁଚ୍ଛାଇଲେ । କେଉଁ କର୍ମ ଭ୍ରମିଗୁ ହୁଅନ୍ତି ଏସବୁ କଥାରେ ।।
କଇବର୍ତ୍ତ ଦାସରଜା ପୁଚ୍ଛନ୍ତି ତୁ ଜାଣ । ଧୀବର ଶିଉଳି କୁଳବୃଦ୍ଧି ମଦ୍ୟପାନ ।।
ଶିଉଳି କେଉଟ ଯେହୁ ବୋଲନ୍ତି ସଂସାରେ । ଦାସୀର କୁମର ସେ ଯେ ଜନ୍ମ କୁକର୍ମରେ ।।
ମନ ସନ୍ତୋଷରେ ସେହୁ ମଦ୍ୟପ ନ କରେ । ଶିଉଳି କେଉଟ ନାମ ସଂସାରେ ବହିଲେ ।।
ଅର୍ଜୁନ ବୋଇଲେ ପ୍ରଭୁ ଶୁଣିମା ଅନନ୍ତ । ଧୀବର ଶିଉଳି କାହିଁ କଲେ ଏତେ କୃତ୍ୟ ।।
କଇବର୍ତ୍ତ ବୀର୍ଯ୍ୟରୁ ଯେ ଉତ୍ପନ୍ନ ହୋଇଲେ । କାହିଁ ହୀନକର୍ମ କଲେ କହ ପ୍ରଭୁ ଭଲେ ।।
ସେ ଥିର କରମ କଥା କହିବା ଗୋସାଇଁ । କାହିଁ ଏତେକର୍ମ କଲେ କଇବର୍ତ୍ତ ହୋଇ ।।
ଶ୍ରୀହରି ବୋଇଲେ ବାବୁ ଶୁଣ ତୁ ଅର୍ଜୁନ । ଦାସରଜା ଜନମିଲା ଆନ୍ଧ୍ର ତହୁଁ ପୁଣ ।୫୩।
ରାଜାପଟେ ଶାଢ଼ୀ ତାକୁ ଦେଇଅଛୁ ମୁହିଁ । ସିଂହଳ ଦ୍ୱୀପର ସେହୁ ଅଧିପତି ହୋଇ ।।
ସିଂମାକୁ ଦାସରଜା ବିଭା ଯେ ହୋଇଲା । ଗିରିମା ସାଥେ ଧାଇ କମଳା ଆସିଥିଲା ।।
ଦାସୀଠାରୁ ନୃପତିର ହୋଇଲା କୁମର । ତେଣୁ ସେ ଧୀବର ବୋଲି ହୋଇଲା ପ୍ରଚୁର ।।
ଧୀବରର କୁଳରୁ ରଜା ବିଭା କରାଇଲେ । ତାହାର ଅଂଶୁ ଧୀବର ବହୁତ ବଢ଼ିଲେ ।।
ଧୀବରୀ କୁଳ ରଜ ସେହୁ ଦାସରଜା ବୀଜ । ସଂଯୋଗ ହୋଇଲା ତହିଁ ସତ ତମ ରଜ ।।
ଦୁଇକୁଳ ରଜ ବୀଜ ଏକତ୍ର ହୋଇଲା । କେଉଟିଆ ହୋଇଣ ସେ ନାମ ପାଇଥିଲା ।।
ତହୁଁ ଉଠି ଅଂଶେ ବଂଶ ସେ କୁଟୁମ୍ବ ପୋଷଇ । ତହିଁ କେଉଟ ବୋଲି ନାମତା ବୋଲାଇ ।୬୦।
ଅକୁଳ ଅଗୋଚର ହୋଇ ବଢ଼ିଲେ ବିଶାଳ । ତେଣୁ ନାମ ବୋଲାଇଲା ଶିଉଳି ଧୀବର ।।
ଜାଲ ବୁଣି ମାଛମାରି କୁଟୁମ୍ବ ପୋଷିଲେ । ମଦିରା ପାନରେ ସେହୁ ଧନ ବଞ୍ଚାଇଲେ ।।
ଏମନ୍ତେ ଅଜ୍ଞାନମାର୍ଗେ ବହୁତ ବଢ଼ିଲେ । ସୁରାପାନ କରିଣ ସେ ନର୍କମାର୍ଗେ ଗଲେ ।।
ଧୀବର ଶିଉଳି କଥା ହୋଇଲା ସମ୍ପୂର୍ଣ୍ଣ । ଭଣଇ ଅଚ୍ୟୁତ ଦାସ କୃଷ୍ଣରେ ଶରଣ ।୬୪।

ଇତି ଶ୍ରୀ କୈବର୍ତ୍ତ ଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ କୈବର୍ତ୍ତ ଦାସରଜା ଚରିତେ ଦାସ ଧୀବର କଥନେ ନାମ ଏକାଦଶୋଽଧ୍ୟାୟଃ ।

---

## ।। ଦ୍ୱାଦଶ ଅଧ୍ୟାୟ ।।

ଜଗନ୍ନାଥେ ପୁଣ ଅର୍ଜୁନ ପୁଚ୍ଛିଲେ । ଯଉଂ ନସ୍ତ୍ରୀଠାରୁ ବେନି ବାଳକ ଜନ୍ମିଲେ ।୧।
ପୂର୍ବେ କେଉଁ ପାପରୁ ସେ ହେଲେ ଗର୍ଭବାସ । ଏହି କଥା ବୁଝାଇ କହିବା ପୀତବାସ ।।
ହରି ବୋଇଲେ ତୁମ୍ଭେ ଶୁଣ ବୀର ପାର୍ଥ । ଏଥିର ପରମ ସନ୍ଧି ଶୁଣିମା ଯଥାର୍ଥ ।୩।

ସ୍ୱୟଂଭୁବ ମନୁ ସତ୍ୟଯୁଗର ବାରତା । ସ୍ୱର୍ଗଅଷ୍ଟ'ନରେ ହୋଇଣ୍ଟେ ଦେବଇନ୍ଦ୍ରଦେବତା ॥
ବ୍ରହ୍ମା ଆଦି ଦେବତାସ୍ତେ ସୁଧର୍ମା ସଭରେ । ନୃତ୍ୟ ଗୀତରସେଛନ୍ତି ଗନ୍ଧର୍ବେ ସେଠା'ରେ ॥
ତାଲ ପଖାଉଜ ବାଜେ ମୃଦଙ୍ଗ ଝଙ୍କାର । ପଞ୍ଚମ ବସନ୍ତ ରାଗେ ଆଳାପ ସୁସ୍ୱର ॥
ମେନକା ସୁନ୍ଦରୀ ସେ ଯେ ସ୍ୱର୍ଗ ଅପଛରୀ । ନୃତ୍ୟ ରଙ୍ଗେ ପ୍ରବେଶିଲା ଦିବ୍ୟବେଶ ଧରି ॥
ତାଣ୍ଡବ ନୃତ୍ୟରେ ସର୍ବ ଅପଛରୀ ବୃନ୍ଦ । ସୁଲଳିତ ନୃତ୍ୟ ଗୀତେ ସମସ୍ତେ ଆନନ୍ଦ ॥
ପାଦଘାତେ ରୁଣ୍ଟୁଣ୍ଟ ବଜାଇ ନେପୁର । ନୃତ୍ୟରଙ୍ଗେ ମୋହିଲା ଯେ ଦେବ ପୁରନ୍ଦର ॥
ନୃତ୍ୟ କରୁ କରୁ ସେ ଅନଙ୍ଗ ଉନ୍ମାଦରେ । ରଜ ତା ସ୍ଖଳିତ ହୋଇ ପଡ଼ିଲା ଭୂମିରେ ।୧୦।
ବେଦପଣ୍ଡବୋଇଲେ ମେନକାମୂର୍ଖ ଗୃହଂ । ରଜସ୍ୱଳା ହୋଇ ତୁ ଅଇଲୁ ସଭା ତହିଂ ॥
ଏଥକୁ ଶାପ୍ୟତୁ ହେବ ମେନକା ସୁନ୍ଦରୀ । ମାଛର ପେଟରେ ଜନ୍ମ ହୋଅଯା ପାମରୀ ॥
ତା ଶୁଣି ମେନକା ବ୍ରହ୍ମା ପାଦତଳେ ପଡ଼ି । ଉଠିଣ ଉଭା ହୋଇଲା କରପଦ ଯୋଡ଼ି ॥
ଶୁଣ ବେଦପଣ୍ଡମୋର ଦୋଷନାହିଂ କିଛି । ନୃତ୍ୟରଙ୍ଗ କରନ୍ତେ ପଡ଼ିଲା ରଜ ଖସି ॥
ଏଥକୁ ଶାପ ବହିଲ ସ୍ୱେହ୍ନେ ବେଦପଣ୍ଡ । ଅଙ୍ଗୀକାର ହୋଇ କେହ୍ନେ ପାଇବ ମୁକତ ॥
ଶୁଣିକରି ବେଦପଣ୍ଡ ବୋଲନ୍ତି ବଚନ । ମୋ ଦେଲାର ଶାପ୍ୟଅନ୍ୟ ନୋହିବଟେ ଆନ ॥
କଳପ୍ରଳୟରେମୁହିଂ ବହ୍ମଲୋକେ ଶୋଇ । ଚାରିଯୁଗ ଯାଏ ତହିଂ ନିଦ୍ରା ଯାଇ ॥
ଗୁରଖାନ ଛପନକୋଟି ଯେତେ ଜୀବଜନ୍ତୁ । ଦଶଦିଗପାଳ ଚନ୍ଦ୍ର ସୂର୍ଯ୍ୟ ଆଦି ମୃତ୍ୟୁ ॥
ଚତୁର୍ଦ୍ଦଶ ମନୁ ସପ୍ତଋଷି ଆଦିକରି । ଚତୁର୍ଦ୍ଦଶ ଅବତାର ଶ୍ରୀହରି ସଂହରି ॥
ଭୂଲୋକ ଯେ ଭୁବଲୋକ ସ୍ୱରଲୋକ ତିନ । ମହଲୋକ ଯାଏ ଜଳ ଉଚ୍ଛୁଳିଲା ପୁଣି ।୨୦।
ତେତେବେଳେଶ୍ରୀକୃଷ୍ଣଯେବଟପତ୍ରେଶୋଇ । ଲହରେ ଘାତେ ବଟପତ୍ର କମ୍ପୁଥାଇ ॥
ତାହା ଦେଖି କୃଷ୍ଣ କର୍ଣ୍ଣମୂଳୁଂ କରି ଜାତ । କଇବର୍ତ୍ତ ଦାସ ବୋଲି ଯଜାଇରେ ବିଖ୍ୟାତ ॥
ସେ ବଟପତ୍ରରେ ବସି କଣ୍ଡିଆର ଧରି । ଥିର ହୋଇନ୍ତେ ବଟ ସେ ଶୟନ ପୁଣି କରି ॥
ତାହାଙ୍କୁ ସିଂହଳଦ୍ୱୀପେ କରିବେ ସେ ରଜା । ମୃଗୟା ବିନୋଦେ ସେ ବିଜୟ ଦାସରଜା ॥
ମୃଗୁଣୀ ଉନ୍ମାଦ ଦେଖି ବିନ୍ଦୁ ତା ଖସିବ । ଶିଆଳୀପତ୍ରରେ ତାହା ଚିଲ ହସ୍ତେ ଦେବ ॥
ଅନ୍ୟ ଚିଲ ଦେଖି ଆସି ତା ସଙ୍ଗେ ଯୁଝିବ । ବେନି ଚଞ୍ଚୁ ହାଇ ବୀଜ ଜଳରେ ପଡ଼ିବ ॥
ମଛ ଯୋନିରେ ଜନ୍ମିବୁ ନାମତୋ କନକା । ସେ ନଦୀ ଜଳରେ ବୁଲି ଚରୁଥିବୁ ସେ୍ୱକା ॥
ଅଧାର ବଗୃର ବୀଜ କରିବୁ ତୁ ଗ୍ରାସ । ତତକ୍ଷଣେ ହୋଇବ ତୋହୋର ଗର୍ଭବାସ ॥
ମୀନଗଣ ସଙ୍ଗେ ତୁ ଗଭୀର ଜଳେ ଥିବୁ । ଶବର ବଡ଼ସିକଣ୍ଟା ଲାଗିଲେ ମରିବୁ ॥
ତୋହୋରଗର୍ଭରେପୁତ୍ରଦୁହିତାଯେହୋଇ । ଦାସରଜା ନେଇ ତାଙ୍କୁ ପ୍ରତିପାଳିବଇ ।୩୦।
ପୁତ୍ର ଯେ ତ ହାରି ରାଜ୍ୟେ ହୋଇ ରଜ । ଦୁହିତା ଗର୍ଭରୁ ପରାଶରଙ୍କ ତନୁଜ ॥
ବ୍ୟାସମୁନି ହେବେ ଜାତ ଜାଣିଥା ସମ୍ପ୍ରତ । ତେବେସେ ତୁମେ ହରଶାପୁଂ ହୋଇବୁ ମୁକତ ॥
ଏହିମତ କେତେ ସମ୍ବତ୍ସର ତହିଂ ଗଲା । ସେ ମେନକା ସୁନ୍ଦରୀଯେ ପ୍ରାଣତ୍ୟାଗ ହେଲା ॥
ସୁମତୀ ବୋଲିଣ ସେ ଏକଇ ରୋହିମାଛ । ବଡ଼ ଭାଗ୍ୟବତୀ ମୋର ଭକ୍ତ ତାର ସ୍ୱଚ୍ଛ ॥
ସେହି ସମୟରେ ସେ ହୋଇଛି ରଜବତୀ । ମେନକା ଯାଇ ତାହାର ଗର୍ଭ ହେଲା ଥିତ ॥
ଏହିମତ ଦଶମାସ ସମ୍ପୂର୍ଣ୍ଣ ହୋଇଲା । ସୁମତୀ ରୋହିମାଛ ଯେ କନ୍ୟା ପ୍ରସବିଲା ॥
ଜନ୍ମହୋଇ ମେନକା କନକା ତାର ନାମ । କେତେ ଦିନ ରଜସ୍ୱଳା ହୋଇଲା ସେ ମୀନ ॥
ସହିଂ ପଥେ ଚିଲ ବୀଜ ଦେନି ଅଭୁଥାଇ । ସେହିପଥ ସଳଙ୍ଗେ କନକା ଚରୁଥାଇ ।୩୮।

ଏମନ୍ତ ସମୟେ ଚଳି ବୀଜ ଆସୁଥିଲା । ମହାନଦୀ ମଧ୍ୟେ ଆସି ପ୍ରବେଶ ହୋଇଲା ।୪୯।
ଦୁଇଟଳ ଯୁଟେ ବୀଜ ପଡ଼ିଲା ସେ ଜଳେ । ସେ ବୀଜକୁ ଗିଳିଲା ଯେ କନକା ତତ୍କାଳେ ॥
ଗର୍ଭବାସ ଦଶମାସ ସମ୍ପୂର୍ଣ୍ଣ ହୋଇଲା । ଶବର ବଣସୀ ଥୋପେ ପ୍ରାଣ ବିସର୍ଜିଲା ॥
ସେ ମେନକା ଅପଛରୀ ଗଲା ସ୍ୱର୍ଗପୁର । ଶୁଣିଲୁକି ଅର୍ଜୁନ ହୋ ଯେ ପ୍ରଶ୍ନ ତୋହର ॥
ଶୁଣିଣ ଅର୍ଜୁନ ବେନି କର ଯୋଡ଼ି ପୁଣ । ବୋଲଇ ଶୁଣିମା ହେଉ ଜଗତ ଜୀବନ ॥
ବେଦବ୍ୟାସ ଜନ୍ମ ମୋତେ କହ ନାରାୟଣ । କେମନ୍ତ ପ୍ରକାରେ ପରାଶର ବୀର୍ଯ୍ୟେ ଜନ୍ମ ॥
ପରାଶର ହୋଇଛନ୍ତି କାହାଠାରୁ ଜାତ । ଏହି କଥା ବୁଝାଇ କହିବା ଲକ୍ଷ୍ମୀକାନ୍ତ ॥

ଶ୍ରୀହରି ବୋଇଲେ ପାର୍ଥ ପଚାରିଲୁ ଯାହା । ସାବଧାନହୋଇ ଶୁଣ ସୋଭଦ୍ରାର ନାହା ॥
ବ୍ରହ୍ମାର ନନ୍ଦନ ଯେ ବଶିଷ୍ଠ ମହାଋଷି । ବଶିଷ୍ଠଙ୍କ ପୁତ୍ର ନାମ ଶକ୍ତି ମୁନି ଋଷି ॥
ଶକ୍ତି ମୁନି ଶିଷ୍ୟ ପରାଶର ବୋଲି କହି । ବ୍ରହ୍ମାଙ୍କର ଅଣନାତି ଅଟନ୍ତି ସେହି ॥
ଏକ ଦିନେ ପରାଶର ସିଂହଳ ଦ୍ୱୀପରେ । ପ୍ରବେଶ ହୋଇଲେ ରାଜା ମଧୁନବରରେ ॥
ଦେଖିଲେ ନାନା ବୃକ୍ଷରେ ପୁଷ୍ପ ବିତପନ । ଅବସନ୍ତେ କୋକିଳ ରାବଇ ଘନଘନ ।୫୦।
ସୁଶୀତଳ ଜଳ ପୁଷ୍କରଣୀ ପଦ୍ମାକର । ଫଟିକର ଦ୍ୱିପଦଣ୍ଡୀ ମଧ୍ୟରେ ସୁନ୍ଦର ॥
ଦାସରାଜା ଦୁହିତା ଯେ ସଖୀଗଣ ସଙ୍ଗେ । ସମବୟସୀ ବାଳାଏ ବିହରନ୍ତି ରଙ୍ଗେ ॥
ଦେଖି ପରାଶର ଋଷି ବିହ୍ୱଳିତ ମନ । କୁମାରୀକି ଦେଖି ଅଙ୍ଗେ ଘାରିଲା ମଦନ ॥
ଦାସରାଜା ଦୁହିତାକୁ ପଚାରନ୍ତି ଋଷି । କାହା'ର ନନ୍ଦନୀ ତୁ ଗୋ ଅଟୁ ଶୁଭକେଶୀ ॥
ଋଷିଙ୍କ ବଚନ ଶୁଣି ବୋଲେ ରାଜଜେମା । ଦାସରାଜା ଦୁହିତା ମୁଁ ମତ୍ସ୍ୟବତୀ ନାମା ॥
ନିତପ୍ରତି ଏ ବନରେ ଖେଳୁଥାଇଁ ଋଷି । ଜଳକେଳି ନାବକେଳି କରୁ ଅହର୍ନିଶି ॥
ଦାସରାଜା ଝିଅଠାରୁ ଶୁଣି ଏ ବଚନ । ସ୍ୱଭାବେ ପଦ୍ମିନୀ କନ୍ୟା ରମ୍ଭା ନୋହେ ସମ ॥
ପାଚିଲାର ବିମ୍ବ ପ୍ରାୟେ ଅଧର ସୁନ୍ଦର । ମଦନେ ପୀଡ଼ିଲା ତନୁ ଦେଖିଣ ଋଷିର ॥

ବୋଇଲେ ତୁ ରାଜଜେମା ନ କରଣ ଭୟେ । ଆମ୍ଭ ସଙ୍ଗେ ସତ୍ୟକର କହିବା କଥାଏ ।୫୧।
ମତ୍ସ୍ୟବତୀ ବୋଇଲା ମୁଁ କି ସତ୍ୟ କରିବି । ତୁମ୍ଭେ ମହାମୁନି ମୁଁ ଯେ କିସ ଦ୍ରବ୍ୟ ଦେବି ॥
ସ୍ୱଭାବେ ବାଳୁତ ମୁହିଂ ନ ଜାଣଇ କିଛି । ସତ୍ୟେ କରାଇବ ତୁମ୍ଭେ କିବା ମନେ ଇଚ୍ଛି ॥
ତୁମ୍ଭେତ ସର୍ବଜ୍ଞ ମୁନି ଚାରିବେଦ ଜ୍ଞାତା । କେଉଣ କଥାରେ ସତ୍ୟ କରିବି ବ୍ରହ୍ମବେତ୍ତା ॥
ପରାଶର ବୋଲେ ଶୁଣ ରାଜାର କୁମାରୀ । ଅତ୍ୟନ୍ତ ଶୁଭଯୋଗ ଯେ ଘଟିଛି ମୋହରି ॥
କେତେ ସମ୍ବତ୍ସରେ ମୁହିଂ ଏ ଯୋଗ ପାଇଛି । ଦଇବ ପୁରୁଷ ଯେ ତୁମ୍ଭଙ୍କୁ ଭେଟାଇଛି ॥
ଏସନେକ ଶୁଭଯୋଗ ଆଉ ନ ମିଳିବ । ଆମ୍ଭ ବୀର୍ଯ୍ୟେ ଏହିକ୍ଷଣି କୁମର ଜନ୍ମିବ ॥
ଗର୍ଭରୁ ପଣ୍ଡିତ ଯେ ଯେ ନବଯୁବା ହେବ । ଜନମ ହୋଇଣ ଚାରି ବେଦ ସେ କହିବ ॥
ଏହା ଶୁଣି ମତ୍ସ୍ୟବତୀ ଆଚମ୍ବିତ ହେଲା । କଥା ବଢ଼ିବାର ପାଇଁ ସନମତ କଲା ॥

ବୋଇଲା ଦଶମାସରେ ପୁତ୍ର ହୋଏ ଜାତ । ଏହିକ୍ଷଣି ପୁତ୍ର ହେବ ଏ କଥା କେମନ୍ତ ॥
ଏହିରୂପେ ମନମଧ୍ୟେ ଭାଳେ ମତ୍ସ୍ୟବତୀ । ପରାଶର ମହାମୁନି ବୋଇଲେ ଯେ ଭାଷନ୍ତି ॥
ତୋତେ ଦେଖି ପଞ୍ଚଶର ବିନ୍ଧଇ ମଦନ । କାମ କେଳିଦାନେ ରଖ ଏ ମୋର ଜୀବନ ॥
ମତ୍ସ୍ୟବତୀ ଋଷିଙ୍କି ଯେ ବୋଲଇ ସ୍ୱେସନ । ତୁମ୍ଭେ ସତ୍ୟକର ମୁନି କରୁଛି ଜଣାଣ ।୫୨।
ଅବିବାହୀ କାଳୁଁ ମୋର କୁମର ହୋଇବ । କେଉଁକାଳେ କେଉଁଯୁଗେ ମୋତେ ସେ ପୋଷିବ

ବିପତ୍ତିରେ ଯେତେବେଳେ ସ୍ମରିବ ପୁତ୍ରକୁ । ତେତେବେଳେ ସେହୁ ମୋର ଆଦିବ୍ୟାପକ ॥
ଅବସାନକାଳେ ମୋର ପୁତ୍ର କିସ ହେବ । ତୁମ୍ଭ ପାଦପଦ୍ମରେ ସେ ସେବା କରୁଥିବ ॥
ବିପତ୍ତିକାଳରେ ମୁହିଂ ସୁମରିବି ଯେବେ । ସେତେବେଳେ ଅନୁଗ୍ରହ ଦେଖାଇବ ତେବେ ॥
ପୁତ୍ରକୁ ଦେଖିଲେ ମନେ ଆନନ୍ଦ ହୋଇବ । ଦୁଃଖ ସଙ୍କଟରେ ଥିଲେ ତାହାଂକୁ ତରିବ ॥
ଏତେ ବୋଲି ଜଳ ପୁଷ୍ପ ହସ୍ତରେ ଧର୍ଇଲା । ଋଷିଙ୍କର କଥାରେ ସେ ସନମତ କଲା ॥
ମତ୍ସ୍ୟବତୀ ସତ୍ୟ କଲା ଋଷି ଯେ ଦେଖିଲେ । ଏହି ବର ଅସ୍ତୁ ହେଉ ବୋଲି ଆଜ୍ଞା ଦେଲେ ॥
ସଉଂ କଥା ମୁଖରେ ଭାଷିଲୁ ମଛବତୀ । ହେନ୍ତୁ କଥା ତୋତେ ଯେ ହୋଇବ ପ୍ରାପତ ॥
ମଛବତୀ ବୋଇଲା ମୁଂ ନ ଜାଣଇ କିଛି । ବାଳୁତ ମତରେ ଖେଳ ଦିନ କାଟୁଅଛି ।୮୦।
ଋଷି ବୋଇଲେ ତୁ ଶୁଣ ରାଜାର କୁମାରୀ । ଆମ୍ଭ ଆଜ୍ଞା ପରମାଣେ ହୁଅ ଯୁବାସ୍ତିରୀ ॥
ମହାଋଷିଙ୍କର ବାକ୍ୟ ଅନ୍ୟଥା ନୋହିଲା । ତତକ୍ଷଣେ ମତ୍ସ୍ୟବତୀ ଯୁବାରୂପ ହେଲା ॥
ସ୍ତନମାନ ବିକଶିଲା ଉରେ ସୁଗଠିତ । ତାହା ଦେଖିକରି ହେଲା ମନ ସଲଜ୍ଜିତ ॥
ମଛବତୀ ବୋଇଲେ ମୋ ସଖୀଗଣେ ଛନ୍ତି । ତାହାଙ୍କ ଗୁଡ଼ି କେମନ୍ତେ ରହିବ ଯେ ଏଥି ॥
ପରାଶର ବୋଇଲେ ଗୋ କେହି ନ ଦେଖିବ । ଆମ୍ଭ ଆଜ୍ଞା ପ୍ରମାଣେ କୁହୁଡ଼ି ଘୋଟିଯିବ ॥
ପରାଶର ଋଷି ଏହା କହିଲେକ ଯହିଂ । ଘୋଟିଲା କୁହୁଡ଼ି ଆସି କଥା କହିଂ କହିଂ ॥
ଚଉଦିଗେ ଘୋଟିଗଲା ପ୍ରଳୟ ଅନ୍ଧାର । ତହିଂ ମତ୍ସ୍ୟବତୀଙ୍କ କହନ୍ତି ମୁନିବର ॥
ଆସ ରାଜକେମା ଏହି ନାବରେ ବସିବା । ନାଉ ଚଳାଇଣ ଦ୍ୱୀପଦଣ୍ଡୀଠାକୁ ଯିବା ॥
ଶୁଣିକରି ମତ୍ସ୍ୟବତୀ ଗଲା ସୀଜକାର । ବେନିଜନେ ନାବେ ବସି ଚଳିଲେ ସତ୍ୱର ॥
ଦ୍ୱୀପଦଣ୍ଡୀଠାରେ ନାବ ଲଗାଇଲେ ନେଇ । ନାବରୁ ଓହ୍ଲାଇ ଦ୍ୱୀପଦଣ୍ଡୀ ପରେ ଯାଇ ।୯୦।
ଦ୍ୱୀପଦଣ୍ଡୀ ଉପରକୁ କେହି ନ ଦିଶିଲେ । ରାଜକେମା ସଙ୍ଗେ ମୁନି ମଦନେ ମାତିଲେ ॥
ଗର୍ଭଗତେ ବ୍ରହ୍ମବୀଜ ହିଅନ୍ତେ ପ୍ରବେଶ । ସେହିକ୍ଷଣି ଜନମ ହୋଇଲେ ବେଦବ୍ୟାସ ॥
ସେ ବେଦବ୍ୟାସର ପାଦେ ଶରଣ ମୋହର । ଭଣଇ ଅଚ୍ୟୁତ ଦାସ ବାରେ ରତ୍ନାକର ।୯୩।

ଇତଶ୍ରୀ କୈବର୍ତ୍ତଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ ବେଦବ୍ୟାସ ଜନ୍ମ କଥନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ଦ୍ୱାଦଶୋଽଧ୍ୟାୟଃ ।

---

## ॥ ତ୍ରୟୋଦଶ ଅଧ୍ୟାୟ ॥

ଅର୍ଜ୍ଜୁନ ବୋଇଲେ ପ୍ରଭୁ ଶୁଣିମା ଗୋସାଇଁ । ବେଦବ୍ୟାସ ଜନ୍ମ ହେଲେ ମତ୍ସ୍ୟବତୀ ଠାଇଁ ।୧।
ଜନମ ହୋଇଣ ଯେ କିସ କିସ କଲେ । ଏ କଥା ବୁଝାଇ ମୋତେ କହ ପ୍ରଭୁ ଭଲେ ॥
ଶ୍ରୀହରି ବୋଇଲେ ପାର୍ଥ ଶୁଣ ସାବଧାନ । ବେଦବ୍ୟାସ ଚରିତ ଯେ ବିଚିତ୍ର ଆଖ୍ୟାନ ॥
ଜନ୍ମ ହୋଇ ନବଯୁବା ହୋଇଲା କୁମର । ଗାୟତ୍ରୀ କହିଲେ ମନ୍ତ୍ରଦୀକ୍ଷା ତା କର୍ଣ୍ଣର ॥
ମନ୍ତ୍ରରାଜ ନାରାୟଣ ଗୋପାଳ ଯେ ମନ୍ତ୍ର । ବୁଝାଇଲେ ତନ୍ତ୍ର ଚଉରାଶି ମନ୍ତ୍ରତନ୍ତ୍ର ॥
ଋଗବେଦ ଛଡ଼ଶାସ୍ତ୍ର ବ୍ୟାକରଣ ଆଦି । ଅଷ୍ଟାଦଶ ପୁରାଣ ବଖାଣ କଲେ ଛନ୍ଦି ॥
ସାତକାଣ୍ଡ ରାମାୟଣ ଅଷ୍ଟାଦଶ ପର୍ବ । ମହାଭାରତ ଚରିତ ଛନ୍ଦିଣ ସରବ ॥
ଭାଗବତ ହରିବଂଶ ଭବିଷ୍ୟ ପୁରାଣ । ତତକ୍ଷଣେ ବ୍ୟାସମୁନି କଲେକ ଗ୍ରନ୍ଥନ ॥
ଷାଠିଏ ସହସ୍ର ଗ୍ରନ୍ଥ କଲେ ଉଚ୍ଚାରଣ । ଦେଖି ମଛବତୀ କଲା କାତରେ ଜଣାଣ ॥

ଅବିବାହିକାଳେ ମୁଇଂତୋତେ କଲି ଜାତ । ଚତୁର୍ବେଦ ମୁଖ୍ୟଂ ତୋର ହୋଇଲା ଉଚିତ ॥
ତେଣୁ ବେଦବ୍ୟାସ ନାମ ହେଉ ଯେ ତୋହର । କଥାଏ କହୁଛୁ ପୁନ ଯେଣସି ମନର ।୧୧।
ଯେତେବେଳେ ପୁନ ମୁହିଂ ତୋତେ ସୁମରିବି । ସାତ ଗମ୍ଭୀରରେ ଥିଲେ ତୋ ମୁଖ ଦେଖିବି ॥
ଏତେ ବୋଲି ମତ୍ସ୍ୟବତୀ ହେଲା ଶୋକଭର । ହୋଉ ବୋଲି ବେଦବ୍ୟାସ ଲେଉଟିଲେ ସତ୍ୱର
ମାତାଙ୍କ ଚରଣେ ବ୍ୟାସ ନମସ୍କାର କଲେ । ପିତା ସଙ୍ଗେ ଯାଅ ବୋଲି ମାତା ଆଜ୍ଞା ଦେଲେ
ଏଥି ଅନ୍ତେ କୁହୁଡ଼ି ଯେ ଗ୍ରୁଡ଼ିଗଲା ହେଲେ । ପରାଶର ମତ୍ସ୍ୟବତୀ ଆସିଲେକ କୂଳେ ॥
ମତ୍ସ୍ୟବତୀ ବୋଲେ ମୁନି କଲି ବଡ଼ ମନ । ଘରେ ଯାଇଂ କାହା ମୁଖ ଗୃହିଂବି ମୁଂ ପୁଣ ॥
ତୁମ୍ଭେ ଯେଣେ ଯିବ ମୁନି ମୁହିଂ ତେଣେ ଯିବି । ତୁମ୍ଭର ଚରଣେ ମୁହିଂ ସେବା କରୁଥିବି ॥
ପରାଶର ବୋଇଲେ ଗୋ ଶୁଣ ମତ୍ସ୍ୟବତୀ । ପୂର୍ବେ ଯେ ବାଳୁତ ଥିଲୁ ହୁଅ ସେହିମତ ॥
ଋଷିଙ୍କର ବଚନ ଯେ ନୋହିଲା ମେଷଣ । ନବଯୁବା ବାଳୁତ ସେ ହେଲା ତତକ୍ଷଣ ॥
ଋଷି ବୋଇଲେ ତୁ ମଛବତୀ କଲୁ ସତ୍ୟ । ସତ୍ୟବତୀ ନାମ ଗୋଟି ହେଉ ତୋ ବିଖ୍ୟାତ
ନାବେ ଆସି ଉନଜଣ କୂଳେ ଉଭାହୋଇ । ମତ୍ସ୍ୟବତୀ ସଖୀଗଣ ମିଳିଗଲେ ତହିଂ ।୨୧।
ଋଷିଙ୍କି ଦେଖିଣ ସର୍ବେ ନମସ୍କାର କଲେ । ବ୍ୟାସଙ୍କୁ ଘେନିଣ ଋଷି ଆଶ୍ରମ ଚଳିଲେ ॥
ସଖୀ ଜନ ଯେଉଁ ମତ୍ସ୍ୟବତୀକ ପଚାରେ । କାହିଂ ଯାଇଥିଲେ ଋଷି କହ ତଥ୍ୟକରି ॥
ମତ୍ସ୍ୟବତୀ ବୋଲେ ସଖୀ ଶୁଣ ମୋ ଉତ୍ତର । ମୁନି ଯାଇଥିଲେ ଦ୍ୱୀପଦଣ୍ଡୀ ଦେଖିବାର ॥
ସ୍ନାନ ତର୍ପଣାଦି ସନ୍ଧ୍ୟା ସେଠାରେ ସାରିଲେ । ନିର୍ମଳସ୍ଥାନ ଦେଖିଣ ମୁହୂର୍ତ୍ତେ ରହିଲେ ॥
ଶୁଣିକରି ସଖିମାନେ ହୋଇଲେ ହରଷ । ଯେ ଯାହା ମନ୍ଦିରେ ଯାଇଂ ହେଲେ ପରବେଶ
ଶୁଣିଲୁ କି ଅର୍ଜ୍ଜୁନ ହେ ବ୍ୟାସମୁନି କଥା । ଶୁଣି କ୍ଷୟ କର ଏ ଜନ୍ମର ପାପବ୍ୟଥା ॥
ଗୀତା ସାରସ୍ୱତ ଗ୍ରନ୍ଥ ଏହା ଯେ ଶୁଣନ୍ତି । ଶ୍ରୀକୃଷ୍ଣର ପାଦପଦ୍ମ କ୍ଷଣେ ନ ଛାଡ଼ନ୍ତି ॥
ଧେନୁ ପଚ୍ଛେ ବତ୍ସ ଯେହ୍ନେ ଧାଏଁ କ୍ଷୀର ଲୋଭେ । ଭକତ ସଙ୍ଗରେ ମୁହିଂ ଥାଇ ସେହିଭାବେ ॥
ଯେ ମାତେ ଚହ୍ନିଲେ ପାର୍ଥ ମୁହିଂ ତାକୁ ଜାଣି । ଶ୍ରୀମୁଖ ବଚନ ତୋତେ କହି ଦେଲୁ ଆଣି ।୩୦।
ଯେଉଂ ଶାସ୍ତ୍ରେ ମୋର ନାମ ନଥାଇ ଟିକାଣ । ସେ ଶାସ୍ତ୍ରର ପାଶେ ତୁହି ନ ଦେବୁଟି କର୍ଣ୍ଣ ॥
ଏହି ଭକ୍ତିଭାବେ ପରାଶର ଜାତ ହେଲେ । କେତେ ସମ୍ବତ୍ସର ବାର୍ଦ୍ଧବନ୍ତରେ ବଢ଼ିଲେ ॥
ସେ ମୁନିର ଅଙ୍ଗେ ଭକ୍ତି ଅଗ୍ନିରୂପ ଧରି । ରବିର କିରଣ ଚର୍ମଗତରେ ବହିରି ॥
ତେଣୁ ସେ ଅକ୍ଷୟ ବୀଜ ସାର ହେ ଅର୍ଜ୍ଜୁନ । ଗର୍ଭରେ ପଡ଼ିଲେ ପୁଣି ସେହିକ୍ଷଣି ଜନ୍ମ ॥
ସେହି ବେଦବ୍ୟାସଙ୍କର ଚରଣେ ଶରଣ । ଭଣଇ ଅଚ୍ୟୁତ ଦାସ କରି ହେ କାରଣ ।୩୫।

ଇତିଶ୍ରୀ କୈବର୍ତ୍ତ ଗୀତାୟାଂ ପାରମହଂସ ସଂହିତାୟାଂ ବେଦବ୍ୟାସ ଜନ୍ମ
କଥନେ ହରି ଅର୍ଜ୍ଜୁନ ସମ୍ବାଦେ ନାମ ତ୍ରୟୋଦଶୋଽଧ୍ୟାୟଃ ।

---

## ॥ ଚତୁର୍ଦ୍ଦଶ ଅଧ୍ୟାୟ ॥

ଅର୍ଜ୍ଜୁନ ବୋଇଲେ ପ୍ରଭୁ ଆହୁରି କଥାଏ । ସେ ସତ୍ୟବତୀ ଯେ ବିଭାହେଲା କେଉଂଠାଏ ।୧।
ଏହା ମୋତେ ବୁଝାଇ କହିବା ନାରାୟଣ । ହୃଦୟ ସଂଶୟ ଯିବ ଶୁଣିବି ଶ୍ରବଣ ॥
ଅର୍ଜ୍ଜୁନ ବଚନେ ସେ ବୋଲନ୍ତି ଗିରିଧାରୀ । ଶୁଣ ତୁ ପଣ୍ଡୁର ସୁତ ଚିତ୍ତସ୍ଥିର କରି ॥
ଏକଦିନେ ସତ୍ୟବତୀ ସଖୀଗଣ ସଙ୍ଗେ । ମଧୁବନେ ଖେଳଇ ସେ ନାନା ଖେଳରଙ୍ଗେ ॥

ଶାନ୍ତନୁ ରାଜା ସୋମବଂଶୀ ଚକ୍ରବର୍ତ୍ତୀ । ମୃଗୟା ବିନୋଦ ସାଙ୍ଗ ଦେଖିଲେ ଯେହ୍ନେଠ ॥
ଅତ୍ୟନ୍ତ ସୁନ୍ଦରୀ ସେ ସୁଭଗୀ ମନୋହାରୀ । ସୁଲକ୍ଷଣୀ ପଦ୍ମିନୀ ସେ ଦେବ ଅପସରୀ ॥
ଦାସ ରାଜକେମା ସେ ଯେ ମଧୁବନେ ପଶି । ସଖୀଗଣ ସଙ୍ଗେ ପୁଷ୍ପ ତୋଳଇ ସୁକେଶୀ ॥
ରାଜା ଦେଖି ମନେ ମନେ କଲେକ ଭାଳେଣି । କାହାର ନନ୍ଦନ ଏହୁ କ ଜାତ ଏ ସୁଣି ॥
ନଗନାରୀମାନଙ୍କୁ ସେ ରାଜା ପଚାରିଲେ । କାହାର ଦୁହିତା ପୁଷ୍ପ ତୋଳଇ ବୋଇଲେ
ଶୁଣିଣ ନଗନାରୀଏ ବୋଲନ୍ତି ହେ ନୃପ । ଦାସରାଜାର ନନ୍ଦନ ଅଟେ ଏ ସ୍ୱରୂପ ।୧୦।
ସଖୀଗଣ ସେନ ମଧୁବନରେ ଖେଳଇ । ପରାଶର ମୁନି ସତ୍ୟବତୀ ନାମ ଦେଇ ॥
କଇବର୍ତ୍ତ ଘରେ ସେ ଯେ ହୋଇଛୁ ଜନମ । ଦାସରାଜା ଦୁହିତା ତା ସତ୍ୟବତୀ ନାମ ॥
ଶୁଣିଣ ରାଜନ ଦାସରାଜାକୁ ହକାରି । ଦାସରାଜା ଶୁଣିଣ ଗମନ ବେଗକରି ॥
ଆସି ଶାନ୍ତନୁ ପାଶେ ଉଭା ସେ ହୋଇଲା । ବେନକର ଯୋଡ଼ିଣ ସେ ରାଜାକୁ ପୁଚ୍ଛିଲା ॥
କ ନିମନ୍ତେ ଆଜ୍ଞା ମୋତେ ହେଲ ଚକ୍ରବର୍ତ୍ତୀ । ଅବଧାନ ହୋଇ ମୁଂ ଶୁଣିବି କର୍ଣ୍ଣପାତି ॥
ଶୁଣିଣ ରାଜନ ହସି ବୋଲନ୍ତି ବଚନ । ତୋହର ଦୁହିତା ଗୋଟି ଅମ୍ଭ ଯୋଗ୍ୟମାନ ॥
ଏ କନ୍ୟାକୁ ରାଜନ ଅମ୍ଭଙ୍କୁ ଦେସି ବିଭା । ଆମ୍ଭର ବନିଲ ଶ୍ରଦ୍ଧା ଦେଖିଁ ତାରି ଶୋଭା ॥
ଦାସରାଜା ବୋଇଲା ହେ ଶୁଣିମା ରାଜନ । ଶ୍ରୀମୁଖରେ ଜଣାଏ ବେନେ ହେଉ ଅବଧାନ ॥
ଗଙ୍ଗାର ନନ୍ଦନ ସେ ଯେ ଭୀଷ୍ମ ମହାରଥୀ । ଯାକୁ ବଳ ଡରପୁରେ ନାହାନ୍ତି ଛତ୍ରୀ ॥
ଆପଣତ ଚକ୍ରବର୍ତ୍ତୀ ସେ ଯେ ମହାରଥୀ । ତୁମ୍ଭ ସଙ୍ଗେ ସରିହେବା ନାହିଁ ମୋ ଶକତି ॥
ମୋହର ସମାନେ ରାଜା ଗୋଟିଏ ଆଣିଣ । ତାହାରେ ଦୁହିତା ମୋର ଦେବାକୁ ପ୍ରମାଣ
ମୋହର ଦୁହିତା ତାର ହେବ ପାଟରାଣୀ । ପୁନ ଜନ୍ମ ହେଲେ ରାଜ୍ୟେ ହୋଇବ କାରେଣି
ତୁମ୍ଭଙ୍କୁ ଯେ ଝିଅ ଦେଲେ ଦୁଃଖ ସେ ପାଇବ । ସପତଣୀ ପୁତ୍ର କାହିଂ ରାଜ୍ୟେ ରାଜା ହେବ ॥
ଏମନ୍ତେ ବୋଲନ୍ତେ ରାଜା କଲକ ଯେ ନାସ୍ତି । ଶାନ୍ତନୁ ମନମଧ୍ୟେ କାରୁଣ୍ୟ ଲଭନ୍ତି ॥
ଖେଦମନେ ହସ୍ତିନାରେ ପରବେଶ ହେଲେ । ରାଜସିଂହାସନେ ଗୃହ ଭିତରେ ପଶିଲେ ॥
ପାତ୍ର ମନ୍ତ୍ରୀ ଅମାତ୍ୟ ବାହାରେ ରହିଲେ । ଭିତରିଆ ପହଣ୍ଡ ମଣାଇ ଦେଲେ ଗଲେ ॥
ସ୍ନାନ ଦେବାର୍ଚ୍ଚନ ଆଦି ମଣୋହି ନ କରି । ପଲଙ୍କେ ଶୟନେ କଲେ ମନେ କ୍ଷୋଭଭରି ॥
ଶୁଣି ଭୀଷ୍ମ ମହାରଥୀ ବିଳମ୍ବ ତତକ୍ଷଣ । ରାଜାର ଚରଣେ ଯାଇ ପ୍ରଣାମ କରନ୍ତି ॥
ଚରଣ ତଳେ ବସିଣ ଗୃପନ୍ତି ପୟର । କୋମଳକର ଜଣାନ୍ତି ବଚନ ମଧୁର ॥
କିଂପା ସ୍ନାନ ଦେବାର୍ଚ୍ଚନ ମଣୋହି ନ କର । କିସ ଅପମାନ ମୋତେ କହ ଫେଡ଼ିକରି ।୩୦।
ଶତ୍ରୁ ଭୟେ ରାଜ୍ୟେ କ ପଡ଼ିଲା ପରମାଦ । ମୋର କ ଅପ୍ରାଧ ହେଲା ତୁମ୍ଭ ଶୀରପଦ ॥
ଶୁଣିଣ ରାଜନ ବୋଲେ ଭୀଷ୍ମଦେବ ଶୁଣ । କାଲି ଅମ୍ଭେ ଯାଇଥିଲୁଂ ମୃଗୟାରେ ପୁଣ॥
ମୃଗୟା ବିନୋଦେ ଯେ ସିଂହଳ ଦ୍ୱୀପେ ଯାଇ । ରାଜା ମଧୁବନରେ ପ୍ରବେଶ ହୋଇଲୁଁ
ତାହାର ଦୁହିତା ଏକ ସତ୍ୟବତୀ ନାମେ । ସଖୀଗଣ ସଙ୍ଗେ ସେନ ପୁଷ୍ପ ତୋଳ ଭ୍ରମେ ॥
ସ୍ୱର୍ଗ ଅପସରୀ ସେ ପଦ୍ମିନୀ ଦିବ୍ୟକାନ୍ତି । ମନ୍ଦ ପିକଭାଷୀ ରାଜହଂସ ଜିଣି ଗତି ॥
ମୁନିମନ ମୋହିନୀ ସୁନ୍ଦରୀ ବିମ୍ବାଧରୀ । ଚନ୍ଦ୍ରମାକୁ ବଳ ଶୋଭା ଶ୍ରୀମୁଖ ମାଧୁରୀ ॥
ସିଂହକଟି ପରି କଟିଭଙ୍ଗ ତାର ହୋଇ । ସାଛକୁମ୍ଭ ଜିଣା କୁଚଭାର ଶୋଭା ପାଇ ॥
ତାକୁ ଦେଖି ଅବଶ୍ୟ ମୁଂ ହେଲି ଅଶକତ । କନ୍ୟାର ପିଅରେ ଡକାଇ ଲୁଂ ଅମ୍ଭ କଥ ॥
ଆଜ୍ଞା ଦେଲୁଂ ଦାସରାଜା ଶୁଣ ମୋ ବଚନ । ତୁମ୍ଭର ଏ କନ୍ୟା ମୋତେ ର ପରଦାନ॥

ଶୁଣି ଦାସରାଜା ତହୁଂ ବୋଇଲା ଏମନ । ତୁମ୍ଭଙ୍କୁ ଦେବାରେ ମୋର ନ ଯୋଗାଏ ମନ ॥
ମତ୍ସ୍ୟଗନ୍ଧୀ ବୋଲି ଜନେ ଭର୍ତ୍ସିବେ ଗୋଶମା । ଦୁଃଖ ପାଇବ ଯେବେ ମୋ ସତ୍ୟବତୀ କେମା ।୪୯।
ଏମନ୍ତେ ବୋଲନ୍ତେ ସହୁଂ ନ କଲା ସମ୍ମତ । ଅନ୍ତଃପୁରମାନେ ଅଇଲୁଂ ଯେ ଶୁଣ ଭୀଷ୍ମରଥୀ ॥
ଯେ ବୋଇଲା ମୋ ସନ୍ତୁଷ୍ଟେ ପାଲୁ ବରତ । ଏ ମୋର ସତ୍ୟବତୀଙ୍କ ବିଭା ତାକୁ ଦେବା ॥
ତାର ଘରେ ଝିଅ ମୋର ହେବ ପାଟରାଣୀ । ତାର ପୁତ୍ର ରାଜ୍ୟରେ ହୋଇବ ନୃପମଣି ॥
ଭୀଷ୍ମ ମହାରଥୀ ଶୁଣି ବୋଲନ୍ତି ବଚନ । ଏ କଥାରେ ମାନ ମନେ ନ ଧର ରାଜନ ॥
କାଲି ଯେ ପ୍ରଭାତକାଳେ କନ୍ୟାଦେବ ଆଣି । ବିଭା ହୁଅ ସତ୍ୟବତୀ କନ୍ୟା ନୃପମଣି ॥
କହନ୍ତି ସ୍ନାନ ମଣୋହି ରାଜନେ କରାଇ । ଆପଣାର ପୁରେ ଭୀଷ୍ମ ମିଳିଲେକ ଯାଇ ॥
ଆରଦିନ ପ୍ରଭାତରେ ଭୀଷ୍ମ ମହାବଳୀ । ସଜ ହୋଇକରି ସେ ସିଂହଳ ଦ୍ୱୀପେ ଚଳି ॥
ଭୀଷ୍ମଙ୍କୁ ଦେଖିଣ ଦାସରାଜା ତତପର । କି ନିମନ୍ତେ ବିଜେକଲୁ କହ ମୋ ଆଗର ॥
ଭୀଷ୍ମ ବୋଇଲେ ହୋ ତୁମ୍ଭେ ଶୁଣ ଦାସରାଜା । ତୋହର ଅଟଇ ସତ୍ୟବତୀ ଯେ ତନୁଜା ।୫୦।
ରାଜନ ଯେ ମାଗିବାରୁ ନାସ୍ତି କଲୁ ତାଙ୍କୁ । ତେଣୁକରି ଅଇଲୁ ଯେ ତୁମ୍ଭର ପାଶକୁ ॥
କନ୍ୟା ଦେଇ ଆମ ରାଜା ବେଗହୋଇ ଯିବା । ତାହାଙ୍କୁ ତୋ ସତ୍ୟବତୀ କରିଆସ ବିଭା ॥
ଶୁଣିକରି ଦାସରାଜା ଯୋଡ଼ି କର ଦେଇ । ଶୁଣ ଆହେ ଭୀଷ୍ମ ଗୋସ୍ୱାମୀ କରଇ ବିନତି ॥
ମୋହର ପୁରକୁ ଯେ ରାଜନ ବିଜେକଲେ । ସତ୍ୟବତୀ କନ୍ୟାକୁ ଯେ ମୋତେ ମାଗିଲେ ।
ମୁଂ ବୋଇଲି ରାଜନ ହୋ ଶୁଣ ମୋ ବଚନ । ଭୀଷ୍ମ ସେ ରାଜାର ପୁତ୍ର ଅଛନ୍ତି ବିଦ୍ୟମାନ ॥
ମୋ ଝିଅର ପୁତ୍ର ହେଲେ କପୁଣ ପାଇବ । ମତ୍ସ୍ୟଗନ୍ଧୀ ପୁତ୍ର ବୋଲି କେହି ନ ଦେଖିବ ॥
ଏତେକ ବୋଲନ୍ତେ ରାଜନ କଲେ ଯେ ବିଦାୟ । ମୋର ଅପରାଧ କ୍ଷମାକର ଭୀଷ୍ମରାୟ ॥
ଭୀଷ୍ମ ବୋଇଲେକ ତୁମ୍ଭେ ଦାସରାଜ ଶୁଣ । ଆମ୍ଭର ପୂର୍ବରୁ ଅଛି ଏମନ୍ତ ଭିଆଣ ॥
ଦଶବର୍ଷ ବୟସ ଯେବେ ସଭାରେ ବସିଣ । ଆମ୍ଭକୁ ହକରାଇଲେ ସଭାକୁ ରାଜନ ॥
ଆଜ୍ଞାପାଇ ସଭାମଧ୍ୟେ ଉଭା ହେଲୁଂ ଯାଇ । ବସ ବୋଲି ନ ପାଠ ଯେ ବେଗେ ଆଜ୍ଞା ଦେଇ ॥
ପ୍ରୋହିତ ଦୈବଜ୍ଞ ତହୁଂ କହିଲେ ପ୍ରମାଣ । ବୋଇଲେ ହେ ଭୀଷ୍ମଦେବ ସାବଧାନେ ଶୁଣ ॥
ତୁମ୍ଭେ ବିଭାହେଲେ ତୁମ୍ଭ ପୁତ୍ର ଯେ ହୋଇବ । ପୁତ୍ରକୁ ଦେଖିଣ ତୁମ୍ଭେ ପ୍ରାଣ ବର୍ଜିବ ।୬୨।
ଏମନ୍ତେ ଭିଆଣ ପୂର୍ବୁଂ ହୋଇଛି ନିର୍ମାଣ । ଏ କଥାକୁ ଭୀଷ୍ମଦେବ କର ଅବଧାନ ॥
ଶୁଣି ଆମ୍ଭେ ପ୍ରୋହିତଙ୍କୁ କହିଲୁଂ ପ୍ରମାଣି । ନୃପତି ଚରଣେ ଆମ୍ଭେ ସତ୍ୟକଲୁ ପୁଣି ॥
ବୋଇଲୁଂ ଯେ ବିଭା ଆମ୍ଭେ ନୋହିବାକ କାହିଂ । ଯେତେଦିନ ଏ ପିଣ୍ଡରେ ପ୍ରାଣଥିବ ରହି ॥
ଆହେ ବ୍ରହ୍ମଗୁରୁ ଛୁଇଂ ତୁମ୍ଭର ଚରଣ । ପିତାଙ୍କ ଚରଣେ ସତ୍ୟ କରୁଅଛି ପୁଣ ॥
ରାଜାହିଂ ନୋହିବି ମୁହିଂ କରିଅଛି ସତ୍ୟ । ବିଭା ଆଉ ନୋହିବଇଂ କହିଲି ମୁଂ ତଥ୍ୟ ॥
ଏମନ୍ତ ହେ ସହୁଂ ଦାସରାଜାଙ୍କୁ କହିଲେ । ଶୁଣିଣ ରାଜନ ବଡ଼ ସନ୍ତୋଷ ହୋଇଲେ ॥
ସତ୍ୟବତୀ କନ୍ୟାକୁ ସେ ସଜକରି ଆଣି । ଭୀଷ୍ମଙ୍କର ସନ୍ନିଧିରେ ଦେଲା ତତକ୍ଷଣି ॥
ରଥ ଅଶ୍ୱ ଗଜ ସେ ପଦାତି ବଳ ସୈନ୍ୟ । କନ୍ୟା ଦେଇ ନଗରୁ ସେ ହୋଇଲା ମେଲାଣି ॥
ଦାସରାଜା ଦୁହିତାକୁ ବସାଇ ରଥରେ । ଲକ୍ଷେ ପରିବାର ଦେଲା ତାହା ସଙ୍ଗତରେ ।୬୯।
ପାତ୍ର ମନ୍ତ୍ରୀ ଅମାତ୍ୟ ଚଳାଇଣ ଗଲେ । ଶାନ୍ତନୁ ନୃପତିଙ୍କି ଝିଅ ବିଭା ଦେଲେ ॥
ଜଣାଇଲା ଝିଅ ଦେଇ ପଶିଲା ଶରଣ । ଦଶଦୋଷ କ୍ଷମା ତାର କରିବାକ ପୁଣ ॥

ଦାନ ଯଉତୁକ କସ ଦେବ ହେ ରାଜନ । ତୁମ୍ଭେ ଚକ୍ରବର୍ତ୍ତୀ ରାଜା ଦେବ ମୁଁ କ ଧନ ॥
ଏତେ କହି କରଯୋଡ଼ି ସଅଂପି ହୋଇଲା । ଦୁହିତାକୁ ଲକ୍ଷେକ ଯେ ଗ୍ରାମ ଲେଖିଦେଲା ॥
ଲକ୍ଷେକ ଧେନୁ ଆବର ନିକ୍ଷେକ ମହିଷୀ । ଅଶ୍ୱ ଗଜ ଲକ୍ଷେ ଦେଲା ଲକ୍ଷେ ଧାଇ ଦାସୀ ॥
ଏମନ୍ତେଣ ସତ୍ୟବତୀ ବିଭା ଯେ ହୋଇଲା । ଅଚ୍ୟୁତାନନ୍ଦ ଯେ ଏହା ଗୀତରେ ଭଣିଲା ।୧୭।

ଇତିଶ୍ରୀ କୈବର୍ତ୍ତ ଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ ସତ୍ୟବତୀ ବିବାହ କଥନେ ହରି ଅର୍ଜୁନ ସମ୍ବାଦେ ନାମ ଚତୁର୍ଦ୍ଦଶୋଽଧ୍ୟାୟଃ ।

---

## ॥ ପଞ୍ଚଦଶ ଅଧ୍ୟାୟ ॥

ଶୁଣିଲୁ ଅର୍ଜୁନ ସତ୍ୟବତୀ ବିଭା ବାଣୀ । ମନରୁ ଯୁଚିଲା ଟିକି ସଂଶୟ ତୋ ପୁଣି ।୧।
ଅର୍ଜୁନ ବୋଇଲେ ପ୍ରଭୁ ଆହୁରି କଥାଏ । ସେ ସତ୍ୟବତୀଙ୍କ ବିଭା ହୋଇଲେ ଯେ ଯେବେ ॥
ପୁତ୍ର ଦୁହିତା ତାହାର ହେଲା କି ନୋହିଲା । ଏ କଥାଟି ମହାବାହୁ କହିଦେବା ଭଲ ॥
ଶ୍ରୀକୃଷ୍ଣ ବୋଇଲେ ବାବୁ ଶୁଣ ତୁ ଅର୍ଜୁନ । ସେ ସତ୍ୟବତୀର ଗର୍ଭୁ ପୁତ୍ର ହେଲେ ଜନ୍ମ ॥
ଚିତ୍ର ବିଚିତ୍ରାଙ୍ଗ ବୋଲି ହେଲା ତାଙ୍କ ନାମ । ବିଚିତ୍ରାଙ୍ଗ ଜ୍ୟେଷ୍ଠଭ୍ରାତ ଚିତ୍ରାଙ୍ଗ ଯେ ସାନ ॥
ଏମନ୍ତେ ସେ ନୃପତିର ଜନ୍ମିଲେ ଆତ୍ମଜ । ବେଳୁଁ ବେଳ ବଢ଼ିଲେ ସେ ହୋଇ ମହାତେଜ
ଦିନୁଁଦିନ ବଢ଼ିଲେ ସେ ହୋଇ ବଳବନ୍ତା । ଦେଖିଣ ନୃପତି କଲେ ତାଙ୍କ ବିଭା ଚିନ୍ତା ॥
ଅମ୍ବା ଅମ୍ବାଳିକା ବୋଲି କନ୍ୟାକୁ ବରିଲା । ଦୁଇ କୁମରଙ୍କୁ ରାଜା ବିଭା କରାଇଲା ॥
ଏଥୁ ଅନନ୍ତରେ କେତେଦିନ ବହିଗଲା । କାଳବଶେ ଶାନ୍ତନୁ ଶରୀର ଛାଡ଼ିଲା ॥
ବିଚିତ୍ରାଙ୍ଗ ରାଜ୍ୟ କଲା ସେ ସୋମବଂଶରେ । ଚିତ୍ରାଙ୍ଗ ଯେ ନାଶ ଗଲା ଘୋର ସଂଗ୍ରାମରେ ।୧୦।
ବିଚିତ୍ରାଙ୍ଗ ପୁଣି କିଛୁଦିନ ରାଜ୍ୟ କଲା । ରାଜଯକ୍ଷ୍ମା ବ୍ୟାଧିରେ ସେ ପ୍ରାଣ ବିସର୍ଜିଲା ॥
ବେନି ଭାଇଙ୍କର ପୁତ୍ର ଦୁହିତା ନଥିଲା । ସୋମବଂଶର ଯେ କୁଳ ନିର୍ଗୋତ୍ର ହୋଇଲା ॥
ସେଥୁଅନ୍ତେ ସତ୍ୟବତୀ ଡକାଇ ପୁତ୍ରକୁ । କହିଲେ ଗୁପତ କରି ସେ ପୁତ୍ର ଭୀଷ୍ମକୁ ॥
ତୋତେ ରାଜକୁଳେ କେହି ନାହିଁ ସରିସମ । ତୁହି ଭୀଷ୍ମ ପାଳ ଏବେ ଧର୍ମେ ରାଜ୍ୟ ଗ୍ରାମ ॥
ତୁମ୍ଭେ ରାଜା ହୋଇ ବାବୁ ସମ୍ଭାଳ ଏ ମହୀ । ତୁମ୍ଭ ବିନା ରାଜ୍ୟେ ରାଜା ଆଉ କେହି ନାହିଁ ॥
ଶୁଣିଣ ଭୀଷ୍ମ ବୋଇଲେ ଶୁଣ ମାତା ମୋର । ମୁଁ ଯେ ସତ୍ୟ କରିଅଛି ପିତାଙ୍କ ଛାମୁରେ ॥
ତୁମ୍ଭଙ୍କ ରାଜନ ବିଭା ହୋଇବାର ବେଳେ । ସତ୍ୟ କଲି ରାଜା ମୁହିଁ ନୋହିବି ପୃଥ୍ୱୀରେ ॥
ବିଭାହିଁ ନୋହିବି ବୋଲି କରିଅଛି ସତ୍ୟ । ସତ୍ୟଭଗ୍ନ ହେବାର ମୋ ନୁହଇ ଉଚିତ ॥
ସତ୍ୟବତୀ ବୋଲେ ଶୁଣ କଥାଏକ ମୋର । କନ୍ୟାଙ୍କ ଅନ୍ତଃପୁରକୁ ତୁମ୍ଭେ ବିଜେ କର ॥
ତୁମ୍ଭର ପୁତ୍ର ହେଲେ ସେ ରାଜ୍ୟେ ହେବ ରାଜା । ସୁଖେଣ ପାଳିବ ଏହି ରାଜ୍ୟ ଜନ ପ୍ରଜା ।୨୦।
ଭୀଷ୍ମ ବୋଲେ ମାତା ଏହା କେଭେଂ ନ କରିବି । ସତ୍ୟଭଗ୍ନ ହେଲେ ମୁହିଁ ନର୍କରେ ପଡ଼ିବି ॥
ଅନ୍ୟ କେହି ଥିଲେ ମାତା ଏମନ୍ତ ବିଚାର । ମୋହରେ ଏ କଥା ନୁହେ କହିଲି ଛାମୁରେ ॥
ସତ୍ୟବତୀ ବୋଲେ ବାବୁ ଶୁଣ ଭୀଷ୍ମବୀର । ବାଳୁତକାଳେ ଭେଟିଲେ ମୋତେ ପରାଶର ॥
ପୁଷ୍ପ ତୋଳୁଥିଲି ମୁହିଁ ମଧୁବନେ ପଶି । ଋଷି ଯେ ଭେଟିଲେ ମୋତେ ତୋଟା ଠାବେ ଆସି ॥
ବୋଇଲେ ଗୋ ଦେଖି ତୋତେ ବଳିଲା ମୋ ଆଶ । ଦେହ ଦେଇ ବାଳା ପୂର୍ଣ୍ଣ କର ଅଭିଲାଷ ॥

ମୁଁ ବୋଇଲି ଅଜ୍ଞାନ ବାଳୁତ ମୁଁ ଅଟଇ । ତୁମ୍ଭେ ଯାହା କହୁଅଛ କିଛୁ ନ ଜାଣଇ ॥
ହସିବେ ବାଳୁତ ଦାସରାଜାର ନନ୍ଦନୀ । ତୁମ୍ଭେ କେହ୍ନେ ଏ କଥା କହୁଛ ମାହାମୁନି ॥
ପରାଶର ବୋଇଲେ ତୁ ହୁଅ ନବଯୁବା । ଋଷିଙ୍କର ବଚନ କେ ମେଣ୍ଟି ପାରେ ଅବା ॥
ତତକ୍ଷଣେ ନବଯୁବା ରୂପ ମୋ ହୋଇଲା । ସର୍ବେ ଏ ଦେଖିବେ ବୋଲି ଲଜ୍ଜା ପ୍ରକାଶିଲା ॥
ଋଷିଙ୍କି ବୋଇଲି ସର୍ବ ଜନେ ସଙ୍ଗେ ଛନ୍ତି । କେମନ୍ତେ ତାହାଙ୍କ ଅଗେ ରହିବି ମୁଁ ଏଥି ।୩୦।
ପରାଶର ବୋଇଲେ ଗୋ କେହି ନ ଦେଖିବ । ଆମ୍ଭ ଆଜ୍ଞା ପରମାଣେ କୁହୁଡ଼ି ଘୋଟିବ ॥
କହୁ କହୁ ତତକ୍ଷଣେ କୁହୁଡ଼ି ଘୋଟିଲା । ଅନଙ୍ଗ ବିକାରେ ମୋର ଅଙ୍ଗ ଉଲୁଟିଲା ॥
ସେ ମୁନିଙ୍କ ସଙ୍ଗେ ମୁହିଁ ରମିଲଇଁ ପୁଣି । ତାଙ୍କ ବୀର୍ଯ୍ୟେ ଜାତ ହେଲେ ବ୍ୟାସ ମହାମୁନି
ଅବିବାହକାଳୁ ମୋର ବ୍ୟାସମୁନି ପୁତ୍ର । ତୋ ଆଗେ କହିଲି ସେହା ସେକାଳ୍ଡ ଗୁପତ
ବ୍ୟାସଙ୍କ ବୀର୍ଯ୍ୟରୁ ଯେତେ ଉତପତ୍ତି ହେଲେ । ବ୍ରହ୍ମ କଇବର୍ତ୍ତ ବୋଲି ନାମ ଭଣାଇଲେ ॥
ମାତା କୈବର୍ତ୍ତିନୀ ତାର ପିତା ଯେ ବ୍ରାହ୍ମଣ । ବ୍ରହ୍ମ କଇବର୍ତ୍ତି ବୋଲି ତେଣୁ ସେ ଭଆଣ ॥
କନ୍ଦରେ ପଇତା ହସ୍ତେ ବାସୁକିର ଫାଶ । ଦାସରାଜା ବୀର୍ଯ୍ୟରୁ ଯେ ନ୍ରିଆଣିଆ ଅଂଶ ॥
ଏହିମତେ ବେଦବ୍ୟାସ ଅଂଶ ଯେ ବଢ଼ିଲେ । ସପ୍ତଦ୍ୱୀପା ପୃଥିବୀରେ ବିଖ୍ୟାତ ହୋଇଲେ ॥
ଶୁଣି ଶୁକଦେବ ଯେ ଆନନ୍ଦ କଲେ ମନ । ବୋଇଲେ ଯେ ବ୍ୟାସମୁନି ବିଷ୍ଣୁ ଅଂଶେ ଜନ୍ମ ॥
ବିଷ୍ଣୁ ଅଂଶ ଦେହ ଯେ ଜନମ ହେଲେ ଆସି । ଶୁକଦେବ ସର୍ବଶାସ୍ତ୍ର କଲେକ ବିଶେଷି ।୪୦।
ତାଙ୍କ ବୀର୍ଯ୍ୟ ଜାତହେବେ ଯେବଣ କୁମର । ପୃଥିବୀର ମଧ୍ୟରେ ସେ ହୋଇବେ ନୃପବର ॥
ସତ୍ୟବତୀ ଶାନ୍ତନୁର ଗୁପତ ସମ୍ଭାଷ । ଶୁଣିକରି ଅର୍ଜୁନ ପୁଚ୍ଛଇ ପୀତବାସ ॥
ସୋମବଂଶ ରାଜନ ଯେ ଯୁଧିଷ୍ଠିର ହେଲେ । ଏ ଅଂଶ ହୋଇଲା ବଂଶ କପରି ଜନ୍ମିଲେ ॥
ଦୁର୍ଯ୍ୟୋଧନ ରାଜା ଅନେଶତ ଭାଇ ପୁଣ । କେମନ୍ତ ପ୍ରକାରେ ସେ ହୋଇଲେ ଉତପନ୍ନ ॥
ଏହିକଥା ମହାପ୍ରଭୁ ବୁଝାଇ କହିବ । ତୁମ୍ଭବିନା ଏ ସନ୍ଦେହ ଆଉ କେ ଫେଡ଼ିବ ॥
ଶୁଣିକରି ଶ୍ରୀହରି କହିଲେ ଅଳ୍ପ ହସି । ତୁମ୍ଭେ ଯେତେଁ କନ୍ଦ ହେଲ କହିବା ବିଶେଷି ॥
ଏ କଥାକୁ ଅର୍ଜୁନ ହୋ ସାବଧାନେ ଶୁଣ । ସତ୍ୟବତୀଙ୍କର ପୁତ୍ର ବ୍ୟାସମୁନି ଜାଣ ॥
ସତ୍ୟବତୀ ବ୍ୟାସଙ୍କୁ ଯେ ସୁମରଣା କଲେ । ତତକ୍ଷଣେ ମାତା ପାଶେ ବ୍ୟାସ ଯେ ମିଳିଲେ ॥
ମାତାଙ୍କୁ ଯେ ବ୍ୟାସମୁନି କଲେ ନମସ୍କାର । କଲ୍ୟାଣ କରି ବୋଇଲେ ବସରେ କୁମର ॥
ବ୍ୟାସମୁନି କହେ ମାତ ଶୁଣ ମୋ ଉତ୍ତର । କି କାରଣେ ସୁମରିଲୁ କହ ମୋ ଆଗର ।୫୦।
ସତ୍ୟବତୀ ବୋଲେ ଶୁଣ ବ୍ୟାସ ମୁନିବର । ସୋମବଂଶ ନିଛନ୍ନ ଯେ ହୋଇଲା ଆମ୍ଭର ॥
କୁଳରେତ ରାଜାହୋଇ ଆଉ କେହି ନାହିଁ । ଏହିଠାରୁ ସୋମବଂଶ ବୁଡ଼ିଲାକ ମହୀ ॥
ତୁ ଯେ ମୋର ଜ୍ୟେଷ୍ଠପୁତ୍ର ବାଳୁତର କାଳେ । ପରାଶର ବୀର୍ଯ୍ୟେ ଜାତ ହେଲୁ ଋଷିକୁଳେ ॥
ତୋର ମାତାମହ ଦାସରାଜା ତଦଅନ୍ତେ । ଶାନ୍ତନୁ ନୃପତକ ବିଭାଦେଲେ ମୋତେ ॥
ମୋର ଗର୍ଭେ ବେନିପୁତ୍ର ହୋଇଲେକ ଜାତ । ଚିତ୍ରାଙ୍ଗଦ ବିଚିତ୍ରବୀର୍ଯ୍ୟ ବୋଲି ନାମ ତାଙ୍କ ଖ୍ୟାତ ॥
କିଛିଦିନ ରାଜ୍ୟପାଳି ସେହୁ ନାଶଗଲେ । ପୁତ୍ର ଦୁହିତା ତାଙ୍କର କିଛିହିଁ ନୋହିଲେ ॥
ସୋମବଂଶ ଏ ପୃଥ୍ୱୀରେ ରଖ ବ୍ୟାସମୁନି । ଅନ୍ତପୁରେ ଅଛନ୍ତି ଯେ ତାହାଙ୍କ କାମିନୀ ॥
ତାହାଙ୍କ ପୁରକୁ ତୁମ୍ଭେ କର ଯେ ଗମନ । ଏମନ୍ତ ବୋଲିଣ ମାତା କହିଲେ ବଚନ ॥
ଶୁଣି ବ୍ୟାସମୁନି ଭୂମି ଦୃଷ୍ଟେ ଚାହିଁଲେ । ଏ କଥା କେମନ୍ତେ ହେବ ମାତାଙ୍କୁ ପୁଚ୍ଛିଲେ ।

ଭାଇବୋଲି ବୋଲ ସେ ଯେ ସଂସାରେ ମାନତା । କେମନ୍ତେ ମୁଂ ତାଙ୍କ ଅଙ୍ଗ ଛୁଇଁବି ଗୋ ମାତା ।
ଦେଖୁ ଦେଖୁ ମୁହିଂ ତାଙ୍କ ବଦନକୁ ବ୍ହିଂ । ବଡ଼ ମୁଣ କଥା ମୁଂ କେମନ୍ତେ କହିବଇଂ ॥
କେମନ୍ତେ ଏ ଲଜ୍ଜାକଥା ମୁଖରେ କହିବ । ଭାଇବୋଲି ସଙ୍ଗେ ମୁହିଂ ବିରତ କରିବ ।
କୁଳବୁଡ଼ିଗଲେ ମୋର କିସ ଅବା ଛିବ । ମୋ ଦେହେ ଂକଳଙ୍କ ହେଲେ ଯମ ଜଙ୍ଘା ସିବ
ସୋମବଂଶ କୁଳ ପଛେ ବୁଡ଼ିଗଲେ ଯାଉ । ଏମନ୍ତ ନନ୍ଦିତ କଥା ମାତା କପାଂ କହୁ ॥
ମୁହିଂ ଯେବେ ତାଙ୍କ ସଙ୍ଗେ କରିବି ରମଣ । ପୃଥ୍ୱୀରେ ସ୍ଥାନ ବଡ଼ ନ ମାନିବେ ଜନ ॥
ଈଶ୍ୱରର ମାୟା ବିନା ଏସବୁ ଭିଆଣ । ସଂସାର ଚଳିବା ପାଇଂ କରିଅଛୁ ଜାଣ ।୭୮
ସତ୍ୟବତୀ ବୋଲେ ପୁତ୍ର ଶାସ୍ତ୍ରେ ଅଛି କହି । କୁଳଧର୍ମ ମାନତା ନ ମନ୍ତେ ଅଛି ହୋଇ ॥
ଦେଖୁ ଦେଖୁ କୁଳ ଯେବେ ନିର୍ମୂଳ ହୋଇବ । ସୋମବଂଶ ନାମ ଯେ ସଂସାରୁ ବୁଡ଼ିଯିବ ॥
ବ୍ୟାସମୁନି ବୋଲେ ତୁମ୍ଭେ ଶୁଣ ମୋର ମାତା । ଜ୍ୟେଷ୍ଠପୁତ୍ର ମୁହିଂ ସେ କନିଷ୍ଠ ମୋର ଭ୍ରାତା ॥
ସ୍ୱଭାବେ ତ ମାନ୍ୟ ମୁହିଂ ଅଟଇ ତାଙ୍କର । କେମନ୍ତ କରି ଛୁଇଂବି ତାହାଙ୍କ ଶରୀର ॥
ମାତା ଯେ ବୋଇଲେ ବାବୁ କିଛି ଦୋଷ ନାହିଂ । ତ୍ରେତାଯୁଗ ଶାସ୍ତ୍ରରେ କଥା ଅଛି ରହି ।୭୯।
କୁଳଧର୍ମ ନମନ୍ତେ ଏ କଥାମାନ କରି । ଏଥେ କିଛି ଦୋଷ ନାହିଂ ଶାସ୍ତ୍ର ବିଚାରି ॥
ମୁନି ଯେ ସନ୍ନ୍ୟାସୀ ଦଣ୍ଡୀ ବୈଷ୍ଣବ ବ୍ରାହ୍ମଣ । ସନ୍ତାନ ନମନ୍ତେ ଯେ କରନ୍ତି ନିମନ୍ତ୍ରଣ ॥
ଆପଣାର କ୍ଷେତ୍ରେ ପରଠାରୁ ବୀଜ ବୁଣି । ଯାହାର ସେ କ୍ଷେତ ହୋଇ ତାହା ନାମ ଭଣି
ଅନ୍ୟର କଥା ଏ ପୁତ୍ର କହିଅଛି ଶୁଣ । ସୁନାରୂପା ଦେଇ ବୀଜ କିଣନ୍ତି ଯେ ପୁଣ ॥
ତହିଂରୁ ଯେ ପୁତ୍ର ପୁଣି ହୁଅଇଟି ଜାତ । ଆପଣାର କୁଳଧର୍ମ ରଖଇ ନିଶ୍ଚିତ ॥
ଦୁହିତାର ପତିକି ଯେ ପୁତ୍ର ସମେ ଗଣି । କୁଳଧର୍ମରେ ସେହି ଅଟଇ କାରଣୀ ॥
ନୋହିଲେ ପରର ପୁତ୍ର ଗୋଟିଏ ପାଳିବ । ଆପଣାର ଗୋତ୍ରେ ତାକୁ ବିଭା କରାଇବ ॥
ତାହାଠାରୁ ପୁଣି ଜନ୍ମ ହୋଇଲେ କୁମର । କୁଳଧର୍ମ ରକ୍ଷା କରି କରଇ ସଂସାର ॥
ଏହିମନ୍ତେ ପିତୃଶ୍ରାଦ୍ଧ ଯେ ପୁଣି ଦିଅଇ । ଏମନ୍ତ ପ୍ରକାରେ ପାଠ ଶାସ୍ତ୍ରେ ଅଛି କହି ।୮୦।
ତୋହର କଥାକୁ ତୁହି ହେଜରେ କୁମର । ତୋତେ ଜାତ କଲି ମୁହିଂ ବାଳୁତ କାଳର ॥
ଅବିବାହୀ ହୋଇ ମୁହିଂ ଥିଲି ପିତା ଘରେ । ତୋତେ ଜାତ କଲି ପରାଶରଙ୍କ ବୀର୍ଯ୍ୟରେ ॥
ଏହିମତ ଦେଖ ପୁତ୍ର ସଂସାର ଭିଆଣ । ଅପେ ମାୟାଖେଳ ଏହା କରେ ନାରାୟଣ ॥
କେତେଦିନ ଅବା ଦେହ ମଧ୍ୟରେ ରହିଇ । ମାୟା ଖେଡ଼ିମାନ ଏହି ଦେହରେ ଖେଳଇ
ସଂସାରର ଶୋଭାପାଇଂ ବିଧାତା ସର୍ଜିଛି । ଏକ ପୁରୁଷକୁ ଏକ ସ୍ତ୍ରୀ ସୃଜିଅଛି ॥
ମାୟାସପତଣୀ ନାରୀ ନୁହଇ କାହାର । ବାଳୁତ ଖେଳର ମତ କରିଛି ଈଶ୍ୱର ॥
ମାୟାଦେହ ଗଲେ ଆତ୍ମା କାହିଂରେ ରହିବ । କୁଳର ସନ୍ତାନ ଥିଲେ ନାମ ନାଟିଥିବ ॥
ଯାହାର ସନ୍ତାନବନ୍ତ ନାହିଂରେ କୁମର । ତାହାର କି ନାମ ଅଛି ମହୀମଣ୍ଡଳର ॥
ଯେଉଂରୂପେ ଆଣ୍ଠୁ ଜୁଡ଼ା ଆଣ୍ଠୁ କୁଡ଼ୀ ଥାଇ । ମୃତ୍ୟୁ ହୋଇଲରୁ ତାଙ୍କ ନାମ ବୁଡ଼ିଯାଇ ॥
ଏହିମତ ମାୟା ସଂସାରର ଖେଡ଼ିଘର । ଯାହାର ଏ ଖେଡ଼ି ନୋହେ ଅଗାଡ଼ି ସେ ନର
ମୋର ବୋଲ କରି ପୁତ୍ର ଯାଅ ତତପର । ତୁମ୍ଭଙ୍କୁ ବୃହିଂଣ ବୋଲି ଅଛନ୍ତି ମୋହର ।୮୧।
ମାତା ମୁଖୁଁ ଏହି ବାଣୀ ଶୁଣି ବେଦବ୍ୟାସ । କାମିନୀକାମରେ ମନ ହୋଇଲା ହରଷ ॥
ସତ୍ୟବତୀ ଦାସୀକି ଯେ ପଠିଆଇ ଦେଲେ । ଅମ୍ବାଳିକା ପୁରେ ଯାଇ ଜଣାଅ ବୋଇଲେ ॥
ବ୍ୟାସଙ୍କର କଥାମାନ ବୁଝାଇ କହିବୁ । ଏ କଥାରେ ତାହାଙ୍କୁ ସମ୍ମତ କରାଇବୁ ।୮୨।

ଏହି ରତି ପୁତ୍ରର ଅକ୍ଷୟ ବୀଜ ସାର । ଗର୍ଭରେ ପଡ଼ିଲେ ପୁତ୍ର ହୋଇବ ତୋହୋର ॥
ଏମନ୍ତ ବୋଲିଣ ତାକୁ ପ୍ରବୋଧ କରିବୁ । ବ୍ରହ୍ମଋଷି ବୋଲି ତାଙ୍କୁ ଭୟ ଦେଖାଇବୁ ॥
ଶୁଣିକରି ଦାସୀ ତହୁଂ ବେଗେ ଚଳିଗଲା । ଅମ୍ବାଳିକା ସନ୍ନିଧିରେ ବୃତ୍ତାନ୍ତ କହିଲା ॥
ମାତାଙ୍କ ବଚନ ବ୍ୟାସ ଶିରପରେ ଧରି । ଅମ୍ବାଳିକା ପୁରକୁ ବିଜୟ ସେହୁ କରି ॥
ଯାଇଣ ପ୍ରବେଶ ହେଲେ ଅମ୍ବାଳିକା ପୁରେ । ବଚନ ନ ସ୍ଫୁରେ କିଛି ରହିଲେ ଲଜ୍ଜାରେ ॥
ଏହିମତ କେତେ ଦଣ୍ଡ ତହୁଂ ବହିଗଲା । ଅମ୍ବାଳିକା ଋଷିଙ୍କର ସମ୍ଭାଷ ନୋହିଲା ।୧୦୦।
ତାହା ଶୁଣି ସତ୍ୟବତୀ ଏଣୁ ଶାପ ଦେଲେ । ରତିକାଳେ ଆରେ ଲଜ୍ଜା ମଣିବୁ ବୋଇଲେ ॥
ସୁରତର ଅନ୍ତେ ତୁହି ପୁଣି ଜନମିବୁ । ଏହିମତ ଏ ଶରୀରେ ମଳିଣ ରହିବୁ ॥
ସତ୍ୟବତୀ ଶାପେ ଲଜ୍ଜା ହୁଅନ୍ତେ ଅନ୍ତର । ଅମ୍ବାଳିକା ଧରେଯାଇ ବ୍ୟାସଙ୍କ ପୟର ॥
ବ୍ୟାସମୁନି ଦେଖି ପୁଣି ମୁଣ୍ଡେ ବସ୍ତ୍ର ଦେଇ । ଯେକାଳେ କନ୍ୟା ସହି ଅଙ୍ଗସଙ୍ଗ ହୋଇ ॥
କାରଣ ଯୋଗରେ ସହୁଂ ହେଲା ଗର୍ଭବାସ । ସେହିକ୍ଷଣି ଜନମ ହୋଇଲା ବାଳଶିଷ ॥
ବେଦବ୍ୟାସ ଆସିଣ ସେ ବାହାରେ ବସିଲେ । ସତ୍ୟବତୀ ବୋହୂଙ୍କ ପାଶକୁ ବିଜେକଲେ ॥
ଅନ୍ଧହୋଇ ଜନମ ଯେ ହୋଇଛି କୁମର । ସତ୍ୟବତୀ କୁମରକୁ ଦେଖି ତତପର ॥
ଅନ୍ଧଟିଏ ବୋଲି ସତ୍ୟବତୀ ଯେ କହିଲେ । ଧୃତରାଷ୍ଟ୍ର ବୋଲିକରି ନାମ ତାର ଦେଲେ ॥
ଏ ପୁତ୍ରେ ନୃପତପଣ ନ ଯୋଗାଏ ବାବୁ । ସୋମବଂଶ କୁଳରକ୍ଷା ତୁହି ଯେ କରିବୁ ।୧୦୧।
ସତ୍ୟବତୀ ବୋଲଇ ଶୁଣ ବୋହୂ ମୋର । କଉଂ ବେଶଧରି ପୁତ୍ର ଗଲା ତୋ ପାଶର ॥
ଅମ୍ବାଳିକା ବୋଲେ ମୁଣ୍ଡେ ବସ୍ତ୍ର ଦେଇଥିଲେ । ମୁଣ୍ଡକୁ ନ ଗ୍ରହୁଂ ମୋର ସଙ୍ଗରେ ମାତିଲେ ॥
ସତ୍ୟବତୀ ଶୁଣି ପୁଣି ବୋଇଲେ କୁମରେ । ଲଜ୍ଜଭୟ ଛାଡ଼ି ଏବେ ଚଳ ଅନ୍ତଃପୁରେ ॥
ମାତାଙ୍କ ବଚନ ଶୁଣି ବ୍ୟାସ ଯେ ଉଠିଲେ । ଚନ୍ଦନ କର୍ପୂର ଅଙ୍ଗେ ସୁବାସ ମଣ୍ଡିଲେ ॥
ଅମ୍ବାଳିକା ପୁରେ ବ୍ୟାସ ହୋଇଲେ ପ୍ରବେଶ । ପୁଣି ତାର ସଙ୍ଗତରେ କଲେ ସହବାସ ॥
ତାହା ଗର୍ଭୁ ପୁତ୍ର ପୁଣି ହୋଇଲା ଜନମ । ଦେହ ତାର ପାଣ୍ଡୁବର୍ଣ୍ଣ ଦେଲେ ପାଣ୍ଡୁ ନାମ ॥
ଏମନ୍ତେ ଯେ ଜନ୍ମ ମୁନି ବାର୍ଯ୍ୟେ ବେଦନପୋଏ । ଦାସୀଗର୍ଭୁଂ ଜନମିଲା ଏକଇ ତନୟେ ॥
ବିଦୁର ବୋଲିଣ ନାମ ଦେଲେ ଯେ ତାହାର । ଶୁଣ ହେ ଅର୍ଜ୍ଜୁନ ତୁମ୍ଭ ଜନ୍ମ ସମାଚାର ॥
ଧୃତରାଷ୍ଟ୍ର ପାଣ୍ଡୁ ଦାସୀପୁତ୍ର ଯେ ବିଦୁର । ତିନିପୁତ୍ର ଜନମ ହୋଇଲେ ବ୍ୟାସଙ୍କର ॥
ଧୃତରାଷ୍ଟ୍ର ଜ୍ୟେଷ୍ଠପୁତ୍ର ବସିଥାଇ ଘରେ । ପାଣ୍ଡୁ ଯେ ନୃପତପଣ କରଇ ରାଜ୍ୟରେ ॥
ପାଣ୍ଡୁଠାରୁ ତୁମ୍ଭେ ହୋଇଅଛ ଉତପନ୍ନ । ଯୁଧିଷ୍ଠିର ଆଦିକରି ଯେ ପଞ୍ଚନନ୍ଦନ ॥
କହିବାକ ଆଦିଅନ୍ତ କରିଣ ତୁମ୍ଭର । ଭଣଇ ଅଚ୍ୟୁତଦାସ ପ୍ରଭୁ ରକ୍ଷାକର ।୧୬୦।

ଇତିଶ୍ରୀ କୈବର୍ତ୍ତ ଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ ପାଣ୍ଡୁ ଧୃତରାଷ୍ଟ୍ର ବିଦୁର ଜନ୍ମ କଥନେ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ନାମ ପଞ୍ଚଦଶୋଽଧ୍ୟାୟଃ ।

---

## ॥ ଷୋଡ଼ଶ ଅଧ୍ୟାୟ ॥

ତୁମ୍ଭର ମାତାଙ୍କ କଥା ଶୁଣ ହୋ ଅର୍ଜ୍ଜୁନ । କୋନ୍ତିଭୋଜ ନନ୍ଦିନୀ ସେ ଭୋଜବଂଶେ ପୁଣ ।୧।
ମିଳିଲେ ଦୁର୍ବାସା ମୁନି କୋନ୍ତିଭୋଜ ପୁରେ । ଚତୁର୍ମାସ୍ୟା ରହିଲେ ସେ ରାଜାଙ୍କ ନଗରେ ॥
କୋନ୍ତିଭୋଜ ରାଜ୍ୟେ ଋଷିଙ୍କର ଆଗେ କହି । କୋଇନ୍ତା ନନ୍ଦିନୀକ ସେ ସମର୍ପିଲେ ନେଇ ॥

ତୁମ୍ଭଙ୍କୁ ଏ ପ୍ରତିଦିନ ସେବା କରୁଥିବ । ତୁମ୍ଭର ସେବାକୁ ଯେତେ ଦ୍ରବ୍ୟ ଲୋଡ଼ାହେବ ॥
ଯେତେ ଦ୍ରବ୍ୟ ଲଗିବ ତା କହିଦେବା ମୁନି । ତତକ୍ଷଣେ ଆଣିଦେବ ଏ ମୋର ନନ୍ଦିନୀ ॥
ଏତେକ କହିଣ ରଜା ନ ରହି ନବରେ । ବିଷସ୍ୱାବଶରେ ରଜା ମୁନିଙ୍କ ପାଶୋରେ ॥
ଏହିମତ ପାହିଲରୁ ଚତୁର୍ମାସ୍ୟାକାଳ । ମୁନିମନ୍ଦ୍ରର ବିଚାରିଲେ ଯିବା ବଦ୍ରିଆଳ ॥
ରଜା ଆଗେଁ ଦୁର୍ବାସା ଯେ ମିଳିଲେକ ଯାଇ । ଆମ୍ଭେ ଯାଉଅଛୁଂ ବୋଲି ରଜା ଆଗେ କହି ॥
ରଜା ବୋଲେ କେତେବେଳେ ଅଇଲ ଗୋସାଇଂ । ମୁନି ବୋଲେ ହେ ରଜନ ଚତୁର୍ମାସ୍ୟା ରହି ॥
ଶୁଣି ରଜା ଗ୍ୟାଂନ ପୁଣି ପାଇଲା ତାହାର । ବିଷସ୍ୱାରେ ମୁନି କଥା ଗଲା ମୋ ପାଶୋର ॥
ଦୁର୍ବାସା ମୁନିଙ୍କି ପୁଣି ବିଦାକରି ରଜା । ଆପଣା ରଜ୍ୟରେ ପାଳିଲେ ସେ ଜନପ୍ରଜା ॥
ଋଷିଙ୍କ ଗମନ ଦେଖି କୁନ୍ତୀ ପଛେ ଯାଇ । ଋଷି ଚାହିଂ ଦେଲେ ପଛେ କୋଇନ୍ତା ଗୋଡ଼ାଇ ।
କନ୍ୟାକୁ ବୋଇଲେ ତୁ କପାଂଇ ଆସୁଅଛୁ । ଏହିଠାରୁ ରହ ତୁହି ଆମ୍ଭେ ଯାଉଅଛୁ ।୧୩।
ଶୁଣିଣ କୋଇନ୍ତା ବୋଲେ ଋଷିଙ୍କି ବଚନ । ତୁମ୍ଭ ପାଦ ସେବ ମୋ ନଷ୍ଟଲେ ଗଲା ଦିନ ॥
ଏତେ ବୋଲିକରି ମୁନି ଚରଣେ ଲୋଟିଲା । ଉଠ ବୋଲନ୍ତେଣ ଆଉ କେତେବେଁ ନ ଉଠିଲା ॥
ମୁନି ବିଚାରିଲେ ଏ ତ ରଜାର କୁମାରୀ । କେହ୍ନେ ମନ ତୋଷିବ ତା ଏମନ୍ତ ବିଚାରି ॥
ଏ ମହୀମଣ୍ଡଳେ ଯେତେ ନାରୀ ଜନ୍ମହୋନ୍ତି । ସୁନ୍ଦର ପୁରୁଷ ଲୋଡ଼ୁଥାଇ ତାଙ୍କ ମତି ॥
ଏସନ ବିଚାରି ସେ ସ୍ଫଟିକ ଜପାମାଳି । କୋଇନ୍ତା ହସ୍ତରେ ମୁନି ଦେଲେ ଏକ ତୋଳି ॥
ବୋଇଲେ ଏ ମାଳା ଗୋଟି ଦରେ ରଖିଥିବୁ । ଯାହା କହୁଅଛୁଂ ତୋତେ ତେମନ୍ତ କରିବୁ ॥
ରଜସ୍ୱଳା ହେବାର ତୋ ଷଷ୍ଠଦିନ ଯିବ । ସପ୍ତମଦିନରେ ପୁଷ୍ପ ସମ୍ପୂର୍ଣ୍ଣେ ଫୁଟିବ ।୨୦।
ପ୍ରଭାତୁଂ ଗନ୍ଧଅସ୍ୱେଂଳା ଫେନ ତୋ ଶରୀରେ । ଶୁଦ୍ଧସ୍ନାନ କରିବୁ ତୁ ସପ୍ତମଦିନରେ ॥
ଚନ୍ଦନ କର୍ପୂର କସ୍ତୁରୀ ଯେ ଅଙ୍ଗେ ଲାଇ । ଦେବଯୋଗ୍ୟ ପଲଙ୍କ ଉପରେ ଥିବୁ ଶୋଇ ॥
ଯହିଂ ପୁରୁଷକୁ ଲୋଭ ମନରେ କରିବୁ । ଏ ମାଳା ଧରିଣ ତାର ନାମକୁ ଜପିବୁ ॥
ବ୍ରହ୍ମା ବିଷ୍ଣୁ ଶିବ ଇନ୍ଦ୍ର ଚନ୍ଦ୍ର ଅଂଶୁମାଳି । ଯା ନାମ ଜପିବୁ ତୋ ଶଯ୍ୟାରେ ସେହି ମିଳି ॥
ମନେ ବାଞ୍ଛା କରିବୁ ମୋ ପୁତ୍ର ହେଉ ଜନ୍ମ । ମନଉଲ୍ଲାସରେ ତାରେ ଦେବୁ ଯେ ରମଣ ॥
ତାହାରେ ହୋଇବ ତୋର ଗର୍ଭ ଉତପନ୍ନ । ସେହିକ୍ଷଣି ଜନ୍ମ ହେବ ଅପୂର୍ବ ନନ୍ଦନ ॥
ଏହିବର ଅଷ୍ଟହେଉ ତୋତେ ଗୋ କୋଇନ୍ତା । କାହାରି ଆଗରେ ନ କହିବୁ ଏହୁ କଥା ॥
ଏତେ ବୋଲି ମୁନିବର ହେଲେ ଅନ୍ତର୍ଦ୍ଧାନ । ବଦ୍ରି ନାରାୟଣ ଧାମେ ମିଳିଲେ ତତକ୍ଷଣ ॥
ଏହିମତ କେତେଦିନ ତହୁଂ ବହିଗଲା । ପାକାପରିଣନ କୁନ୍ତୀଦେବୀ ଯେ ହୋଇଲା ॥
ଶୁଦ୍ଧସ୍ନାନ କଲା ସେହୁ ସପ୍ତମଦିନରେ । ଅତିବାଞ୍ଛା ହୋଇ ସେତ ରହିଛୁ ବିଧିରେ ।୩୦।
କର୍ପୂର କସ୍ତୁରୀ ଗନ୍ଧ ଅସ୍ୱେଂଳା ସୁବାସେ । ତନୁଯାକ ମଣ୍ଡିଲା ସେ ମନର ହରଷେ ॥
ବରହିଣୀ ଭବେ ସେହୁ ସୁପାତ ଶେଯରେ । ଋଷିଙ୍କ କହିବା କଥା ଭାଳଇ ମନରେ ॥
ମାଳାଦେଇ ଋଷି ଯେଉଂମତ କହିଥିଲେ । କରି ମୁଂ ଦେଖଇଂ କନା ମନରେ ପାଞ୍ଚିଲେ ॥
ପୁଣି ବିଚାରଇ ମୁଂ ଯେ ଜପିବି କାହାକୁ । ପ୍ରଥମେ ଜପଇଂ ଦେଖି ସୂର୍ଯ୍ୟଦେବତାଙ୍କୁ ॥
ସୂର୍ଯ୍ୟଦେବ ଯେବେ ମୋର କୋଳକୁ ଆସିବେ । ତିନିପୁର ଯାକ କେହି ବଳି ନ ପାରିବେ ॥
ଏତେ କହି ସ୍ଫଟିକର ମାଳା ହସ୍ତେ ଧରି । ସୂର୍ଯ୍ୟଦେବଙ୍କର ନାମ ଜପଇ ସୁନ୍ଦରୀ ॥
ମନରେ ଉତ୍ସୁକ ମାନ ରହିଅଛୁ ପୂରି । ଘନ ଘନ ଧର୍ମ ନାମ ଜପିଲା ସୁନ୍ଦରୀ ॥
ଓଂକାର କରିଣ କୁନ୍ତୀ ଯହୁଂ ଜପ କଲା । ଧର୍ମଦେବଙ୍କର ତେଣେ ଆସନ କମ୍ପିଲା ॥

ଗଗନବିହାରୀ ଆକାଶରୁ ଓହ୍ଲାଇଲେ । ରଥ ସହିତରେ କୁନ୍ତୀ ଶେଯରେ ମିଳିଲେ ॥
କୁନ୍ତୀଙ୍କି ସେ କୋଳାଗତ କରି ଆଲିଙ୍ଗନ । ଅଙ୍ଗସଙ୍ଗ ଦେଇ ତୋଷକଲେ ତାଙ୍କ ମନ ।୪୦।
ରବିଙ୍କର ସହବାସେ ଗର୍ଭ ସଞ୍ଚରିଲା । ତତକ୍ଷଣେ ଗର୍ଭରେ କୁମର ପାଳିଟିଲା ॥
ଦେଖିଣ ପ୍ରବେଶପଥ ନିରୋଧ ଥିବାର । କର୍ଣ୍ଣଦ୍ୱାରେ କୁମର ଯେ ହୋଇଲା ବାହାର ॥
କର୍ଣ୍ଣବାଟେ ସେ କୁମରି ଜନମିଲା ଯହୁଂ । କର୍ଣ୍ଣବୋଲି ନାମ ତାର ଦେଲେକ ସେ ତହୁଂ ॥
ସୂର୍ଯ୍ୟଦେବଙ୍କର ଠାରୁ କର୍ଣ୍ଣ ଜନମିଲା । ଅବିବାହୀ ହୋଇ କୋଇନ୍ତା ଯେ ରହିଥିଲା ॥
ସୂର୍ଯ୍ୟଦେବଠାରେ ମନ୍ତ୍ର ପରୀକ୍ଷା ସେ କଲେ । ଗଣ୍ଠି ଧନ କରି ମାଳା ପେଡ଼ିରେ ରଖିଲେ ॥
ଜନମ ହୋଇଣ କର୍ଣ୍ଣ ରାଜପଣ କଲେ । ସୂର୍ଯ୍ୟଦେବତା ଯେ ଆକାଶରେ ବିଜେକଲେ ॥
ଏହିମତ ତହୁଂ କେତେଦିନ ବହିଗଲା । ସେହି କୋଇନ୍ତାକୁ ପାଣ୍ଡୁ ରାଜା ବିଭାହେଲା ॥
ବିଭାହୋଇ କେତେଦିନ ତହୁଂ ବହିଯାଏ । ପାଣ୍ଡୁଙ୍କୁ ଅର୍ଜିର ଋଷିଙ୍କର ଶାପ ହୋଏ ॥
ସେହିଦିନୁ ସ୍ତ୍ରୀଅଙ୍ଗ ନ ଛୁଅନ୍ତି ସେହି । ଅର୍ଜୁନ ବୋଇଲେ ଏହା କହ ଭବଗ୍ରାହୀ ॥
କଉଂ ଦୋଷୁଂ ପାଣ୍ଡୁ ଭିତରକୁ ନ ପଶନ୍ତି । ଏହିକଥା ବୁଝାଇ କହିବା ଦାଶରଥି ।୫୦।
ଶ୍ରୀହରି ବୋଇଲେ ଦିନେ ବନେ ମହାମୁନି । ମୃଗୁଣୀ ସଙ୍ଗେ ବିହାର କରନ୍ତେ ସେ ପୁଣି ॥
ସେ ମୃଗୁଣୀ ଡାକ ପକାଇଲା ଘୋରନାଦ । ପାଣ୍ଡୁ ରାଜା ରାଜ୍ୟରେ ହୋ ହେଲା ପରମାଦ ॥
ଏମନ୍ତେ ମୃଗୁଣୀ ଡାକଦେଲା ଯେ ବନରେ । ସେହି ଡାକ ପଣ୍ଡୁ ରାଜା ଶୁଣିଲେ କର୍ଣ୍ଣରେ ॥
ଡାକ ଶୁଣି ଶର ସେ ପେଷିଲେ ଧାଡକାରେ । ତକ୍ଷଣେ ପଡ଼ିଲା ବାଣ ଋଷିଙ୍କ ଉପରେ ॥
ଋଷି ମୃଗୁଣୀର ଅଙ୍ଗେ ବାଣ ଫୁଟି ରହି । ଦୁଇଜଣ ପ୍ରାଣତ୍ୟାଗ କଲେ ସେହିଠାଇଂ ॥
ବ୍ୟାକୁଳ ହୋଇଣ ଋଷି ଶାପ୍ୟ ଦେଲେ ତାରେ । ନିର୍ଦୋଷରେ ବାଣ ତୁ ବିନ୍ଧିଲୁ ମୋ ଶରୀରେ
ତୋର ରତିକାଳେ ପଡ଼ୁ ସେ ଅକାଳକାଣ୍ଡ । ଏତେ କହି ଋଷି ପ୍ରାଣ ଛାଡ଼ିଗଲା ପିଣ୍ଡ ॥
ସେ ଶବଦ ପାଣ୍ଡୁ ରାଜା କର୍ଣ୍ଣରେ ଶୁଭିଲା । ଋଷିଙ୍କର ଅଭିଶାପ ପଡ଼ିବ ଜାଣିଲା ॥
କୁନ୍ତୀଙ୍କ ଆଗରେ ପଣ୍ଡୁ ରାଜନ କହିଲେ । ତୁମ୍ଭ କର୍ମ ତୁମ୍ଭେ ଏବେ ଭୋଗକର ବୋଲେ ॥
ଆଚମ୍ବିତ କଥା ବଡ଼ ହୋଇଲାକ ରାଣୀ । ନ ଜାଣି ଶର ଯେ ମୁହିଂ ପେଷିଲିଇଂ ପୁଣି ॥
ଋଷି ମୃଗୁଣୀର ଅଙ୍ଗେ ବାଣ ଫୁଟିଥିଲା । ପ୍ରାଣତ୍ୟାଗ କାଳେ ଋଷି ମୋତେ ଶାପଦେଲା ।
ଦେଲ ଯେଉଂ ଶାପ୍ୟ ତାହା ନୁହଇଟି ଆନ । ତୁମ୍ଭ ଆମ୍ଭ ଅଙ୍ଗସଙ୍ଗ ଆଉ ନାହିଂ ପୁଣ ।୬୨।
ଏତେ କହି କୋଇନ୍ତାର ହସ୍ତ ଯେ ଧଇଲେ । ତୁମ୍ଭର କରମ ତୁମ୍ଭେ ଭୁଞ୍ଜ ଗୋ ବୋଇଲେ ॥
ଆହା ବୋଲି ମହାଦେଇ ଭୂମିରେ ଲେଟିଲେ । ରାଣୀହଂସପୁରୁଂ ପାଣ୍ଡୁ ମେଲାଣି ହୋଇଲେ ॥
ସେହିଦିନୁ ଭିତରକୁ ରାଜା ନ ପଶନ୍ତି । ବାହାରପୁରେ ରହିଣ ରାଜ୍ୟ ସେ ପାଳନ୍ତି ॥
ତୁମ୍ଭ ପିତାଙ୍କର କର୍ମ ଶୁଣ ହୋ ଅର୍ଜୁନ । ଅଚ୍ୟୁତାନନ୍ଦ ଯେ ଏହା କଲେକ ବଖାଣ ।୬୬।

ଇତିଶ୍ରୀ କୈବର୍ତ୍ତଗୀତାୟାଂ ବୈଦ୍ୟାସିକ୍ୟାଂ ପାରମହଂସ ସଂହିତାୟାଂ ପାଣ୍ଡୁ ରାଜା
ଜନ୍ମ କଥନେ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ ଷୋଡ଼ଶୋଽଧ୍ୟାୟଃ ।

---

## ।। ସପ୍ତଦଶ ଅଧ୍ୟାୟ ।।

ଶୁଣ ଧନୁଜୟ ତୁମ୍ଭ ମାତାଙ୍କର ଗୁଣ । ଯେମନ୍ତ ପ୍ରକାରେ ତୋତେ ଜାତକଲେ ପୁଣ ।୧।
କୋଇନ୍ତା ଜାଣିଲେ ଯେ ରାଜାର ଅଭିଶାପ । ପୂର୍ବ ପୁରାକୃତ ଦୋଷେ ହେଲା ଏ ପ୍ରାପତ ।।
ଦାସୀର ହାତରେ ସେ ରାଜାଙ୍କୁ ଡକାଇଲେ । ଗୁପତ ସମ୍ବାଦ ପାଣ୍ଡୁ ଆଗରେ କହିଲେ ।।
ଅର୍ଜ୍ଜି ରାଜାର ଅଭିଶାପେ ତୁମ୍ଭେ ଯିନା ରହ । ମୁହିଂ କ କରିବି ମୋତେ ଏବେ ଆଜ୍ଞା ଦିଅ ।।
ମୋହର ମନରେ ଯାହା କଥାଏ ଅଛଇ । ତୁମ୍ଭେ ମୋର ସ୍ୱାମୀ ଅଟ କହୁଛି ମୁଂ ଫେଇ ।।
ପ୍ରସନ୍ନେ ଦୁର୍ବାସା ମୁନି ଜପାମାଳା ଦେଇ । ବର ଦେଇଗଲେ ମୋତେ ଏମନ୍ତ ସେ କହି ।।
ତୁମ୍ଭେ ଯେବେ ରାଜନ ହେ ଆଜ୍ଞା ଦେବ ପୁଣି । ଦେବତାଙ୍କ ବାର୍ଯ୍ୟେ ପୁତ୍ର ଜନ୍ମ ହେବେ ଜାଣ ।।
ଅର୍ଜ୍ଜି ରାଜଶାପ ଯେବେ ହୋଇଲା ତୁମ୍ଭରେ । ମୋ ସଙ୍ଗେ ଅକାଳ କାଣ୍ଡ ପଡ଼ିବ ଶରୀରେ ।।
ଏବେ ତୁମ୍ଭେ ଆଜ୍ଞା ମୋତେ ଦିଅ ଦେଗ କରି । ଅବଳା ଯୁବତୀ ମୁହିଂ ଅବୋଧ ଯେ ନାରୀ ।।
ରାଜଦିନ ପୋଥ ଇଚ୍ଛା କରେଂ ମୋ ମନରେ । କେମନ୍ତେ ଏ ଦେହ ଧରି ରହିବି ସଂସାରେ ।୧୦।
ଏକେତ ସନ୍ତାନ ମୁଖ ନ ଦେଖିବା ପୁଣି । ତୁମ୍ଭଙ୍କୁ ମୁଂ କହୁଅଛି ଶୁଣ ନୃପମଣି ।।
ଋଷି ଦେଇଛନ୍ତି ଯେ ସ୍ଫଟିକ ଜପାମାଳ । ଯା ନାମେ ଜପିବି ସେ ଆସିଣ ପାଶେ ମିଳ ।।
ଦେବତାଙ୍କ ନାମେ ଜପ କରିବି ମୁଂ ଯେବେ । ଦେବତାଙ୍କ ପୁତ୍ର ଜନ୍ମ ହୋଇବେ ମୋ ତେବେ ।।
ସେ ପୁତ୍ର ଜନ୍ମିଲେ ଆମ୍ଭ କୁଳ ଯେ ରହିବ । ଅପୁତ୍ରିକ ହେବା କଥା କେହି ନ କହିବ ।।
ଏକେ ବରହଣୀ ମୁହିଂ ବୋଧ ହୋଇଥିବ । କୁଳରକ୍ଷା ପାଇଁ ଦୁକେ ସନ୍ତାନ ଦେଖିବ ।।
କୋଇନ୍ତା ବଚନ ଶୁଣି ପାଣ୍ଡୁ ଯେ କହିଲେ । କେମନ୍ତେ ସେ ମାଳା ଗୋଟି ଦେଖାଇ ବୋଇଲେ ।।
ପାଣ୍ଡୁ କଥା ଶୁଣି କୁନ୍ତୀ ଉଠି ତତପରେ । ମାଳା ଗୋଟି ଆଣି ଦେଲା ରାଜାଙ୍କ ହସ୍ତରେ ।।
ସୂର୍ଯ୍ୟର କିରଣ ପରି ମାଳାଟି ଦିଶଇ । ଦେଖିଣ ତରସ୍ତ ହେଲେ ପାଣ୍ଡୁ ରାଜା ତହିଂ ।।
ଦେଖିକରି ବୋଲେ ତହୁଂ ଶୁଣ ଗୋ କୋଇନ୍ତା । ଆମ୍ଭର କରମେ ଯାହା ଲେଖିଛି ବିଧାତା ।।
ତୁମ୍ଭ ମନକଥା ରାଣୀ ତୁମ୍ଭେ ଏବେ କର । ଏ କଥାରେ ସଂଶୟ ଯେ ନାହିଂ ମୋ ମନର ।।
ଏତେକ କହିଣ ରାଜା ନିଜପୁର ଗଲେ । କୋଇନ୍ତାଙ୍କ ଅନ୍ତଃପୁରେ କୋଇନ୍ତା ରହିଲେ ।।
ଯେଉଁଦିନ ଶୁଦ୍ଧସ୍ନାନ ହୋଇଛି ବଧିରେ । ଜପାମାଳା ଘେନି କୁନ୍ତୀ ପଲଙ୍କ ଉପରେ ।୨୦।
ବସିକରି ମନରେ ସେ ଏମନ୍ତ ବିଗୃରି । ସକଳ ସଂସାର ମଧ୍ୟେ ଧର୍ମ ଅଛି ପୂରି ।।
ପଲଙ୍କ ସୁପାଠ ପରେ କରିଣ ଶୟନ । ଧର୍ମଦେବତାଙ୍କୁ ମନେ କଲେ ଜପ ଧ୍ୟାନ ।।
ଧର୍ମ ଆସି ପଲଙ୍କେ ମିଳିଲେ ସେହିକ୍ଷଣେ । ମନୋରଥ ପୂର୍ଣ୍ଣକଲେ କୁନ୍ତୀ ଅଙ୍ଗ ସଙ୍ଗେ ।।
ଧର୍ମ ସହବାସେ କୁନ୍ତୀ ହେଲା ଗର୍ଭବାସ । ସେହିକ୍ଷଣି ଜନମ ହୋଇଲେ ଧର୍ମଶିଷ୍ୟ ।।
ଯୁଧିଷ୍ଠିର ବୋଲି ନାମ ଦେଲେ ଯେ ତାଙ୍କର । ଏହିମତ ଗଲା ତହିଂ କେତେ ଦିନ ତାର ।।
ପୁଣିହିଂ ସେ ରଜସ୍ୱଲା ହୋଇଲେ କୋଇନ୍ତା । ମନରେ ପାଞ୍ଚିଲେ ସେ ପବନ ଦେବତା ।।
ସକଳ ଜୀବରେ ଏ ଅଟଇ ବଳବନ୍ତ । ସୁମରଣା ହାଦେ ତାଙ୍କୁ କଲେକ କୋଇନ୍ତା ।।

ପବନର ବୀଜେ ଜାତ ହୋଇଲା କୁମର । ଭୀମ ବୋଲି ନାମ ଦେଲେ କୋଇନ୍ତୀ ତାଙ୍କର ।
ଏଥିଅନ୍ତେ କେତେଦିନ ପୁଣ ବହିଗଲା । ରାଣୀମହାଦେଈଙ୍କର ରଜସ୍ୱଳା ହେଲା ।୩୧।
ଶୁଚିମନ୍ତ ହୋଇଣ ସେ ପଲଙ୍କେ ଶୟନ । ଜପାମାଳା ହସ୍ତେ ଧରି ବଗୃରନ୍ତ ମନ ॥
ହୃଦଗତେ ପାଶେ ଇନ୍ଦ୍ର ଘୋରନାଦ କରେ । ତାଙ୍କ ସମାନରେ ଛଣୀ ନାହିଂ ତିନପୁରେ ॥
ଜପାମାଳା ଘେନି ଇନ୍ଦ୍ର ନାମରେ ଜପିଲେ । ଇନ୍ଦ୍ରଦେବ ଆସି କୁନ୍ତୀ ସନ୍ନିଧ୍ୟେ ମିଳିଲେ ॥
ଇନ୍ଦ୍ରଠାରୁ ଜାତ ତୁହି ନାମ ତୋ ଅର୍ଜୁନ । ତୋହ ସମ ବୀର ନାହିଂ ଏ ତିନଭୁବନ ॥
ଅଶ୍ୱିନୀକୁମାରଠାରୁ ନକୁଳ ଜନମ । କୁନ୍ତ୍ୟମୁନେ ଛର୍ଦ୍ଦି ସେ କରଇ ନିପାତନ ॥
ମାଦ୍ରୀର ନନ୍ଦନ ଯେ ଅଟଇ ସହଦେବ । ସହ ମାର ଜାତ ଯେଣୁ ନାମ ସହଦେବ ॥
ଶୁଣିଲୁ ଅର୍ଜୁନ ତୁମ୍ଭ ଜନମର କଥା । ଏବେ କହେ ଧୃତରାଷ୍ଟ୍ର ବିଭାର ବ୍ୟବସ୍ଥା ॥
ରାଜାଟିଅମାନଙ୍କୁ ସେ ବରଣ କରନ୍ତି । ବରିଲା ମାତ୍ରକେ ରାଜକନ୍ୟାଏ ମରନ୍ତି ॥
ଏମନ୍ତେ ସହସ୍ରେ କନ୍ୟା ତହିଂ ଗଲେ ନାଶ । ନାମ ଧରିଲା ମାତ୍ରକେ ହୁଅନ୍ତି ବିନାଶ ।୪୦।
ଏହିମତେ କେତେ ସମ୍ବତ୍ସର ଗଲା ବହି । ଅବିବାହୀ ହୋଇ ଧୃତରାଷ୍ଟ୍ର ଯେ ଭଲଇ ॥
ଅର୍ଜୁନ ବୋଇଲେ ପ୍ରଭୁ ଶୁଣ ଚକ୍ରଧର । କେମନ୍ତେ ଯେ ବିଭା ପୁଣି ହେଲେ ନୃପବର ॥
ଶ୍ରୀକୃଷ୍ଣ ବୋଇଲେ ତେବେ ଶୁଣ ଧନଞ୍ଜୟ । ସେଥିର ଚରିତ କହି ଫେଡ଼ିବା ସନ୍ଦେହ ॥
ଗାନ୍ଧାରସେନ ରାଜାର ହୋଇଲା କୁମାରୀ । ଗାନ୍ଧାରୀ ବୋଲି ତା ନାମ ଦେଲେ ଦଣ୍ଡଧାରୀ ॥
ଏମନ୍ତେ ସେ କୁମାରୀ ନବଯୁବା ହେଲା । ରାଜା କୁଳଶୀଳ ପୁଚ୍ଛି ବର ଯେ ଖୋଜିଲା ॥
ସେ କନ୍ୟାକୁ ବରନ୍ତେ ଯେ ବର ଯାଇ ନାଶ । ଏହିମତେ ସପ୍ତ ବର ହୋଇଲେ ବିନାଶ ॥
ପୂର୍ବେ ଯାହା ବିଧାତା ଭିଆଇଅଛି ଯୋଗ । ତାହା ବିନା ପ୍ରାଣୀମାନେ କରୁଛନ୍ତି ଭୋଗ ॥
ଯେତେ ବର ବରିଲେ ଯେ କେହି ନ ବଞ୍ଚିଲେ । ନାମ ତାର ଧରିଲା ମାତ୍ରକେ ନାଶଗଲେ ॥
ବିହି ଯାହା ଲେଖିଥାଇ ନୁହଇ ସେ ଆନ । ସେ କନ୍ୟାକୁ ବରିଲା ଯେ ଧୃତରାଷ୍ଟ୍ର ପୁଣ ॥
ରାଶି ଗଣାଇ ଦେଖିଲେ ପଣ୍ଡିତ ଏମନ୍ତ । ଉଅଂଶ ରାଶରେ ଦୁହେଂ ହୋଇଛନ୍ତି ଜାତ ॥
ଶୁଣି ବ୍ୟାସମୁନି ତାହା ମନରେ ବିଚାରି । ଅଗେ କନ୍ୟା ସାହାଡ଼ା ବୃକ୍ଷକୁ ବର ବରି ୫୦
ବର କରି ବରନ୍ତେ ସାହାଡ଼ା ବିଛ ମଲା । ଧୃତରାଷ୍ଟ୍ର ବରିଣ ଗାନ୍ଧାରସେନ ନେଲା ॥
ମୁନିବର ବୋଇଲେ ଯେ କନ୍ୟା ଦୋଷ ଗଲା । ବରିଲା ମାତ୍ରକେ ସେ ସାହାଡ଼ା ବୃଛ ମଲା ॥
ଗାନ୍ଧାରସେନ ଯେ ଧୃତରାଷ୍ଟ୍ରଙ୍କୁ ନେଇଣ । ବେଦୀରେ ବସାଇ ସେ ଯେ କଲକ ବରଣ ॥
ଗାନ୍ଧାରୀକି ବିଭା ଦେଲା ଶୁଭେଣ ରାଜନ । ସଙ୍ଗେଣ ଦେଲା ସେ ବହୁ ଧନରତ୍ନମାନ ॥
ବିଭା ଅନ୍ତେ ଭୋଗ କଲେ କେତେକ ବର୍ଷର । ପୁତ୍ର କି ଦୁହିତା ଜାତ ନୋହିଲା ତାଙ୍କର ॥
ଦିନେ ଧୃତରାଷ୍ଟ୍ର ବ୍ୟାସ ମୁନିଙ୍କୁ ରାଇଣ । ବୋଇଲେ ଭୋ ପିତା ମୋତେ କରିବା କାରଣ ।
ପୁତ୍ର ଦୁହିତା ମୋହର କିଛିହିଂ ନୋହିଲା । ସଂସାରେ ଜନମ ହୋଇ ନିଷ୍ଫଳ ହୋଇଲା ॥
ଧନରତ୍ନ ସମ୍ପତ୍ତି ସଂସାରେ ଖେଡ଼ପଦ । ସନ୍ତାନ ଯାହାର ନାହିଂ ଚଣ୍ଡାଳ ସେ ନର ॥
ଏଣୁକରି ବ୍ୟାସମୁନି କରୁଛି ଦର୍ଶନି । କେମନ୍ତେ ନିସ୍ତାର ହେବ କହ ମହାମୁନି ॥
ଅପୁତ୍ରିକ କଥା ବଡ଼ ସଂସାରରେ ଦୋଷ । ଯମଦେବତା ଯେ ଦଣ୍ଡ ଦିଅଇ ଅବଶ୍ୟ ୬୦
ଅପୁତ୍ରିକ ମୁଖ କେହିଂ ଯାତ୍ରା ନାହିଂ କେବେ । ଯାତ୍ରା ଶୁଭ ନୋହେ ବନ୍ଧୁବନ୍ଧୁଏ ତେବେ ।

ପିତୃ ଶ୍ରାଦ୍ଧ ଦିନ ଅପୁତ୍ରିକକୁ ବରଲେ । ପିତୃଲୋକେ ନ ଆସନ୍ତି ତା ପୁରକୁ ଭଲେ ।।
ଶୁଣି ବ୍ୟାସ ମାହାମୁନି ବୋଲନ୍ତି ବଚନ । ପୁତ୍ର ଅର୍ଥେ ଯଜ୍ଞ ତୁହି କର ହୋ ରାଜନ ।୭୩।
ଋଗବେଦରୁ ବ୍ରାହ୍ମଣ ବରଣ କରିବୁ । ପୁତ୍ର ଅର୍ଥେ ଲକ୍ଷେକ ଆହୁତି ଯେବେ ଦେବୁ ।।
ଯଜ୍ଞରୁ ଯେ ଚରୁଅନ୍ନ ଉପୁଜିବ ଜାଣ । ସେ ଚରୁଅନ୍ନ ଭୁଞ୍ଜିଲେ ପୁତ୍ର ହେବ ଜନ୍ମ ।।
ଯତ୍ନ ରୂପେ କହିଲେ ସେ ବ୍ୟାସ ମହାମୁନି । ସେହି ପରକାରେ କଲେ ସେ ନୃପତିମଣି ।।
ଦଶଦିବସରେ ଯଜ୍ଞ ସମାପତ ହେଲା । ମନ ସନ୍ତୋଷରେ ମୁନି ଚରୁଅନ୍ନ ଦେଲା ।।
ହାତେ ନେଇ ମାହାଦେଈ କଲେକ ଭକ୍ଷଣ । ମୁନି ଆଜ୍ଞା ଦେଲେ ପୁତ୍ର ହୋଉ ତୋର ଜନ୍ମ ।।
ଭକ୍ଷିଲା ମାତ୍ରକେ ରାଣୀ ଗର୍ଭବତୀ ହେଲା । ଅନେଶତ ପୁତ୍ର ରାଣୀ ଶୁଭେ ଜାତ କଲା ।।
ଦୁର୍ଯ୍ୟୋଧନ ଦୁଃଶାସନ ଅନେଶତ ଭାଇ । ମହାବଳବନ୍ତ ଦୁଷ୍ଟ ହୋଇଲେକ ସେହି ।।
ଶୁଣିଲୁ ଅର୍ଜ୍ଜୁନ ଧୃତରାଷ୍ଟ୍ର ପୁତ୍ର କଥା । ଏହିମତ ସୋମବଂଶ ହେଲେ ବଳବନ୍ତା ।।
ଅର୍ଜ୍ଜୁନ ବୋଇଲେ ପ୍ରଭୁ ପାଇଲି କାରଣ । ଧନ୍ୟ ଧନ୍ୟ ମହିମା ତୋହର ଭଗବାନ ।।
ଶ୍ରୀହରି ବୋଇଲେ ବାବୁ ଶୁଣ ଅରଜୁନ । ତ୍ରିଭୁବନେ ମୋତେ ଭେଦ ନପାରନ୍ତି ପୁଣ ।।
ମୋହରି ନାମରେ ମୁହିଂ ପଞ୍ଚ ରହିଥାଇ । ନାମ ଯେ ଭଜଇ ତାକୁ ପ୍ରସନ୍ନ ହୁଅଇ ।।
ନାମବ୍ରହ୍ମ ନାମବ୍ରହ୍ମ ନାମବ୍ରହ୍ମ ସାର । ନାମବ୍ରହ୍ମ ବିନୁ ଆଉ ନାହିଂ ପ୍ରତିକାର ।।
ଚତୁର୍ବେଳ କରି ପାର୍ଥ କହୁଅଛୁ ତୋତେ । ନାମକୁ ଯେ ଭଜଇ ସେ ଭେଟ ପାଇ ମୋତେ ।
ଅଧମ ଅଚ୍ୟୁତ ଦାସ ନାମରେ ଶରଣ । କୃଷ୍ଣ ନାମ ବିନୁ ମୋର ନାହିଂ ପରିତ୍ରାଣ ।୭୮।

ଇତିଶ୍ରୀ କୈବର୍ତ୍ତ ଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ ଧୃତରାଷ୍ଟ୍ର-
ଗାନ୍ଧାରୀ ଚରିତ୍ର କଥନେ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ନାମ ସପ୍ତଦଶୋଽଧ୍ୟାୟଃ ।

---

## ।। ଅଷ୍ଟାଦଶ ଅଧ୍ୟାୟ ।।

ଅର୍ଜ୍ଜୁନ ବୋଇଲେ ପ୍ରଭୁ ଶୁଣ ଭଗବାନ । ଏବେ କହ କୈବର୍ତ୍ତଙ୍କ ଯେ ବିଧିବିଧାନ ।।
କେମନ୍ତ ପ୍ରକାରେ ଚୈତ୍ରପୂର୍ଣ୍ଣିମା ସେ କଲେ । ଇଷ୍ଟବିଧି କେମନ୍ତେ ସେ ସେଦିନ ପାଳିଲେ ।।
ମନ ସ୍ଥିର କରି ତୁହି ଶୁଣ ଅରଜୁନ । ଦାସରାଜା ଯେମନ୍ତେ ଇଷ୍ଟ ପୂଜିଲେକ ପୁଣ ।।
ଯାରୁଣେ ବସାଇ ଆମ୍ଭେ ଦେଲୁ ଯେ ବତାଇ । ଏବେ ଦାସରାଜା ତୁହି ଶୁଣ ମନଦେଇ ।।
ଚୈତ୍ରପୂର୍ଣ୍ଣମୀ ଦିନ ଇଷ୍ଟର ବିଧାନ । କହୁଛୁ ମୁଂ ମନଦେଇ ଦାସରାଜା ଶୁଣ ।।
କାଳ୍ପରେ ନିର୍ମାଣି ତୁହି ଡିଙ୍ଗି ସଜକରି । ଗୋବିନ୍ଦମୂଳ ସୁମରଣ ପୂଜାବିଧି କରି ।।
ଘର ଭିତର ବାହାର ଗୋମୟେ ଲେପିବୁ । ଅରୁଆ ତଣ୍ଡୁଳ ବାଟି ଚିତା ପକାଇବୁ ।।
ବନ୍ଧୁ କୁଟୁମ୍ବଙ୍କୁ ପୁଣି ନିଜଂତ ଆଣିବୁ । ଶୁଚିମନ୍ତ ହୋଇ ଶୁକ୍ଳ ବସ୍ତ୍ର ଯେ ପିନ୍ଧିବୁ ।।
ଅଯୋଂଲା କୁଙ୍କୁମ ଚନ୍ଦନ ଡିଙ୍ଗିରେ ବୋଳିବୁ । ତୀର୍ଥଜଳପୂର୍ଣ୍ଣ କୁମ୍ଭେ ସ୍ନାନ କରାଇବୁ ।।
ଇଷ୍ଟଦେବ ମନେକରି ତାହାକୁ ସ୍ଥାପିଣ । ତଣ୍ଡୁଳର ଅଣ ଅଙ୍ଗେ ଛାପାଦେବ ପୁଣ ।୧୦।
ଛାପା ମଧ୍ୟେ କାଇମାଟି ବିନ୍ଦୁ ଯେ ଥାପିବୁ । ନବତନ ବସ୍ତ୍ର ଅଙ୍ଗେ ଆଭରଣ ଦେବୁ ।।
ଚିତା ପୁଣି ପକାଇବୁ ଡିଙ୍ଗିର ଆଗରେ । ଚନ୍ଦନର ଚିତା ଦେବୁ ତାହାର ମଥାରେ ।।

ସିନ୍ଦୂରର ବନ୍ଦୁ ପୁଣି ଦେବ ତା ମଧ୍ୟରେ । କଜ୍ଜ୍ୱଳ ଲଣ୍ଡି ରଖିବ ବେନି ପାର୍ଶ୍ୱରେ ॥
ମନ୍ତ୍ର ପଢ଼ିକରି ଶିରେ ବନ୍ଦୁ ଚଢ଼ାଇବ । କୁସୁମର ମାଳଗୋଟି ଶିରେ ଲମ୍ବାଇବ ।୧୪।

ସିନ୍ଦୂର ମନ୍ତ୍ର

ବାମଭାଗେ ସ୍ଥିତୋ ବ୍ରହ୍ମା ଦକ୍ଷିଣେ ଚ ମହେଶ୍ୱରଃ
ମଧ୍ୟେ ବନ୍ଦୁ ସମ ଯୁକ୍ତଂ ଇତି ବନ୍ଦୁ ନମସ୍କାରଃ ॥

କଥା:—ଓମ୍ ଧୂମ୍ ଜ୍ୟୋତି ଜ୍ୱାଲା ସ୍ୱାହା—ଏହା ପଢ଼ିକରି ଢେଙ୍କି ମୁଣ୍ଡରେ ସିନ୍ଦୂର ଚଢ଼ାଇବ । ତେତେବେଳେ ସେ ଢିଙ୍କିକି ଭଗବାନ ବୋଲି ଜାଣିମ ।

ଗୀତ

ଶୁକ୍ଳ ବସ୍ତ୍ର ପିନ୍ଧି କୁଟୁମ୍ବ ଜନ ସହିତେ । ପାଠପଡନ ଆଦି ଯେ ମିଳିବ ଯୁକତେ ।୧୫।
ଗନ୍ଧଶାଳରେ ଗୋଟିଏ ବଧି ଯେ କରିବ । କୁଣ୍ଡଳୀ ପିତୁଳା କରି ତହିଁ ବସାଇବ ॥
ଦେହପିଣ୍ଡୀ ବୋଲି ଯହିଂ ବେଦଟି ବୋଲନ୍ତି । କୁଣ୍ଡଳୀ ନାମେ ପିତୁଳା ତହିଂରେ ବସାଇ ॥
ରୂପା ପିତଳରେ ତାହା କରିଣ ରଖିବ । ଅଥବା ମାଟିର ମୂର୍ତ୍ତି କରିଣ ଥାପିବ ॥
ଝୁଣା ଗୁଗୁଳର ଧୂପ ଗୋଟିଠାରେ ଦେବ । ଘଣ୍ଟା ମର୍ଦ୍ଦଳ ଆଦି ଯେ ତହିଂ ବଜାଇବ ॥
ନାରୀଗଣେ ବନ୍ଦାଇବ ଘୃତଦୀପ ଜାଳି । ଦୁବ ଅକ୍ଷତ ଥୋଇବେ ଦେଇ ହୁଳହୁଳି ।୧୦।
ଏହିମତ ନାଗସ ଗୋଟିକୁ ବନ୍ଦାଇବ । ପଞ୍ଚାମୃତ କରି ତହିଂ ନଇବେଦ୍ୟ ଦେବ ॥
ନାନାପ୍ରକାରର ପିଠାପଣା ଯେ କରିବ । ଅନନ୍ତବାସୁକୀ ମନ୍ତ୍ରେ ନଇବେଦ୍ୟ ଦେବ ॥
ଅନନ୍ତ ବାସୁକୀ ତୋର ଗୋଟି ଯେ ଅଟଇ । ଗନ୍ଧଶାଳରେ ତାକୁ ପୂଜିବୁ ତୁ ନେଇ ॥
ଏହାକୁ ନ ପୂଜିଲେ ତୋ ନାହିଂ ପରିତ୍ରାଣ । ଅନନ୍ତ ବାସୁକୀ ବିନା ଆପେ ନାରାୟଣ ॥
କୁଣ୍ଡଳୀ ରୂପରେ ଜନ୍ମ ହୋଇଅଛୁ ମୁହିଂ । ସାତ ସିନ୍ଧୁ ସାତଦ୍ୱୀପ ଶିରେ ଅଛୁ ବହି ॥
ସ୍ନେହକରି ନାଗସ ଗୋଟିକୁ ତୁ ପୂଜିବୁ । ଅନନ୍ତ ବାସୁକୀ ମନ୍ତ୍ରେ ନୈବେଦ୍ୟ କରିବୁ ।୧୬।

ମନ୍ତ୍ର

କଥା:—ଏବେ ଅନାଦି ଅଷ୍ଟକୁଳା ନାଗ ଦେବାୟ ସ୍ୱାହା—ଏହା କହି ଦୁଧ ଦଧି ମଧୁ ଛେନା ଗୁଡ଼ ପାଚିଲାକଦଳୀ ନଇବେଦ୍ୟ ଦେବ ।

ଗୀତ

ଏହିମତେ ପୂଜାବିଧି କରଇ କୈବର୍ତ୍ତ । ଇଷ୍ଟ ନାଗସ ଗୋଟି ଉଚ୍ଚାର ଯଥାଯଥ ।୧୭।
ମିଷ୍ଟଦ୍ରବ୍ୟ ଘୃତ ଦଧି ପିଠାପଣା କରି । ଶୁଦ୍ଧ ଚନ୍ଦ୍ରେ ବସିଣ ରଖିବ ମୋତେ ସ୍ମରି ॥
କୁଳବଧୂ ଶୁଚିମନ୍ତ ହୋଇଣ ଆସିବେ । ଘୃତଦୀପ ଜାଳିଣ ଯେ ଢିଙ୍କି ବନ୍ଦାଇବେ ॥
ଦୂବ ତଣ୍ଡୁଳି ଆବର ବରକୋଳି ପତ୍ରେ । ହୁଳହୁଳି ଦେଇ ବନ୍ଦାଇବେ ଯେ ସମସ୍ତେ ॥
ଚନ୍ଦନର ଗୁଣ୍ଡି ସଙ୍ଗେ କର୍ପୂର ମିଶାଇ । ଝୁଣା ଗୁଗୁଳ ଆବର ମିଶାଇବ ତହିଂ ॥
ନବତନ ମାଟିଭାଣ୍ଡେ କୋଇଲା ଅଗ୍ନିରେ । ଏତେ ଦ୍ରବ୍ୟ ଦେବ ନେଇ ଧୂପ ସେଠାବରେ ॥
ଘଣ୍ଟା ମର୍ଦ୍ଦଳ ଆଦି ଯେ ବାଇବ ସେଠାରେ । ପୂଜନ କରିବ ଯଥା ବିଧି ବିଧାନରେ ॥
ବିଶ୍ୱକର୍ମା ପୁରୁଷ ଯେ ନିରାକାର ସେହି । ଅଣାକ୍ଷର ମନ୍ତ୍ରେ ତାକୁ ନଇବେଦ୍ୟ ଦେଇ ॥

ତେବେ ସେ ସନ୍ତୋଷ ହେବେ ନିରାକାର ବ୍ରହ୍ମ । ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସେ ଯାହାର ଅଧୀନ ॥
ତୁଳସୀଜଳ ଧରିଣ ଜଳ ତୋଳିକରି । ବାମହସ୍ତେ ଘଣ୍ଟି ଧ୍ୱନି କରିବ ବିଚାରି ॥

## ନୈବେଦ୍ୟ ମନ୍ତ୍ର

ଓଁ ଅଣାକାର ମହାଶୂନ୍ୟ ଶୂନ୍ୟ ଧ୍ରୁବମଣ୍ଡଳେ ନୈବେଦ୍ୟ ସ୍ୱାହା । ମୁକ୍ତିବାଞ୍ଛାର୍ଥେ ସ୍ୱାହା । ଓଁ ନିରାକାର ସ୍ୱାହା । ଏହା ପଢ଼ିକରି ନୈବେଦ୍ୟ ଦେବ । ସେ ନିରାକାର ବିଶ୍ୱକର୍ମାଙ୍କୁ ସ୍ତୁତି କରିବ ।

## ସ୍ତୁତିପାଠ

ନମୋନମ ବିଶ୍ୱକର୍ମା ତୋହର ପୟର । ସୃଷ୍ଟି ଆପ ତେଜ ବାଇ ଗଗନ ତୋହର ॥
ଅଣାକାର ବୋଲିକରି ମହାଶୂନ୍ୟ ହେଲା । ଊର୍ମି ଧୂର୍ମି ଜ୍ୟୋତି ଜ୍ୱାଳା ତହୁଁ ପ୍ରକାଶିଲା ॥
ତହୁଁ ବିରାଟମଣ୍ଡୋଳ ହୋଇଲାକ ଜାତ । ଈଶ୍ୱଦେବା ହୋଇଅଛୁ ତ୍ରିଭୁବନନାଥ ॥
ବ୍ରହ୍ମା ବିଷ୍ଣୁ ମହେଶ ଯେ ତ୍ରିଭୁବନେ ହୋଇ । ଧରଣୀ ସର୍ଜନା ତୁ ଯେ କଲୁ ଭବଗ୍ରାହି ।୪୦।
ଦାସରାଜା ବୋଲିକରି ଅଙ୍ଗୁ କଲୁ ଜାତ । କାଷ୍ଠେ ରୂପ ନିର୍ମାଇଲୁ ଶ୍ରୀଜଗନ୍ନାଥ ॥
ଏହି କାଷ୍ଠରେ ଯେ ତୁମ୍ଭେ ବିଜେ କରିଥିବ । ବିପତ୍ତିମାନ ପଡ଼ିଲେ ଖଣ୍ଡନ କରିବ ॥
ମୋହୋର କୁଟୁମ୍ବେ ପ୍ରଭୁ କରିବ କାରଣ । ତୋତେ ଆଶ୍ରାକରି ମୁହିଁ ପୋଷିବି ଜୀବନ ॥
ତୋହର ଶରୀରୁ ମୋର ଏ ଦେହ ହୋଇଲା । କ୍ଷୁଧା ତୃଷା ବାୟୁ ଅଗ୍ନି କିଛି ନ ଲାଗିଲା ॥
ପୂର୍ବେ ପ୍ରଳୟ କାଳେ ତୁ ଏମନ୍ତ କରିଲୁ । ତେଣୁକରି ମୋହର ଯେ ଇଷ୍ଟ ବୋଲାଇଲୁ ॥
ତୋହର ଚରଣେ ମୁହିଁ ପଶିଲି ଶରଣ । ଅପୁତ୍ରିକେ ପୁତ୍ର ଦାନ କର ନାରାୟଣ ॥
ଗୋଟଗୋଷ୍ଠକୁ ଦିଅ ମୋର ଲକ୍ଷେ ଧେନୁଗଣ । କୋଳକୁ ମୋହୋର ଦିଅ ଅପୁତ୍ରିକ ଧନ ॥
ମନ୍ଦିରକୁ ଦିଅ ମୋର ଲକ୍ଷ୍ମୀଠାକୁରାଣୀ । ବିଜେକରି ମୋର ପୁରେ କର ତୁ ଭ୍ରମଣୀ ॥
ତାହାଙ୍କ ପ୍ରସାଦେ ମୁହିଁ ସୁଖୀ ହୋଇଥିବି । ଚୈତ୍ରପୂର୍ଣ୍ଣିମା ଦିନ ତୁମ୍ଭଙ୍କୁ ପୂଜିବି ॥
ନମୋନମ ବିଶ୍ୱକର୍ମା ତୋହୋର ଚରଣ । କଇବର୍ତ୍ତ ଦାସରାଜା ପଶିଲି ଶରଣ ।୫୦।
ଏରୂପେ ବିଶ୍ୱକର୍ମାଙ୍କୁ ସ୍ତୁତି ଯେ କରିବୁ । ଯେ ଦିନକ ସେହି ସଜ ବସାଇଣ ଥିବୁ ॥
ଆରଦିନ ସ୍ନାନ ସାରି ନଇବେଦ୍ୟ ଦେବୁ । ଏ ବିଧିରେ ପୂଜା ପୂର୍ଣ୍ଣି ସଜ ଉଠାଇବୁ ॥
ଶୁଣ ହୋ ଅର୍ଜ୍ଜୁନ ଦାସରାଜାକୁ ଏମାନ । ବୁଝାଇଣ କହିଲୁଁ ଯେ ବିଧି ଯେସନ ॥
ଗୃହରେ ତୋହର ନବଡନ ପାକ କରି । ପିତୃଙ୍କୁ କରିବୁ ତୋଷ ମନେ ଭକ୍ତି ଭରି ॥
ଅତିଥି ଅଭ୍ୟାଗତେ ଯେ ନିରାଶ ନୋହିବେ । ଏହି ପରକାରେ ଇଷ୍ଟଦେବ ଯେ ପୂଜିବେ ॥
ଅପୁତ୍ରିକ ହୋଇ ଯେବେ ଏମନ୍ତ କରଇ । ପୁତ୍ର ଅର୍ଥେ ମାନସିକ କରିଣ ପୂଜଇ ॥
ବିଶ୍ୱକର୍ମା ତାହାକୁ ଦିଅଇ ପୁତ୍ରଦାନ । ଦାସରାଜା ଭଲେ ଏହା ହେତୁକରି ଶୁଣ ॥
ଯାହାର ସେ ଇଷ୍ଟ ଜାଣ ବିଶ୍ୱକର୍ମା ମୂର୍ତ୍ତି । ଅପୁତ୍ରିକେ ପୁତ୍ରଦାନେ ସେହିଟି କାରଣୀ ॥
ଏ ଗ୍ରନ୍ଥ ଶୁଣିମ ଯେହୁ ଇଷ୍ଟ ନ ମାନିବ । ଏ ବିଧି ପ୍ରମାଣେ ଯେବେ ପୂଜା ନ କରିବ ॥
ମନେ ଗର୍ବ ଧରି ଇଷ୍ଟ ନ ମାନିବ ଯେବେ । ଦେବୀର ମେରିଆ ସେହୁ ହୋଇବାକ ତେବେ ।୬୦।

ଏହା ଶୁଣିକର ଯେହୁ ଇଷ୍ଟ ନ ମାନଇ । ଶତେ ଜନ୍ମଯାଏ ତାକୁ ଯମ ଦଣ୍ଡୁ ଥାଇ ॥
କାହିଂ ତାକୁ ଠାବ ନାହିଂ ଦାସରାଜା ଶୁଣ । ଦୁଃଖୀହୁଂ ଦୁଃଖୀ ହୋଇ ସେ ନରକେ ପତନ ॥
ଲକ୍ଷେ ଅରଜିଲେ ତା ପଛକୁ ନ ଅଣ୍ଟଇ । ଧନେକ ଖାଇଲେ ଆରଦନକୁ ନଥାଇ ॥

ଏହିମତ ମାହାଦୁଃଖେ ଧନ ସେ କଟାଇ । ଦରିଦ୍ର ପଣ ଯେ ତାକୁ ଗୋଡ଼ାଇଣ ଥାଇ ॥
ଯେଣେ ଯିବ ତେଣେ ତାକୁ କାହିଂ ନାହିଂ ସୁଖ । ଅନ୍ତକାଳେ ପ୍ରାପତ ହୁଅଇ ପୁଣି ନର୍କ ॥

ଏକଜନ୍ମ ପାପ କରେ ଶତେଜନ୍ମ ଥାଇ । ଧର୍ମ ବୁଡ଼ାଇଲେ ଅଛବକୁ ଯୋଗ୍ୟ ନୋହି ॥
ଇହ ପର ଦୁଇ ଲୋକ ଗଣିତା ସେ ନୋହି । ଯଉଂମାନେ ନଜାଣନ୍ତି ଇଷ୍ଟଗୋସି ଥାଇ ॥

କୁଳଗୋସି ଛାଡ଼ି ଯେବେ ଅମଡ଼ା ମାଡ଼ିଲା । ଇହ ପର ବେନି ଲୋକେ ପତିତ ହୋଇଲା ॥
ଅଗୋସିଆ ବୋଲି ତାକୁ ନଛୁଅଂନ୍ତି କେହି । ପତିତରେ ପତିତଟି ଅଟଇ ଯେ ସେହି ।୭୯।

ଇଷ୍ଟ କୁଳଗୋସି ପୂଜା ଧର୍ମ ଆଚରିବ । ସକଳ ଜୀବରେ ସେ ଯେ ଦୟା ରଖିଥିବ ॥
ଅତିଥି ଅଭ୍ୟାଗତଙ୍କୁ ନିରାଶ ନକର । ଶକ୍ତି ଅନୁକ୍ରମେ କିଛି ଦେବ ଦାନକରି ॥

କଳୁଷ ନ ରଖି ମନେ ସୁଚିନ୍ତରେ ଦେବ । ପୂର୍ଣ୍ଣଇନ୍ଦୁ ପ୍ରାଏ ଧର୍ମ ଉଦେ ହୋଇଥିବ ॥
ପିଣ୍ଡ ଯେତେବେଳେ ଛାଡ଼ିଯିବାକୁ ହୁଅଇ । ସେହୁଧର୍ମ ତେତେବେଳେ ଆସି ଛିଡ଼ାହୋଇ ॥
ଯମଦୂତମାନେ ଦେଖୁ ଛାଡ଼ିଣ ପଳାନ୍ତି । ବିଷ୍ଣୁଦୂତେ ପୁଷ୍ପକ ବିମାନେ ତାକୁ ନିଅନ୍ତି ॥

ଜୀବନ୍ତରେ ଧର୍ମସଖା ମରନ୍ତେହେଂ ସଖା । ବିଷ୍ଣୁଗଣ ମଧ୍ୟେ ପୁଣି ହୁଅଇ ସେ ଲେଖା ॥
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ପାଇ । ଯମଦଣ୍ଡ ଆଉ ତାକୁ କେଭେଂ ନ ଲାଗଇ ॥

ଶୁଣ ହେ ଅର୍ଜୁନ ଦାସରାଜାକୁ ଏସନ । ସକଳ ବୁଝାଇ ଯହୁଂ କହିଲୁ ଏମାନ ॥
ଶୁଣିକରି ଦାସରାଜା କଲା ବହୁ ତୁଷ୍ଟି । ଦେଖିଲୁ ତାହାର ଆମ୍ଭେ ବିନସ୍ତ୍ର ଭଗତି ॥
ଦଶାକାଳେ ତାହାକୁ ଯେ ପ୍ରସନ୍ନ ହୋଇଲୁଂ । ଏହି ଗର୍ଭେ ପୁତ୍ର ରୂ ପାଇବୁ ଆଜ୍ଞାଦେଲୁଂ ॥
ବେନି ଗର୍ଭେ ବେନି ପୁତ୍ର ହୋଇବ ତୋହର । ହୀରା ନୀଳା ବୋଲି ନାମ ଦେବୁ ଯେ ତାଙ୍କର ॥
ବର ଦେଇ ବୈକୁଣ୍ଠକୁ କଲୁ ଯେ ଗମନ । ଏ ବିଧିରେ ଦାସରାଜା ପୂଜିଲାକ ପୁଣ ।୮୧।

ବେନି ବରଷରେ ବେନି ପୁତ୍ର ଜାତ କଲା । ହୀରା ନୀଳା ବୋଲିକରି ନାମ ତାଙ୍କ ଦେଲା ॥
ତେଣୁକରି ଅପୂର୍ବିକ କଷ୍ଟୁଂ ତରିଗଲା । ଶୁଣ ହେ ଅର୍ଜୁନବୀର କୁନ୍ତୀଙ୍କର ବଳା ॥
ସେହି ବିଶ୍ୱକର୍ମା ପାଦେ ପଶିଲା ଶରଣ । ଦୀନ ଅଚ୍ୟୁତ ଦାସକୁ ରଖ ନାରାୟଣ ।୮୨।

ଇତିଶ୍ରୀ କୈବର୍ତ୍ତଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ ଦାସରାଜା
ଇଷ୍ଟଦେବପୂଜା କଥନେ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ ଅଷ୍ଟାଦଶୋଽଧ୍ୟାୟଃ ।

---

## ॥ ଊନବିଂଶ ଅଧ୍ୟାୟ ॥

ଅର୍ଜୁନ ବୋଇଲେ ପ୍ରଭୁ କହିଲତ ଭଲ । କଥାର ପରମ ସନ୍ଧି ଗୁପତେ ରଖିଲ ।୧।
ଇଷ୍ଟପୂଜା ବିଧି ଦାସରାଜାକୁ କହିଲ । ସଦବୃତ୍ତି କରିବାକୁ ତାକୁ ଆଜ୍ଞାଂ ଦେଲ ॥

କେମନ୍ତ ପ୍ରକାରେ ସେ ଯେ ସୁବୃତ୍ତିକ ଗଲା । ଅଗୋଚର ବୃତ୍ତି ତାକୁ କିଏ ଶିଖାଇଲା ॥
ତୁମ୍ଭ ମୁଖୁଂ ଶୁଣି ମୋ ସଂଶୟ ଦୂରହେଉ । ଶ୍ରୀମୁଖ ବଚନ ଯୁଗେ ଯୁଗେ ରହିଥାଉ ॥
ଶ୍ରୀକୃଷ୍ଣ ବୋଇଲେ ପାର୍ଥ ପ୍ରଶ୍ନକଲୁ ଯାହା । ସାବଧାନ ହୋଇ ଶୁଣୁ କହଇ ମୁଂ ତାହା ॥

ପୂର୍ବେ ସତ୍ୟଯୁଗେ ରୁଦ୍ର ବ୍ରହ୍ମା ଅଟେ ମୁହିଂ । ବିଶ୍ୱକର୍ମା ରୂପେ ମୁହିଂ ସ୍ରର୍ଜନା କରଇଂ ॥
ବ୍ରହ୍ମାର ସ୍ରର୍ଜନା ମୁହିଂ ପୃଥିବୀରେ କଲି । ବିଶ୍ୱକର୍ମା ହୋଇ କାଷ୍ଠେ ଟିଙ୍କି ନିର୍ମାଣିଲି ॥

ମୁଣ୍ଡା ପାହାର ଆବର ଭରଣ୍ଡି ଖୋଳିଣ । ପକ୍ଷି ଲଗାଇଣ ଖମ୍ବ ପକାଇଲି ପୁଣ ॥
ଯଜ୍ଞାଂଶାଳା ବୋଲି ଚୂଲି ପାରିଲଇଂ ମୁହିଂ । ଶୁଷ୍କକାଷ୍ଠ ଭରି ତହିଂ ଅଗ୍ନି ଯେ ଲଗାଇ ॥

ସିଝିକଲି ଧାନ ଆଣି ପାଖରେ ରଖିଲି । ପାର୍ବତୀଙ୍କ ନେଇ ଖରମୁଣ୍ଡେ ବସାଇଲି ।୧୦।
ନଚିକାଳ ପିଣ୍ଡି ହସ୍ତେ ଧରିଣ ପାର୍ବତୀ । ଖରସ୍ତେ ଧାନ ଭରିଣ ସେ ଖରଡ଼ି ଅଛନ୍ତି ॥
ଈଶ୍ୱର ତାହା ଦେଖିଣ ହସି ଯେ ଉଠିଲେ । କାହିଂ କେତେ ଜିବିକା ତୁ ଆଣିଛୁ ବୋଇଲେ ॥

ଖରଡ଼ା ଧାନ ଖରି ହୋଇଲା ସମସର । ପାର୍ବତୀ ସେ ଧାନ ଦେଲେ ଭରଣ୍ଡିରେ ଭରି ॥
ଈଶ୍ୱର ଯେ ଟିଙ୍କି ତୋଳି ପକାନ୍ତି ପାହାର । ପାର୍ବତୀ ଯେ ଶୁଖାଇ ଦିଅନ୍ତି ତରତର ॥
ଏହିମତ ଚୁଡ଼ା ଖରି ସଜାଡ଼ି ହୋଇଲା । ସେହି ଜଳପାନ ନେଇ ବଜାରେ ବିକିଲା ॥

ସିଝାଇଲି ଧାନ ପୁଣି ନେଇ ଖରଡ଼ଇ । ତାହାକୁ ଝରଡ଼ି ପୁଣି ଟିଙ୍କିରେ ଭରଇ ॥
ତାହାର ତଣ୍ଡୁଳ ପୁଣି ହୁଡ଼ୁମ୍ବ କରଇ । ଲିଆ ମୁଢ଼ି ଉଖୁଡ଼ା ସମସ୍ତ କଲି ତହିଂ ॥

ପୁଣି ଯେ କାକରା ଲଡ଼ୁ ଶାକର ବର୍ଣ୍ଣିଜେ । ସବୁ ମୁହିଂ ଶିଖାଇଣ ଦେଲି ଦାସବ୍ରଜେ ॥
ଶାକର ଯେ ଲଡ଼ୁ କରି ତହିଂରେ ମିଶାଇ । ସେହି ଚୂଡ଼ାଭଜା ମୋତେ ନୈବେଦ୍ୟ ଦିଅଇ ।
ଆନନ୍ଦ ମନରେ ମୁହିଂ କଲି ତାହା ଭୋଗ । ତେଣୁ ଚୂଡ଼ାଭଜା ପୁଣି ଦେବଆଳ ଯୋଗ ।୨୦।
ଏହିମତ ଚୂଡ଼ାଭଜା ସଂସାରେ ଚଳିଲା । ସପ୍ତଦ୍ୱୀପା ପୃଥିବୀରେ ବିଖ୍ୟାତ ହୋଇଲା ॥

ଅର୍ଜ୍ଜୁନ ବୋଇଲେ ପ୍ରଭୁ ଶ୍ରୀରାମ ଗୋସାଇଂ । ଭଲ କଥା ଗୋଟିଏ ଯେ ଶୁଣିଲଇଂ ମୁହିଂ ॥
ତୁମ୍ଭେ ଯେ ବୋଇଲ ଦାସ ସଦବୃତ୍ତି କଲା । ଜଳପାନ ନେଇଣ ସେ ବଜାରେ ବିକିଲା ॥
ଚୂଡ଼ାଭଜା ଉଖୁଡ଼ା ଯେ ବୁଝିଲି ସମସ୍ତ । ଜଳପାନ ବୋଲି ନାମ ହୋଇଲା କେମନ୍ତ ॥

ଏ କଥା ପ୍ରବୋଧି ମୋତେ କହିବା ବୁଝାଇ । ତୁମ୍ଭର ଶ୍ରୀମୁଖୁ ଶୁଣି ପ୍ରତେ ଯିବ ମୁହିଂ ॥
ଶ୍ରୀହରି ବୋଇଲେ ପାର୍ଥ ସାବଧାନେ ଶୁଣ । ଜଳପାନର ବିଧାନ କହିବ ଯେ ପୁଣ ॥

ବ୍ରହ୍ମମନ୍ତ୍ର ସୃଷ୍ଟି ବୋଲି ଜାଣ ତୁ ଅର୍ଜ୍ଜୁନ । ଧରଣୀ ମଧରେ ଯେତେ ଉପୁଜଇ ଧାନ ॥
ବ୍ରହ୍ମା ବିଷ୍ଣୁ ମହେଶ୍ୱର କୃଷିକାରୀ ଜାଣ । ଶଙ୍କରଙ୍କର ଗୃହ ଭାଗ ଅଟଇ ସେ ଧାନ ॥
ପୂର୍ବେ ଯୁଗ ପ୍ରଳୟରେ ବ୍ରହ୍ମପ୍ରଳେ ହେଲା । ଧରଣୀ ବୁଡ଼ିଣ ଜଳ ଆକାଶେ ଲାଗିଲା ॥

ସେ ପ୍ରଳୟରେ ଯେ ବ୍ରହ୍ମାଣ୍ଡ ନାଶ ଗଲା । ଜୀବଜନ୍ତୁ ଆଦି କରି କିଛି ନ ରହିଲା ।୩୦।
ଅପୂଜକ ହୋଇ ତେଣୁ ରହିଲେ ଶଙ୍କର । କ୍ଷୁଧାଭରେ ତାଙ୍କର ଯେ ପୋଡ଼ଇ ଉଦର ॥
ବ୍ୟାକୁଳ ହୋଇଣ ସେ ଲକ୍ଷ୍ମୀଙ୍କି ଧ୍ୟାନ କଲେ । ତତକ୍ଷଣେ ଲକ୍ଷ୍ମୀ ଆସି ପାଶରେ ମିଳିଲେ ॥

ଲକ୍ଷ୍ମୀଙ୍କର ମୁଖ ଚାହିଂ ବୋଲନ୍ତି ଶଙ୍କର । କ୍ଷୁଧାରେ ବ୍ୟାକୁଳ ପ୍ରାଣ ନ ରହେ ଶରୀର ॥
ଲକ୍ଷ୍ମୀ ଯେ ବୋଇଲେ ଶୁଣ ପାର୍ବତୀଙ୍କ ପତି । ଯେତେ ଧାନ ଅମଳ ହେଉଛି ଏ ଧରଣୀ ।୩୪।

ସେ ଯାହାର ଭାଗମାନ ବାଣ୍ଟିଣ ସେ ନେଲେ । ତୁମ୍ଭର ଯେ ଭାଗ ଥିଲା ତାକୁ ଭାଗ କଲେ ।୩୪।
ସେ ଜଳେ ତମ୍ବୁଳ ଆଉ ଯେତେ ରହିଥିଲା । ପ୍ରଳୟ ଜଳରେ ସେହୁ ସର୍ବ ନାଶ ଗଲା ॥
ଆଉ ତ ଭଣ୍ଡାରେ ନାହିଁ ତୁମ୍ଭ ଭୋଗ ପାଇଁ । ତୁମ୍ଭ କ୍ଷୁଧା ଶାନ୍ତ ପାଇଁ କି ଦ୍ରବ୍ୟ ଦେବଇଁ ।
ଲକ୍ଷ୍ମୀ ମୁଖ ଶୁଣିଣ ଶଙ୍କର ଶୋକ କଲେ । ଏ ପିଣ୍ଡକୁ ଦାହ କର ବୋଲି ଆଜ୍ଞା ଦେଲେ ।
ଲକ୍ଷ୍ମୀ ଠାକୁରାଣୀ ଦେଖି ବ୍ୟାକୁଳ ହୋଇଣ । ପାଟପଣତକୁ ସେ ଯେ ଦେଲେ ହାଣି ଇଣ ॥
ଗୋଟିଏକ ଧାନ ପୁଣି ପଣତୁ ପଡ଼ଇ । ସେ ଧାନକୁ ଲକ୍ଷ୍ମୀ ବେଗେ ହସ୍ତରେ ଧରଇ ॥
ମାଟିଭାଣ୍ଡେ ଜଳ ଦେଇ ଅଗ୍ନିରେ ରଖିଲେ । ସିଝାଇଣ ପୁଣି ତାକୁ ଭାଣ୍ଡେ ଟେରଡ଼ିଲେ ।୪୧।
ଟେରଡ଼ିଣ ତାକୁ ଚିର୍ଣ୍ଣି ଭରଣ୍ଡିରେ ଭରି । ଚୂଡ଼ା ଗୋଟିଏକ କଲେ ଅତି ଯତ୍ନ କରି ॥
ସେ ଚୂଡ଼ାକୁ ଘେନ ଲକ୍ଷ୍ମୀ ଜଳପାତ୍ରେ ଧୋଇ । ସେହି ଜଳ ମହେଶଙ୍କ ମୁଖେ ଦେଲେ ନେଇ ॥
ଏହି ଜଳ ପାନ କର ଲକ୍ଷ୍ମୀ ଆଜ୍ଞା ଦେଲେ । ଚୂଡ଼ା ଗୋଟି ସେ ଜଳରେ ମିଳାଇଣ ଦେଲେ ॥
ସେହି ଚୂଡ଼ା ପାଣିକି ଯେ ଶଙ୍କର ଭକ୍ଷିଲେ । କ୍ଷୁଧାଶାନ୍ତ ହେଉ ଲକ୍ଷ୍ମୀ ଅସ୍ତୁକାର କଲେ ॥
ଲକ୍ଷ୍ମୀଙ୍କ ହସ୍ତରେ କ୍ଷୁଧାଶାନ୍ତ ଯେ ହୋଇଲା । ଜଳପାନ ବୋଲି ତହିଁ ନାମ ବୋଲାଇଲା ॥
ଜଳପାନ ନାମ ହେଲା ସଂସାରେ ବିଖ୍ୟାତ । ମନ ସ୍ଥିର କରି ତୁ ହେ ଶୁଣ ବୀର ପାର୍ଥ ॥
ଜଳପାନ କଥା ଏହୁ ହୋଇଲା ସମ୍ପୂର୍ଣ୍ଣ । ଭଣଇ ଅଚ୍ୟୁତାନନ୍ଦ ରଖ ଭଗବାନ ।୪୮।

ଇତି ଶ୍ରୀ କୈବର୍ତ୍ତ ଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ
ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ନାମ ଊନବିଂଶୋଽଧ୍ୟାୟଃ ।



## ॥ ବିଂଶ ଅଧ୍ୟାୟ ॥

ଅର୍ଜ୍ଜୁନ ବୋଇଲେ ପ୍ରଭୁ ଶୁଣିମା ଗୋସାଇଁ । ସକଳ ଜୀବକୁ ଦେଲ ଦାସରାଜା କହି ।୧।
ଚୂଡ଼ା ଯେ ଉଖୁଡ଼ା ଲଡ଼ୁ ଶାକର ସହିତ । ଦାସରାଜା ବଣିଜ ତ କଲା ଏ ସମସ୍ତ ॥
କାଠଘୋଡ଼ା କାହିଁପାଇଁ ପୂଜନ୍ତି ଗୋସାଇଁ । ଏଥିର ମରମ ପ୍ରଭୁ କହ ମୋତେ ସେହି ॥
ଆନନ୍ଦ ହୋଇଣ ତନୁ ହୋଏ ପୁଲକିତ । ଶୁଣିବାକୁ ମନ ହୋଇଛି ଏହି ଗୂଢ଼ତତ୍ତ୍ୱ ॥
ଭଗବାନ ଶୁଣି ତହୁଁ ବୋଲନ୍ତି ଅର୍ଜ୍ଜୁନ । ଚଇତ୍ର ପୂର୍ଣ୍ଣିମୀ ଦିନ ଘୋଡ଼ାର ବିଧାନେ ॥
ବ୍ରହ୍ମାଣ୍ଡ ପ୍ରଳୟ ତୋତେ କହିଅଛୁ ସର୍ବ । ଯହିଁ ବଟପତ୍ରେ ମୁହିଁ କରିଥିଲି ଠାବ ॥
ଆଜ୍ଞାଦ୍ୟନ୍ତେ ବଟପତ୍ର ତୁରଙ୍ଗ ହୋଇଲା । ସେହି ଅଶ୍ୱ ଗୋଟି ଦାସରାଜା ଘେନିଗଲା ॥
ସିଂହଳ ଦ୍ୱୀପରେ ନେଇ ବାହନ କରଇ । ଏହିମତେ କେତେକ ବରଷ ବହିଯାଇ ॥
ଲକ୍ଷେ ସମ୍ବତ୍ସର ତାକୁ ବାହନ ସେ କଲା । ଅଷ୍ଟମୀ ଗୁରୁବାରରେ ତା ପ୍ରାଣ ଛାଡ଼ିଲା ॥
ସେ ଘେନି ତାହାର ଧନ ପୂରିବାକୁ ନାହିଁ । ତାହାର ମହିମା ଶୁଣ ଅରଜୁନ ତୁହି ।୧୦।
ଲକ୍ଷ୍ମୀଙ୍କ ବାରରେ ଅଶ୍ୱ ପରାଣ ତେଜିଲା । ଲକ୍ଷ୍ମୀର ସ୍ୱରୂପ ଏକ ନାରୀ ସେ ହୋଇଲା ॥
ଦାସରାଜା ଛାମୁରେ ସେ ଗୋଦନ କରଇ । ମୋହ ମଲା କାଠରୂପେ ପୂଜା ଯେ ହୁଅଇ ॥
ବାସେଲୀ ବୋଲିଣ କଏ ତାକର ଗୋସାଇଁ । ଆହାରେ ବିଧାତା ଜନ୍ମ ଦେଲୁ କିସ ପାଇଁ ॥
ଦାସରାଜା ଛାମୁରେ ଯେ ବାସେଲୀ ଲୋଟଇ । ତୁମ୍ଭ ପାଦପଦ୍ମ ଛାଡ଼ି କାହିଁ ଯିବି ମୁଇଁ ।୧୪।

ତୁମ୍ଭର ସନ୍ତାନ ସଙ୍ଗେ ମୁହିଂ ବିହରିବ । ଖେଡ଼ା କଉତୁକକରି ଦିନ ବଞ୍ଚୁଥିବ ।୧୫।
ଯେମନ୍ତ କହି ବାସେଲୀ ରାଜାର ଗ୍ରାମୁରେ । ମହାଶୋକ କରି ସେ ଯେ ଲୋଟଇ ଭୂମିରେ ।।
ବାସେଲୀକି ଦେଖି ରାଜା ତରସ୍ତ ହୋଇଲା । ଦେବୀଙ୍କ ସ୍ୱରୂପ ଦେଖି ମନେ ଭଏ କଲା ।।
ବୃଦ୍ଧି ନ ସ୍ଫୁରଇ କଣ୍ଠ ହୋଇଲା ମଉନ । ଅନ୍ତର୍ଗତେ ମୋର ପାଦେ ଲଗାଇଲା ଧ୍ୟାନ ।।
ତେତେବେଳେ ମୁହିଂ ପୁଣି ପ୍ରସନ୍ନ ହୋଇଲି । ବାସେଲୀ ବିଧିବିଧାନ ରାଜାକୁ କହିଲି ।।
ଏହାକୁ ପୂଜିବୁ ଜନ୍ମେ ଜନ୍ମେ ଅବତରି । ଏହାର ଯେ ନାମ ଅଟେ ଅଶ୍ୱିନୀ ବାସେଲୀ ।।
ମନ ସନ୍ତୋଷେ ଏହାକୁ ବଳିଭୋଜୀ ଦେବୁଂ । ଅନ୍ତକାଳେ ବଇକୁଣ୍ଠ ଭୁବନ ପାଇବୁଂ ।।
ଦାସରାଜା ବୋଲେ ପ୍ରଭୁ ନ ଜାଣେ ବିଧାନ । କେମନ୍ତେ ପୂଜିବ ମୁହିଂ କହ ନାରାୟଣ ।୨୨।
ଦାସରାଜା ମୁଖ ମୁହିଂ ବୋଲନ୍ତି ଶ୍ରୀହରି । ଦ୍ୱାଦଶଖଣ୍ଡ କରିବୁ ବାଉଂଶକୁ ଚିରି ।।
ଅଶ୍ୱର ସାଦୃଶେ ତୁହି ପନ୍ତରା କରିବୁ । କାଷ୍ଠରି ପିତୁଳା ମୁଣ୍ଡ ତହିଂ ଲଗାଇବୁ ।।
ଦନ୍ତ ନାସା ଚକ୍ଷୁ କର୍ଣ୍ଣ ହୋଇଥିବ ପୁଣ । କାଇମାଟି ରଙ୍ଗ ଦେଇ ବିଚିତ୍ର କରିଣ ।।
ତା ଉପରୁଂ ଚଉପାଶେ ପାଟଶାଢୀ ଦେଇ । ଅତି ଯତ୍ନକରି ଅଶ୍ୱ ମଣ୍ଡନ କରାଇ ।।
ପୂର୍ଣ୍ଣମୀର ଦିନୁ ଯେ ଅଷ୍ଟମୀ ଦିନ ଯାକେ । ଏହାକୁ ପୂଜିବୁ ଦାସରାଜା ସ୍ନେହେଶ୍ରେଁକେ ।।
ଅଶ୍ୱର ଯେ ମୁଣ୍ଡ ନେଲା ଦାସରାଜା ପୁଣ । ଆଉ ଯେ ରହିଲା ସବ ତାହା କଥା ଶୁଣ ।।
ଦାସରାଜାଠାରୁ ପୁଣି ଶାକରାଜା ନେଲା । ଏହି ପୂର୍ଣ୍ଣିମାରେ ଇଷ୍ଟ ପୂଜିବ ବୋଇଲା ।।
ମୋହର ଯେ ବାଞ୍ଛା ଅଛି ବାସେଲୀ ପୂଜିବ । ଅପୁତ୍ରିକ ହୋଇଛି ମୁଂ ସୁପୁତ୍ର ପାଇବ ।୩୦।
ଏହିରୂପେ ଚଟୁଆଏ ଏବେ ଯେହୁ ନେଲା । ଲଣ୍ଡିକୁ ନେଇଣ ଅଶ୍ୱ ପଛାନ୍ତେ ସାଜିଲା ।।
ଚଟୁ ପୂଜା ପୁଚ୍ଛପୂଜା ଭ୍ରଷ୍ଟ ଯେ ତାହାର । ବାସେଲୀ କୃପାରେ ସେହୁ ପାଇଲା କୁମର ।।
ସେ କୁମର ଶାକର ବେଉସା ଯହିଂ କଲା । ଗୁଡ଼ିଆ ସାଧୁ ବୋଲିଣ ନାମ ଭଣାଇଲା ।।
ଦାସରାଜା ବଂଶରୁ ଯେ ଉତ୍ପତ୍ତି ହୋଇଲା । ଚଟୁ ପିଣ୍ଡି ପୂଜା ତାର ବଂଶରେ ରହିଲା ।।
ମହିଷିରି ଶିବଖଣ୍ଡ ତେଲିକାର ନେଲା । ଗଣ୍ଡି ମୂଳେ ଆପିଣ ଯେ ଗଣ୍ଡି ପୂଜା କଲା ।।
ଅଶ୍ୱିନୀ ବାସେଲୀ ତହିଂ ସନ୍ତୋଷ ହୁଅଇ । ସାବଧାନେ ହୋଇ ଶୁଣ ଯୁଧିଷ୍ଠିର ଭାଇ ।।
ଅସ୍ଥିରେ ଯେ ଯେଉଂ ଚର୍ମଶିର ଲାଗିଗଲା । ଶୂଦ୍ର ଯେ ତାହାକୁ ନେଇ କ୍ଷୁର ମୁଠି କଲା ।।
କ୍ଷୁର ନହୁରୁଣୀ ନେଇ ତହିଂରେ ରଖଇ । କାଳିକା ପୂଜାକୁ ଇଷ୍ଟ କରିଣ ପୂଜଇ ।।
ମହିଷିରି ଖୋଳ ଡମ୍ବରୁ ଯେ ତାର ଥାଇ । ସେ ଡମ୍ବରୁ ଈଶ୍ୱର ଯେ ରଖିଲେକ ନେଇ ।।
ମର୍କଟର ଗ୍ରୀବ ପୁଣି ତହିଂରେ ଗ୍ରୀଇଲେ । ଡ଼ିବ ଡ଼ିବ ଡମ୍ବରୁ ଶଙ୍କର ବଜାଇଲେ ।୪୦।
ସେ ଡମ୍ବରୁ ଶବ୍ଦ ଯେତେ ଦୂରକୁ ଶୁଭଇ । ଭୂତ ପ୍ରେତ ପିଶାଚ ଯେ ଗ୍ରାଡ଼ିଣ ପଳାଇ ।।
ସେ ଡମ୍ବରୁ ବାଜଗିର ଇଷ୍ଟ ଯେ କରନ୍ତି । ଘଟପୂଜାରେ ଆପିଣ ତାକୁ ଯେ ପୂଜନ୍ତି ।।
ଧନଶବାସ୍ତ୍ରରୀ ତହିଂ ଥିଲା ପୁଣି ନାଡ଼ି । ପାଙ୍ଗଣ ନେଇଣ ତାକୁ ମୃଦଙ୍ଗ ଯେ ଭିଡ଼ି ।।
ମୃଦଙ୍ଗ ଭିଡ଼ିଣ ସେ ଗାନ୍ଧାର ଯାହାକରି । ଦେବଆଲେ ମୃଦଙ୍ଗକୁ ନେଇ ପୂଜାକରି ।।
ଆଉ ଯେଉଂ ଅସ୍ଥି ଚର୍ମ ତାହାର ରହିଲା । ଧରଣୀ ମଧ୍ୟରେ ସେହୁ ସମାଧି ହୋଇଲା ।।
ଶୁଣ ହେ ଅର୍ଜ୍ଜୁନ ଅଶ୍ୱଯାହାର ଭିଆଣ । ଯେମନ୍ତ ପ୍ରକାରେ ଦାସରାଜା କଲା ପୁଣ ।।
ବାସେଲୀ ଥାପନା ବିଧି ମୁହିଂ ବତାଇଲି । ଦାସରାଜାକୁ ବସାଇ ଶିଖାଇଣ ଦେଲି ।୪୭।

ଅଣିମା ବାସେଲୀ ନେଇ ତାହାଙ୍କୁ ଆପିବ । ପଞ୍ଚସ୍ଥରେ ମୁଣ୍ଡନେଇ ତହିଂ ସଜାଇବ ॥
ଚକ୍ଷୁରେ କଜ୍ଜଳ ତାର କପାଳେ ଚନ୍ଦନ । ତା ପରେ ସିନ୍ଦୂରବିନ୍ଦୁ ଆପିବ ଯତନ ॥
ଅଶ୍ୱର କଣ୍ଠରେ ଜବାପୁଷ୍ପହାର ଦେବ । ଧୂପ ଦୀପ ନଇବେଦ୍ୟ ସେଠାରେ କରିବ ।୫୦।

ପଞ୍ଚସ୍ଥରେ ମୁଣ୍ଡ ଚଢ଼ାଇବା ମନ୍ତ୍ର :

ଅର୍ଦ୍ଧସ୍ୟ ଗୌରୀ ସର୍ବସ୍ୟ ନମୋଃ ନମସ୍ତେ ନମସ୍ତେ ।
ଏ କାଷ୍ଠ ଅଶ୍ୱଶିରେ ବଜସ୍ଥ କର ଗୋ ତ୍ରିପୁରସୁନ୍ଦରୀ ।
ଏମନ୍ତ କହି ଏହା ପଢି ମୁଣ୍ଡ ଚଢ଼ାଇବ ।
ଏବେ ଜୀବନ୍ୟାସ ମନ୍ତ୍ର :

ଓଂ ଦନ୍ତଂ କଟିକଟି ଆଖି ମିଟି ମିଟି । ଷଟଚକ୍ର ମଧ୍ୟରେ ବସିଷ୍ଟ ମଣ୍ଡଳେ ହରଙ୍କର ଥିଉ ॥

କଥା:-ଏହାକୁ ତିନଥର ପଢ଼ି ଘୋଡ଼ାର କର୍ଣ୍ଣରେ ଶୁଣାଇଲେ ଘୋଡ଼ା ଜୀବନ୍ୟାସ ମନ୍ତ୍ର ପାଏ । ତହିଂ ଉତ୍ତାରୁ ନୈବେଦ୍ୟ ଦେବ । ଘୃତଦୀପ ଧରି ସାତ ପାଞ୍ଚ ଅହ୍ୟ ଧ୍ୱନି ହୁଳହୁଳି ଦେଇ ଅରୁଆ ତଣ୍ଡୁଳ ଦୁବ ବରକୋଳିପତ୍ର ନେଇ ଘୋଡ଼ାକୁ ବନ୍ଦେଇବା ବିଧି କହି ।

ଘୋଡ଼ା ଶୀତଳା ମନ୍ତ୍ର :

ଓଁ ଶ୍ରୀ ନମୋ ତ୍ରିପୁରସୁନ୍ଦରୀ । ଅଷ୍ଟଭୁଜା ଜଗତତାରିଣୀ ।
ଆଦ୍ୟମାତା ପରମବୈଷ୍ଣବୀ ବାସେଲୀ ନୈବେଦ୍ୟ ସ୍ୱାହା ।

ନମୋ ନମୁ ବାସେଲୀ ଗୋ ତୋହର ଚରଣ । ଅଭୟ ବରଦାୟିନି କର ପରିତ୍ରାଣ ॥
ନମୋ ନମସ୍ତେ ବାସେଲୀ ପାଦପଦ୍ମ ଦୁଇ । ତୋହୋର କୃପାରେ ମୁହିଂ ଯାତ୍ରା ଯେ କରଇ
ନମସ୍ତେ ବାସେଲୀ କଲ୍ପବଟର ଦୁହିତା । କାରୁଣ୍ୟ ଜଳରେ ଉଦ୍ଭବ ହୋଇଥାଉ ଥିତା ॥
ସିନ୍ଧୁର ମଧ୍ୟରେ ମହାମାୟୀ ରହିଥାଉ । ନବାକାର କୋଳକରି ଉଦ୍ଭିନ୍ନ ନଦ୍ରା ଯାଉ ॥
ତହିଂରେ ଅଶ୍ୱ ପାଳନ୍ତୁ ସିଂହଳ ଦ୍ୱୀପରେ । ଅଶ୍ୱରୂପେ ସ୍ଥିତ ହେଲୁ ଦାସରାଜା ଘରେ ॥
କାଷ୍ଠରେ ନିର୍ମାଣି ଦେବୀ ଆସନ ହୋଇଲୁ । ସିଂହଳଦ୍ୱୀପରେ ଯେ ବାସେଲୀ ବୋଲାଇଲୁ ॥
ରମ୍ୟକ ଦ୍ୱୀପରେ ହୋଇ ରହିଲୁ ଅମ୍ବିକା । କର୍ଣ୍ଣାଟ ଦେଶେ ରହିଲୁ ବୋଲାଇ ଚଣ୍ଡିକା ।
କାମରୂପ ଦେଶେ ରହିଲୁ କାମାକ୍ଷୀ ବୋଲାଇ । ହେଙ୍ଗୁଳ ଦେଶେ ରହିଲୁ ନାମ ହେଙ୍ଗୁଳାଈ ॥
ତୈଲଙ୍ଗ ଦେଶେ ରହିଲୁ ନାମ ନାରାୟଣୀ । ଘୃତକାଠାରେ ରହିଲୁ ଘୃତକାଈ ଭଣି ॥
ବାରାଣସୀ ନଗରେ ତୁ ବନଦେବୀ ହୋଇ । ଜମ୍ବୁଦ୍ୱୀପେ ଦୁର୍ଗା ନାମ ତୁ ହିଟି ବୋଲାଉ ।୬୦
ଏହିପରି ଅନେକତ ରୂପେ ଯେ ରହିଲୁ । କାଷ୍ଠରେ ନିର୍ମାଣ ହୋଇ ପୂଜା ଭୁଂ ପାଇଲୁ ॥
ମୋର ଇଷ୍ଟ ବୋଲି ତୋତେ ମୁହିଂ ଯେ ପୂଜଇ । ତୋର ରୂପ ଦେଖି ମୁହିଂ ବନ୍ଦନା କରଇ ॥

ନମସ୍ତେ ବାସେଲୀ ମାଗୋ ତୋର ରୂପରାଶି । ଅଂସ୍ଥେଳା କୁଙ୍କୁମେ ତନୁ ସୁରଞ୍ଜିତ ଦଶି ॥
ରଙ୍ଗପାଟେ ଧଡ଼ି ମାଗୋ କଳାମେଘୀ ଶାଢ଼ୀ । ତମାଳ ତନୁରେ ମାଗୋ ଯାଉଅଛି ଜଡ଼ି ॥
ପଦ୍ମରେ ଅଳତା ମାଗୋ ଅତି ଶୋଭାବନ । ଝୁଣ୍ଟିଆ ଅଙ୍ଗୁଳିମାନଙ୍କରେ ବତପନ ॥
ଅଶ୍ୱର ସ୍ୱରୂପ ହୋଇ ଏମନ୍ତ ବହିଲୁ । ଦାସରାଜାର ଘ୍ରମୁରେ ସ୍ୱେଦନ ଧୁ କଲୁ ॥
ଯହୁଁ ତୋର ନାନାରୂପ ରାଜନ ଦେଖିଲ । କାଷ୍ଠରେ ନିର୍ମାଣ କରି ଥାପନା ଯେ କଲ ॥
ମୋହର କୁଳରେ ତୁ ଯେ ସାକ୍ଷାତ୍ ଜନନୀ । ଜନ୍ମେ ଜନ୍ମେ ଅବତରି ପୂଜୁଥିବ ପୁଣି ॥
ଆଜ ତୋର ଜନ୍ମଦନ ସୁଫଳ ହୋଇବ । ତୋହର କୁଳରେ ମାଗୋ ମୋହର ଉତ୍ସବ ॥

ତେଣୁକରି ସ୍ତୁତି ମାଗୋ କରୁଅଛି ମୁହିଁ । ତୋତେ ପୂଜୁଅଛି ମାଗୋ ନରଦେହ ବହି ॥
ମୋହର କୁଟୁମ୍ବ ମାଗୋ କରୁଛି ଜଣାଣ । ପଣନ୍ତେ ଜହ୍ନାଡ଼ି ରଖ ମା ଜଗୁଜୀବନ ।୭୯।

ବେନିକର ଯୋଡ଼ି ମାଗୋ ତୋହରେ ଶରଣ । ନମସ୍ତେ ବାସେଲୀ ମାଗୋ ପରମ କାରଣ ॥
ନାଗି ଯେ ଅନାଗି ମାଗୋ ମନେ ନ ଧରିବୁ । ମୁଁ ତୋର ସନ୍ତାନ ଦୋଷ କ୍ଷମା କରିଥିବୁ ॥

ଏତେ ବୋଲି ଦାସରାଜା ବାସେଲୀ ଚରଣେ । ବେନିକର ଯୋଡ଼ିଣ ସେ ପଶିଲ ଶରଣ ॥

ନମସ୍ତେ ବାସେଲୀ ମାଗୋ ତୋହୋର ପସ୍ବର । ରୂପକାନ୍ତି ନାହିଁ କଛି କ ବର୍ଣ୍ଣିବ ଆର ॥
ତୋତେ ମୁହିଁ ଯେବେ ସ୍ୱଚ୍ଛେ ବନ୍ଦନ କରିବ । କେମନ୍ତ ପ୍ରକାରେ ମୁଁ ଯେ ଯାଜ୍ଞା ଭିଆଇବ ।

ନମସ୍ତେ ବାସେଲୀ ମାଗୋ ରକ୍ଷା କରୁଥିବୁ । ଜଳଥଳ ଅନଳେ ମା ଉଧରି ଧରିବୁ ॥
ନମସ୍ତେ ବାସେଲୀ ମାଗୋ କୃପା ଅକୂପାର । ଗ୍ୟାଂନ ବୁଦ୍ଧି ନାହିଁ କଛି କହିଲ ବାକ୍ୟର ॥
ରିପଣ୍ଡିମାନ ପଡ଼ିଲେ ଖଣ୍ଡନ କରିବୁ । ଦୋଷ ଅପରାଧ ମାଗୋ ମନେ ନ ଧରିବୁ ॥
ସନ୍ତାନ କୁଟୁମ୍ବ ଘେନ ପଶିଲ ଶରଣ । ପାଦପଦ୍ମ ରଜ ଦେଇ କର ତୁ ରକ୍ଷଣ ।୮୦।

ଆସ ଆସ ଠାକୁରାଣୀ ବସ ମୋ କନ୍ଦର । ତୋତେ ଘେନ ବୁଲିଯିବ ରାଜା ପ୍ରଜା ଦ୍ୱାର ॥
ତୋହର ପ୍ରସାଦେ ଶାଢ଼ୀ ବଳା ମୁଁ ପାଇବ । ଢ଼ମାଳି କରିଣ ଗୀତ ଗାଇ ମୁଁ ବୁଲିବ ॥
ସମସ୍ତ ଦେବତାମାନେ କରିବେ ତୋ ମେଳା । ପରସନ୍ନ ହୁଅ ମୋତେ କରିବଁ ମୁଁ ଖେଳା ॥

ଆସ ଆସ ବସ ମାଗୋ କନ୍ଧରେ ମୋହର । ଏତେ ବୋଲି ଦାସରାଜା ବହିଲ କନ୍ଧର ॥
ଅଶ୍ୱ ଘେନି ଦାସରାଜା ନଗରକୁ ଯାଇ । ଘୋଡ଼ାର ସମ୍ବାଦ ସବୁ ଦେଲୁଂ ସେ ଶିଖାଇ ।

ଶୁଣ ହେ ଅର୍ଜ୍ଜୁନ ଏବେ ନାବପୂଜା କହୁ । ଯେମନ୍ତ ପ୍ରକାରେ ବଧି ତାହାର ହୁଅଇ ॥
ଅଚ୍ୟୁତାନନ୍ଦ ଯେ ଏହା ଗୀତରେ ଗାଇଲ । ରାଧାକୃଷ୍ଣ ପଦ୍ମପାଦେ ଶରଣ ପଶିଲ ।୮୧।

ଇତଶ୍ରୀ କୈବର୍ତ୍ତଗୀତାୟାଂ ବୈୟାସିକ୍ୟାଂ ପାରମହଂସସଂହିତାୟାଂ ଦାସରାଜା ସ୍ତୁତି କରଣେ
ଅଶ୍ୱ ପୂଜାବଧି କଥନେ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ନାମ ବଂଶୋଽଧ୍ୟାୟଃ ।

---

# ।। ଏକବିଂଶ ଅଧ୍ୟାୟ ।।

## ବୋଇତ ପୂଜାବିଧି

ବୋଇତ ବୋଲିଣ ଯହିଂ ସ୍ଥାପନାଟି ହେଲା । ନଉକା ଜାଲିଆ ତା ସମ୍ଭକ ବୋଲାଇଲା ।୧।
ଏକବାକ୍ୟେ ଏକମନେ ପୂଜ ସର୍ବଜନେ । ଏଥି କିଛୁ ଦୋଷନାହିଂ କହିଲି ବିଧାନେ ।।
ଜବା ପୁଷ୍ପହାର ନେଇ ଆଗ ମଙ୍ଗେ ଦେଇ । ସିନ୍ଦୂରରେ ମଣ୍ଡି ମଙ୍ଗ ଶୁଦ୍ଧଚିତ୍ତ ହୋଇ ।।
ବୋଇତର ଚାରିପାଖେ ପୁଷ୍ପ ଶୋଭମାନ । ଗୁପ୍ତପାଦେବ ତହିଂ ବାନ୍ଧି ଅଗୁଆ ଚଣ୍ଡୁଲ ।।
ଆଲମ୍ବ ବଲମ୍ବ ଛନ୍ଦ ତାର ଉପରେଣ । ରଙ୍ଗ ଚୂନ୍ଦୁଆ ତହିଂ ଉପରେ ଟାଣି ପୁଣ ।।
ବୋଇତର ପାଶୁଣେ ଯେ ବାଦ୍ୟକୁ ବଜାଇ । ଶଙ୍ଖଧ୍ୱନି କରିଣ ସେ ଉଛବ କରାଇ ।।
ମଧ୍ୟରେ ଯେ ସିଂହାସନ କରିବ ଆପନ । ଉପରେ ଚୂନ୍ଦୁଆ ଥାପି ବିଚିତ୍ର କରିଣ ।।
ଗନ୍ଧ ପୁଷ୍ପଧୂପ ଦୀପ ସେଠାବରେ ଦେବ । ରାଧାକୃଷ୍ଣଙ୍କର ମୂର୍ତ୍ତି ସେଠାରେ ଥାପିବ ।।
ଛେନା ଗୁଡ଼ ଦୁଧ ଦହି ନଡ଼ିଆ ପୁଣ । ପାଚିଲା କଦଳୀ ମଧୁ ସୁପାନେ ଭରିଣ ।।
ଜଳ ତୁଳସୀ ଦଳ ଚାଲ୍ ଯେ ଧରିବ । ଷଡ଼ରସ ପଞ୍ଚାମୃତେ ନଇବେଦ୍ୟ ଦେବ ।।
ଏହି ବିଧାନରେ ମଙ୍ଗ ଜାଲକୁ ପୂଜିବ । କରପଦ୍ମ ଯୋଡ଼ିଣ ଯେ ସ୍ତୁତି ଆଚରିବ ।୧୧।
ନମୋ ନମସ୍ତେ ବାସୁକି ସୁମଙ୍ଗଳେ ଚଣ୍ଡେ । ପ୍ରସନ୍ନ ହୋଇଣ ରକ୍ଷା କରିଥିବୁ ତୋତେ।।
ମୁହିଂତ ମୂଢ଼ପାମର ମନୁଷ୍ୟ ମାତର । କିସ ନିବେଦନ କରିବ ତୋହଠାର ।।
ହେତୁକରି ମୋର ଅଙ୍ଗ ରକ୍ଷା କରିଥିବ । କାଲବିକାଲମାନ ଯେ ଘଉଡ଼ାଇ ଦେବ ।।
ଏଥୁଅନ୍ତେ ଦଶାକ୍ଷର ମନ୍ତ୍ର ଯେ ପଢ଼ିବ । ଏମନ୍ତ ଶୁଣାଇ ମଙ୍ଗେ ଜୀବନ୍ୟାସ ଦେବ ।।

### ଦଶାକ୍ଷର ଜୀବନ୍ୟାସ ମନ୍ତ୍ର :

ଓଂ କ୍ଲୀଂ ଓଂ ହ୍ରୀଂ ଓଂ ଶ୍ରୀ ଏହାକୁ ପଢ଼ି ସିନ୍ଦୂର ପାଶେ ଲଗାଇ ଚନ୍ଦନ କଜ୍ଜଳ ଦେବ, ତାହାପରେ ନୈବେଦ୍ୟ ଦେବ ।

ବୋଇତ ନେଇଣ ରାଜା ବାଣିଜ୍ୟକୁ ଗଲା । ଭଗତ କରିଣ ପୁଣି ତାହାକୁ ପୁଛିଲା ।।
କାହିଂ ତୁ ଅଇଲୁ ନାମ କାହାର ଦୋହିତା । ମୋହର ଆଗରେ ତୁହି କହ ଏ ବାରତା।।
ତୁମ୍ଭର ଅଶ୍ୱ ବାସେଲୀ ଅଟେ ପରା ମୁହିଂ । ଆଜ ଗୁରୁବାରେ ମୁହିଂ ପିଣ୍ଡ ଛାଡ଼ିଲଇଂ ।।
ଏମନ୍ତ ବଚନ ଯହୁଂ ରାଜାକୁ କହିଲା । ତାହା ଶୁଣିକରି ରାଜା ତରସ୍ତ ହୋଇଲା ।।
ଚଉଦିଗ ଅନାଇଣ ବୁଦ୍ଧି ନସ୍ଫୁରଇ । ଦେବୀର ସ୍ୱରୂପ ଦେଖି ସେ ଭଏ କରଇ ।୨୦।
ତେତେବେଳେ ମହାପ୍ରଭୁ ପ୍ରସନ୍ନ ହୋଇଲେ । ଡୋଙ୍ଗାର ବିଧାନ ଦାସରାଜାକୁ କହିଲେ ।।
ତୋହର ବାସେଲୀ ନାମ ରୂପକୁ ଧର୍ଷିଲା । ଅଣ୍ଡିଜା ବାସେଲୀ ବୋଲି ନାମ ଭଣାଇଲା ।।
ତୋହୋର ସଙ୍ଗତେ ଏହୁ ପୂଜା ଯେ ପାଇବ । ଚଇତ ପୁନେଇ ଦିନ ଜନମ ହୋଇବ ।।
ଏହାର ଯେ ଦିନ ବାର ଧରି ଦାସରାଜା । ଏହି ବାଣିଜ୍ୟରେ କରୁଥାଇ ପାଦ ପୂଜା ।।
ଶୁଣିଲୁ କି ଅର୍ଜ୍ଜୁନ ହୋ ନାବ ପୂଜାବିଧି । ସନ୍ତୋଷ ହୋଇଣ ଦାସରାଜା କଲା ସିଦ୍ଧି।।
ତାର ସମୁଦ୍ରରେ ନାବ ପୂଜା ଯେ ପାଇଲା । ଅଚ୍ୟୁତାନନ୍ଦ ଏହାକୁ ଗ୍ରନ୍ଥରେ ଲେଖିଲା ।୨୬।

ଇତିଶ୍ରୀ କୈବର୍ତ୍ତଗୀତାୟାଂ ବୈଷ୍ଣବସିଦ୍ଧ୍ୟାଂ ପାରମହଂସ ସଂହିତାୟାଂ ଦାସରାଜା ନାବପୂଜା କଥନଂ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ନାମ ଏକବିଂଶୋଽଧ୍ୟାୟଃ ।

—୦—

# ॥ ଦ୍ୱାବଂଶ ଅଧ୍ୟାୟ ॥

ଅର୍ଜ୍ଜୁନ ବୋଇଲେ ପ୍ରଭୁ ପାଇଲି କାରଣ । ଏବେ କହ ଅଶ୍ୱଯାତ୍ରା ଯେପରି ଭିଆଣ ।୧।
କେମନ୍ତ ପ୍ରକାରେ ନଗ୍ରେ ଯାତ୍ରା ଭିଆଗଲା । ଯେତେବେଳେ ଦାସରାଜା ଅଶ୍ୱ ଘିନିଗଲା ॥
ଶ୍ରୀକୃଷ୍ଣ ବୋଇଲେ ପାର୍ଥ ସାବଧାନେ ଶୁଣ । ଚଇତ ପୁନେଇ ଅଶ୍ୱ ଯାତ୍ରାର ଭିଆଣ ॥
ମଧର ମଧରେ ଅଶ୍ୱ କନ୍ଧରେ ବନ୍ଧିଲା । ଚଉପାଶରେ ଛତି ତରାସ ଉଡ଼ାଇଲା ॥
ଘିଟାଘଣ୍ଟା ବେଣୁପାଶେ ବଜାଇ ଗଜନ । ପାଟଛତ ଗୁରଆଡ଼େ ଉଡ଼ାଇ ଯେ ପୁଣ ॥
ଏହିରୂପେ ଅଶ୍ୱ ଯେ ପଶିଲା ଗ୍ରାମପୁରେ । ତମାଳ କରଣ ଗୀତ ଗାଇଲା ବଧିରେ ॥
ଅର୍ଜ୍ଜୁନ ବୋଇଲେ ପ୍ରଭୁ ଶୁଣିମା ଗୋସାଇଂ । ଭଲକଥା ଗୋଟିଏକ ଶୁଣିଲି ଯେ ମୁହିଂ ॥
ଈଶ୍ୱର କେମନ୍ତେ ସେ ଯେ ଡମ୍ବରୁ ପାଇଲେ । ଭଡ଼କ ମହୁରୀ ସେହୁ ମୁଖେ ବଜାଇଲେ ॥
ଢୋଲ ବାଦ୍ୟ ପୁଣି ଯଉଂମ'ନେ ବଜାଇଲେ । ହାଡ଼ିବୋଲି ତାହାଙ୍କୁ ଯେ ସଂସାରେ କହିଲେ ॥
ହାଡ଼ି ବୋଲିକରି ଜାତି କାହିଂ ହେଲା ଜାତ । ମାଳୀ କାହିଂ ଜାତ ହେଲା କହ ଯଦୁନାଥ ।୧୦।
ଏଥିର ସଂଶୟ ମୋର ଫେଡ଼ିବା ଗୋସାଇଂ । ହାଡ଼ି ଘେନ ଯାତ୍ରା ସେହୁ କଲା କିସପାଇଂ ॥
ଶ୍ରୀହରି ବୋଇଲେ ତୁ ହୋ ଶୁଣ ବୀର ପାର୍ଥ । ନିର୍ବୀଜରୁ ମୁହିଂ ପୁଣ ହୋଇଲି ସମ୍ଭୂତ ॥
ବ୍ରହ୍ମା ବିଷ୍ଣୁ ମହେଶ୍ୱର ମୁହିଂଟି ଅଟଇ । ମାଳୀର ସ୍ୱରୂପ ଘେନ ମାଳା ଯେ ଗୁନ୍ଥଇ ॥
ହାଡ଼ି ବୋଲିକରି ଯାହା ପୁଚ୍ଛିଲୁ ଅର୍ଜ୍ଜୁନ । ମୋହ ବ୍ୟକ୍ତିକେ ସେହୁ ନୋହଇଟି ଆନ ॥
ଈଶ୍ୱର ଯେ ହାଡ଼ି ହୋଇ ଢୋଲ ବଜାଇଲେ । ଡ଼ିବଡ଼ିବ ଡମ୍ବରୁ ଯେ ପୁଣି ନାଦ କଲେ ॥
ମର୍କଟର ଗୁଲରୁ ଡମ୍ବରୁ ହୋଇଥାଇ । ତାହାର ଶବ୍ଦରେ ଭୂତ ପ୍ରେତ ଯେ ପଳାଇ ॥
ଘୋଡ଼ାର ସଜତ କଲି ଦାସରାଜାକୁ ଇଂ । ବଇରାଗୀ ପୁଣି ମୁଂ ତହିଂରେ ହୋଇଲଇଂ ॥
ମୁହିଂ ଯେ ହୋଇଲଇଂ ଚଢ଼େସ୍ୱା ଚଢ଼େସ୍ୱାଣୀ । ନଳ ଯେ କନ୍ଧରେ ଧରି ପଡର ଗୁଉଣି ॥
ଦେବତା ଯାତ୍ରାରେ ଯେତେ ଅଛୁଁବକୁ ଛୁଇଂ । ହାଡ଼ିକ ଛୁଇଂଲେ ପୁଣି କିଛି ଦୋଷ ନାହିଂ ॥
ଦେବତା ଯାତ୍ରାରେ ବିଷ୍ଣୁ ବେହାର କରଇ । ତେଣୁକରି ସେ ଦୋଷ କାହାକୁ ନଲଗଇ ।୨୦।
ଏହି ପ୍ରେମ ବିନୁ ଆଉ ଅଧିକେ ନ ଯିବ । ଏଥିରୁ ଅଧିକ ହେଲେ ପାପ ଯେ ଘୋଟିବ ॥
ଶୁଣ ହେ ଅର୍ଜ୍ଜୁନ ଅଶ୍ୱଯାତ୍ରା ଯେ ଲାଗିଲା । ଅଶ୍ୱ ଘେନ ଦାସରାଜା ଯାତ୍ରା ଭିଆଇଲା ॥
ସାବଧାନ ହୋଇ ଶୁଣ ଯୁଦ୍ଧିଷ୍ଠିର ଭାଇ । ଅଶ୍ୱଯାତ୍ରାର ଚରିତ ଯେସନେ ହୋଅଇ ॥

## ପ୍ରଶ୍ନ

ଶୁଣ ଶୁଣ ସ୍ୱଜତରେ ପଚାରଇ ତୋତେ । କିଏ ଦେଲା ଘୋଡ଼ା ତୋତେ ପାଇଲୁ କେମନ୍ତେ ॥
କେମନ୍ତ ପ୍ରକାରେ ଘୋଡ଼ା ହୋଇଲାକ ଜାତ । ଆଦ୍ୟ ପ୍ରାନ୍ତକରି ରୂହ ବୁଝାଇବୁ ତତ୍ତ୍ୱ ॥
ଛତି ତରାସ ନିଶାଣ ତହିଂ ନିଶାନ୍ତିକୁ । ଆଳମ୍ବ ବଳମ୍ବ ବେଣୁପାଶେ ଧରିଛନ୍ତି ॥
ଅପରୂପ ଘୋଡ଼ା ତୋତେ କିଏ ଦେଲା କହ । ଆଦ୍ୟ ପ୍ରାନ୍ତ କରିଣ ଯେ ତୁରତେ ବୁଝାଅ ॥

ସଦଗୁରୁ କୋଟିପ୍ରଣ ଦେଉଅଛୁଂ ତୋତେ । ଈଶ୍ୱରପାର୍ବତୀଙ୍କର କୋଟିପ୍ରଣ ତୋତେ ।।
ଆଉର ତୋ ପିତା ମାତାଙ୍କର କୋଟି ପ୍ରଣ । ଏବେ ମୁହିଂ ପକାଇଲି ବ୍ରହ୍ମପ୍ରଣ ପୁଣ ।।
ଘୋଡ଼ାର ଯେ ଆଦିଜନ୍ମ ନ ପାରିଲେ କହି । ଘୋଡ଼ା ଗ୍ରନ୍ଥି ଅଲଗା ହୁଅ ପଣ୍ଡିତ ଭାଇ ।।
ଘୋଡ଼ାର ବୃତ୍ତାନ୍ତ ଯେବେ ନ କହି ପାରିବୁ । କୋଟି ନମସ୍କାର କରି ଶରଣ ପଶିବୁ ।୩୯।
ମୋହର ବୋଲ କରିଣ ଶବଦକୁ ଉଚ୍ଚାର । ଅଶ୍ୱିନୀ ବାସେଲୀ ମାଙ୍କୁ କୋଟି ନମସ୍କାର ।।
ଏତେ କହି ଯେ ପଣ୍ଡିତ ବାସେଲି ଚରଣ । କୈବର୍ତ୍ତ ଦାସରାଜା ଯେ ପଶିଲ ଶରଣ ।।

## ଉତ୍ତର

ନ ପକାଅ ନ ପକାଅ ଭାଇ ଗୁରୁପ୍ରଣ । ନ ପକା ଭାଇ ଈଶ୍ୱର ପାର୍ବତୀଙ୍କ ପ୍ରଣ ।।
ଶୁଣ ଶୁଣ ଭାଇରେ ତୁ ବଡ଼ଇ ସିଂହାଣ । ମୋତେ ପଚାରିଲୁ ତୁହି ଘୋଡ଼ା ଆଦିଜନ୍ମ ।।
ମନ ଥିର କରି ଶୁଣ କହଇ ବୃତ୍ତାନ୍ତ । ଯେମନ୍ତ ପ୍ରକାର ଘୋଡ଼ା ହୋଇଲାକ ଜାତ ।।
ନମସ୍ତେ ବାସେଲୀ ମାଗୋ ସୁମରଇଂ ତୋତେ । ସରସ୍ୱତୀଙ୍କ ଭଣ୍ଡାର ରହୁ କଣ୍ଠ ତଟେ ।।

ନମୋନମ ସରସ୍ୱତୀ ତୋହୋର ପୟର । ମୋହୋର କଣ୍ଠରେ ମାଗୋ ବେଗେ ବିଜେ କର ।
ଏବେ ଜଗତକୁ ମୁଂ ଯେ ବୁଝାଇବି ସବୁ । ଯେଣିକ ବୁଦ୍ଧିଂଲେ ପଦ ଦେଖାଇଣ ଦେବୁ ।
ନମସ୍ତେ ବାସେଲୀ ମାଗୋ ତୋ ପାଦେ ଶରଣ । ତୋର ଆଦି ଜନ୍ମକଥା କରୁଛୁ ବଖାଣ ।।
ଶୁଣ ଶୁଣ ଭାଇ ଆହେ ଶୁଣ ସର୍ବଜନ । କହୁଅଛୁ ଘୋଡ଼ା ଆଦି ଜନ୍ମର ବିଧାନ ।।
ପୂର୍ବେ କଳପମନୁରେ ବ୍ରହ୍ମାକଳ୍ପ ଶୋଇ । ପ୍ରଣସପ୍ତେ ଯୁଗ ପୁଣି ତହିଂ ଗଲ ବହି ।୪୦।
ନାରାୟଣଙ୍କ ଆଜ୍ଞାରେ ପ୍ରଳୟ ହୋଇଲା । ହସ୍ତୀଶୁଣ୍ଢ ପରମାଣେ ଜଳ ବରଷିଲା ।।
ଧରଣୀ ବୁଡ଼ିଣ ଜଳ ଆକାଶେ ଚୁମ୍ବିଲା । ଛପନ କୋଟି ଯେ ଜୀବଜନ୍ତୁ ନାଶ ଗଲା ।।

ଚନ୍ଦ୍ର ସୂର୍ଯ୍ୟ ଆପ ତେଜ ବାଇ ଯେ ଗଗନ । ବିରାଟ ମଣ୍ଡଳେ ଯାଇ ହୋଇଲାକ ଲୀନ ।
ସେ ବିରାଟ ମଣ୍ଡଳରେ ମହାକଳ୍ପ ବଟ । ତହିଂଠାକୁ ଧ୍ୟାନ ଦେଲେ ଫିଟଇ ସଙ୍କଟ ।।
ସମସ୍ତ ପ୍ରଳୟେ ଗଲେ ବଟ ଏକା ଥାଇ । ମହାପ୍ରଳୟ ହୋଇଲେ ବଟ ନ ବୁଡ଼ଇ ।।
ନିରାକାର ପୁରୁଷ ସେ ବଟରେ ରହିଲା । ଏହିମତେ କେତେ ସମ୍ବଛର ତହିଂ ଗଲା ।।
ସେ ବଟରୁ ଶୁଙ୍ଗ ଏକ ଜଳରେ ପଡ଼ିଲା । ନିରାକାର ପୁରୁଷ ତହିଂରେ ନାବ କଲା ।।
ନାବକେଳ କରନ୍ତ ଯେ ସେ ବଟପୁଟର । ଏହିରୂପେ ବହିଗଲା କେତେ ସମ୍ବଛର ।୪୧।

ଲହରିବାତେ ସେ ବଟପୁଟ ଯେ କମ୍ପଇ । ନିରାକାର ପୁରୁଷ ଆସନ କରିଥାଇ ।।
ବଟପୁଟେ ଥାଇ କର୍ଣ୍ଣମୂଳ ଆଉଂସିଲେ । ମଳ ଏକ ଉକୁଟିଲା ଜଳେ ପକାଇଲେ ।।
ତତକ୍ଷଣେ ସେ ମଳରୁ ପୁରୁଷେ ଜନ୍ମିଲା । ପହଂରି ପହଂରି ବଟପୁଟକୁ ଧଇଲା ।।
ସେ ପୁରୁଷେ ମହାପ୍ରଭୁ କୋଳରେ ବସାଇ । କଇବର୍ତ୍ତ ଦାସବୋଲି ନାମଦେଲେ ତହିଂ ।।
ସେ ବଟକୁ ମହାପ୍ରଭୁ ଧ୍ୟାନେ କଲେ ଦୃଷ୍ଟି । ପଦ୍ମ ଗୋଟିଏକ ଆସି ପଡ଼ିଲା ତଡ଼ତ ।।
ସେ ପଦ୍ମକୁ ମହାପ୍ରଭୁ କରି କଣ୍ଡିଆର । ଦାସରାଜେ ବସାଇଲେ ତହିଂର ଉପର ।।
ଦଇବର କୃତ୍ୟ ଦେଖ ଏମନ୍ତ ଭିଆଣ । ଦାସକୁ ରାଘେବ ଆସି ଗିଳିଲା ବହନ ।।
ବଟପୁଟେ ଯୋଗନିଦ୍ରା ପ୍ରଭୁ ଯାଇଥିଲେ । ରାଘବ ଗିଳିଲା ବୋଲି ଯୋଗରେ ଜାଣିଲେ ।।

ତତକ୍ଷଣେ ମୀନରୂପ ଧରଣ ମୁରାର । ରାଘବକୁ ଧରଣ ଯେ ଦେଲେ ଗାଳ ଟଶ ।।
ବୃକୁଠାରୁ ନାଭିଯାଏ ଚଶଲେ ତାହାର । କୈବର୍ତ୍ତ ଦାସରାଜାକୁ କଶଲେ ବାହାର ।୭୦।
ଦାସରାଜାଙ୍କୁ ଯେ ପ୍ରଭୁ ବୁଝାଇ କହିଲେ । ଏ ମୀନ ମାଶ କୁଟୁମ୍ବ ପାଳିବୁ ବୋଇଲେ ।।

ମୀନଯେଗିଳିଲାତୋତେହେଲା ତୋ ବଇଶ । ଏହାନ୍ତ ମାଶବୁ ଜନ୍ମେ ଜନ୍ମେ ଅବତର ।।
ମୀନହତ୍ୟାଦୋଷତୋତେକହୁନ ଲାଗିବ । ଶ୍ରୀମୁଖ ବଚନ ମୋର ଯୁଗେ ଯୁଗେ ଥିବ ।।
ଏହିମତ କେତେ ସମ୍ବତ୍ସର ତହିଂ ଗଲା । ଯୁଗପ୍ରଳୟର ଆସି ଶେଷ ଯେ ହୋଇଲା ।।
ବ୍ରହ୍ମନଶି ପାହିଣ ଦିବସ ପ୍ରକାଶିଲା । ବ୍ରହ୍ମଲୋକେ ନିଦ୍ରା ତେଜ ଜାଗ୍ରତ ଦେଖିଲା ।।

ମହାପ୍ରଳେ ଜଳ ବ୍ରହ୍ମଲୋକେ ସମ୍ଭାଇଲା । ସୃଷ୍ଟିର ସୃଜନା ପୁଣି ଆରମ୍ଭ ହୋଇଲା ।।
ଏମନ୍ତେ କାରୁଣ୍ୟ ଜଳ ମୀନ ଯେ ହୋଇଲା । ଦରିଆ ଭିତରେ ଶେଷ ଜଳ ଯେ ରହିଲା ।।
ବଟପୁଟେ ବସି ପ୍ରଭୁ ଆଜ୍ଞା ଯେ ବହିଲେ । ଆଜ୍ଞାପରମାଣେ ବଟ ତୁରଙ୍ଗ ହୋଇଲେ ।।
ପଞ୍ଚାଶ ଯୋଜନ ଯାଏ ଡ଼େଣା ଯେ ବିସ୍ତାରେ । ଦାସରାଜାକୁ ଲଇଣ ଅଶ୍ୱର ପୃଷ୍ଠରେ ।।
ଅଶ୍ୱ ଗୃଳଦେଲେ ସେ ଯେ ମନର ସନ୍ତୋଷେ । ବିଜେ ସି ଅଇଲା ଅଶ୍ୱ ସୋମନ୍ତ୍ରର ପାଶେ ।୭୦।

ଚଇତ ମାସ ପୁନେଇ ହୋଇଛି ସେଦିନ । ବାସେଲୀ ବୋଲି ତା ନାମ ଦେଲେ ତତକ୍ଷଣ ।।
ଚୈତ୍ର ପୂର୍ଣ୍ଣିମା ଗୁରୁବାର ଅଟେ ସେ ଦିନ । ବଟପୃଷ୍ଠ ବାସେଲୀ ଯେ ହୋଇଲେ ଜନମ ।।
ତେଣୁ ସିନା ଜନ୍ମଦିନ ସେଦିନ ହୋଅଇ । ସେ ଅଶ୍ୱ ଦାସରାଜାକୁ ପ୍ରଭୁ ଦେଲେ ନେଇ ।।
ଅଶ୍ୱ ଘେନି ଦାସ ଯେ ସିଂହଳଦ୍ୱୀପ ଗଲା । କେତେ ସମ୍ବଛର ତହିଂ ବାହାନ ଯେ କଲା ।।
ସେହି ଘୋଡ଼ା ଘେନି ମୁହିଂ କରୁଛି ଭ୍ରମଣ । ମୋହୋର ଏ ଘୋଡ଼ା ଇଷ୍ଟ ଅଟଇ ପ୍ରମାଣ ।।

ସଦଗୁରୁ ରାଣ ଗୋଟି ଦେଇଥିଲୁ ମୋତେ । ମାତା ପିତା କୋଟି ରାଣ ଦେଲୁ ତୁ ନିସ୍ଚିତେ ।।
ଘୋଡ଼ା ଆଦି ଜନ୍ମ କଥା କହିଲି ମୁଂ ତୋତେ । ଆଉ କିଛି ମନ ଥିଲେ ପଚ୍ଚାରିବୁ ମୋତେ ।।
ମୋହି ବୋଲ କରଣ ତୁ ଶବଦ ଉଚାର । ସଦଗୁରୁ ସେବିଥିଲେ ଆଦର ପଚ୍ଚାର ।।

ଏତେ ବୋଲିଣ ରାଉତ ବାସେଲୀ ଚରଣ । କୈବର୍ତ୍ତ ଦାସରାଜା ଯେ ପଶିଲା ଶରଣ ।।
ଶୁଣିଲୁ କି ଅର୍ଜ୍ଜୁନ ହୋ ଦାସରାଜା ବଧ । ଏମନ୍ତେଣ ଅଶ୍ୱ ଶିଘ ହୋଇଲାକ ସିଦ୍ଧି ।।
ଚଢ଼ା ଉତ୍ତର ଏ ଦୁଇ ସମ୍ବାଦ ବଢିଲା । ଅଚ୍ୟୁତାନନ୍ଦ ଯେ ଏହା ଗୀତରେ ଗାଇଲା ।୮୧।

ଇତଶ୍ରୀ କୈବର୍ତ୍ତଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ ଦାସରାଜା ଚରିତେ
ଅଶ୍ୱଯାତ୍ରା କଥନେ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ନାମ ଦ୍ୱାବିଂଶୋଽଧ୍ୟାୟଃ ।

—୦—

## ।। ତ୍ରୟୋବିଂଶ ଅଧ୍ୟାୟ ।।

ପ୍ରଶ୍ନ

ଶୁଣ ଶୁଣ ରାଉତ ହୋ ପଚ୍ଚାରଇଂ ତୋତେ । ଘୋଡ଼ାର ଯେ ଆଦି ଜନ୍ମ କହିଦେଲୁ ମୋତେ ।୧।
ମହାପ୍ରଭୁ ଆଜ୍ଞାରେ ଯେ ବଟ ଅଶ୍ୱ ହେଲା । ଶ୍ୱେତର ଧରି ପ୍ରଭୁଙ୍କ ପୃଷ୍ଠରେ ବହିଲା ।।

ତାହାଙ୍କୁ ଦାସରାଜା ସିଂହଳଦ୍ୱୀପେ ନେଲା । କେତେ ସମ୍ବଚ୍ଛର ତାକୁ ବାହନ ଯେ କଲା ॥
ଏହି କଥାମାନ ସବୁ ବୁଝି ମୁଁ ପାରିଲି । କାଠଘୋଡ଼ାକୁ ଦେଖିଣ ଆଚମ୍ବିତ ହେଲି ॥
ତୁମ୍ଭ ଚରଣେ ଯେ ଅଶ୍ୱ ପୃଥୀ ଟପୁଥିଲା । ସେ ଘୋଡ଼ା କେମନ୍ତ ହୋଇ କାଷ୍ଠ ପାଲଟିଲା ॥
ତାହାର ଯେ ଜୀବଆତ୍ମା କାହିଁରେ ରହିଲା । ଏ କାଠଘୋଡ଼ା ରୂପେ ଯେ ପୁଣ ସେ ପାଇଲା ॥
ଏଥିର ଆଦିଅନ୍ତ ଯେ କହିଦେବ ମୋତେ । ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଶୁଣିବେ ସମସ୍ତେ ॥
ମୋହ ବୋଲି କରଣ ତୁ ଶବଦ ଉଚ୍ଚାର । ଅର୍ଦ୍ଧାଙ୍ଗିନୀ ବାସେଲୀଙ୍କୁ ମୋ କୋଟି ନମସ୍କାର ॥
ଏନେତକ କହିଣ ସେହୁ ବାସେଲୀ ଚରଣ । ସିଦ୍ଧାଂଶ କଇବର୍ତ୍ତ ଭାଇ ପଶଇ ଶରଣ ॥

ଉତ୍ତର

ଶୁଣ ଶୁଣ ଭାଇ ଆରେ ଶୁଣ ତୁ ସିଂହାଣ । ତୁହି ମୋତେ ପଚାରିଲୁ କାଠର ଭିଆଣ ।୧୨।
ଯେମନ୍ତ ପ୍ରକାରେ ଅଶ୍ୱ କାଷ୍ଠ ପାଲଟିଲା । ଏ ଅଶ୍ୱକୁ ଦାସରାଜା ବାହନ ଯେ କଲା ॥
ନିରାକାର ଆଗ୍ୟାଂରେ ଯେ ଅଶ୍ୱଘୋଟି ଏହି । ଏହାର ମହିମା ନରେ ନ ଜାଣନ୍ତି କେହି ॥
ଚଇତ୍ର ପୂର୍ଣ୍ଣିମା ଦିନ ହୋଇଥିଲା ଜନ୍ମ । ଦଇବର କୃତ୍ୟେ ଦେଖ ଏମନ୍ତ ଭିଆଣ ॥
କେତେ ସମ୍ବଚ୍ଛରେ ଅଶ୍ୱ ଭୋଗ ଯେ ସରିଲା । ସେ ଦିନକୁ ଆସି ପୁଣି ନିଦାନ ହୋଇଲା ॥
ପୂର୍ଣ୍ଣିମା ଗତେ ଅଷ୍ଟମୀ ଗୁରୁବାର ଦିନ । ସେ ଦିନ ସେ ଅଶ୍ୱ ଦେହୁଂ ଛାଡ଼ିଲା ପରାଣ ॥
ବିଷ୍ଟୁଜ୍ୱର ବୋଲି ଏକ ଜ୍ୱର ଯେ ଘୋଟିଲା । ସେହି ଜ୍ୱର ଯୋଗେ ଅଶ୍ୱ ପ୍ରାଣ ବିସର୍ଜିଲା ॥
ଦିବା ଦୁଇଦଣ୍ଡ ଥିଲା ଶରୀର ତେଜିଲା । ରାତ୍ର ଦୁଇଦଣ୍ଡ ଠାରେ ସ୍ଥିତି ସ୍ୱରୂପ ହେଲା ॥
ଦାସରାଜା ପାଶେ ଯାଇ କଲେକ ରୋଦନ । ନାନା ଅଲଙ୍କାରମାନ ଶ୍ରୀଅଙ୍ଗେ ଖଞ୍ଜିଣ ॥
ରୁଣୁଝୁଣୁ ନେପୁର ଯେ ପାଦଘାତେ କରି । ଉଚ୍ଚସ୍ୱରେ ଶୋକ କଲା ସ୍ୱର୍ଗ ଅପଛରୀ ॥
କୁଙ୍କୁମ କସ୍ତୁରୀ ଅଙ୍ଗେ ତନୁ ସୁବଳିତ । ପାଟଖଣ୍ଡୁଆ ଶାଢ଼ୀ ଯେ ଦିଶେ ସୁଶୋଭିତ ॥
ଲେଖିଣ ଜୁଡ଼ାକୁ ଶୋଭା ପୁଷ୍ପର ଝାଲରି । ମରୁଆ ମାଳତୀ ଫୁଲ ତହିଁ ଅଛି ପୂରି ।୨୧।
କର୍ପୂର କସ୍ତୁରୀ ଗନ୍ଧ ଅସ୍ୱେଂଲା ସୁବାସ । କେତକୀ ପାଖୁଡ଼ା ତହିଂ ଜୁଡ଼ା ଚଉପାଣ ॥
ମଲ୍ଲୀ ଚମ୍ପା ତହିଂରେ ମାଳତୀମାଳ ବେଢ଼ା । ଅତି ଯତ୍ନରେ ସେହୁ ସାଂକୋଇଲା ଜୁଡ଼ା ॥
କପାଳରେ ଶୋହେ ତାର ସିନ୍ଦୂରର ବିନ୍ଦୁ । ଲଲାଟ ପଟରେ ଯେହ୍ନେ ଉଇଂଥାଏ ଇନ୍ଦୁ ॥
କର୍ଣ୍ଣରେ ଝଟକେ ଯେ ଯେ ସୁନ୍ଦର କୁଣ୍ଡଳ । ନୟନରେ ରଞ୍ଜିଥାଇ ସରୁ ଯେ କଜ୍ଜ୍ୱଳ ॥
ଭୃରୁ ଧନୁ ଆକାର ତା କି କାମ କମାଣ । ଯହିଂଲେ ମଦନଶରେ ଦହଇ ପରାଣ ॥
ନାସାର ବସଣୀ ପାଶେ ଗଜମୋତି ଥାଇ । ପାଚିଲା ଆମ୍ବ ପରାୟେ ଅଧର ଦିଶଇ ॥
କଣ୍ଠେ ସୋଅର୍ଣ୍ଣର କାପ ଗଣ୍ଡେ ପଡ଼ି ତେଜ । ବେଳି କର୍ଣ୍ଣରୁ କି ଖସି ପଡ଼ୁଥାଇ ସୂର୍ଯ୍ୟ ॥
ପାଚିଲା ଡାଳିମ୍ବ ବୀଜ ଦନ୍ତ ଯେ ଦିଶଇ । ଉମାଳ କହିଲେ ଦନ୍ତ ଶୋଭା ପାଇଥାଇ ॥
ମରକତ ଟୁପସର ଗଳେ ବିରାଜଇ । ସୁବର୍ଣ୍ଣର କଣ୍ଠୀ ତହିଂ ଗଳେ ଲମ୍ବିଥାଇ ।୩୦।
କନକ କୁଚ ପାଟକୁ କାଞ୍ଚୁଲି ବେଢ଼ାଣ । ବାହେ ବାଜୁବନ୍ଧ କରେ ବଳୟ କଙ୍କଣ ॥
କଟିରେ କିଙ୍କିଣି ସାଜେ ଘୁଙ୍ଗୁରର ମାଳ । କନକଲତା ଭେଦ ଥାଇ ତନୁ ତମାଳ ॥
ଝମକ ଝଣ୍ଟିଆ ପାଦେ ବଳାର ଶବଦ । ରୁଣୁଝୁଣୁ ନୂପୁରର ଚମକାଇ ନାଦ ॥

ଏମନ୍ତ ଭୂଷଣ ସେହି ସ୍ତ୍ରି ରାଟି ହୋଇଲା । ଦାସରାଜା ଗ୍ରାମୁରେ ସେ କାରୁଣ୍ୟ ଯେ କଲା ॥
ଉଚ୍ଚସ୍ୱରେ ବାସେଲୀ ଯେ କରଇ ରୋଦନ । କଣ୍ଠ ତା କୋକିଳ ସମ ଶୁଭେ ଘନ ଘନ ॥
ରୋଦନ୍ତେ ରାଜାଙ୍କ ସିଂହ ଆସନ କମ୍ପିଲା । ବୋଲେ ଆଜ ଠାରୁ ନାମ ଲୋପ ହୋଇଗଲା ॥
ଆହାରେ ବିଧାତା ଜନ୍ମ ଦେଲୁ କାହିଁପାଇଁ । ବାସେଲୀ ବୋଲିଣ କିଏ ଡାକିବ ଗୋସାଇଁ ॥
କେତେକ ବରଷ ତୁମ୍ଭ ଘରେ ରହିଥିଲି । ତୁମ୍ଭଙ୍କ ପୁଣ୍ୟେ ବସାଇଁ ସଂସାର ଦେଖିଲି ॥
କେମନ୍ତ ପ୍ରକାରେ ମୋତେ ରକ୍ଷା ହୋ ଗୋସାଇଁ । ତୁମ୍ଭର ସଙ୍ଗତ ମୁହିଁ ଛାଡ଼ିବଇଁ ନାହିଁ ॥
ଏତେ ସ୍ତୁତି ରାଜାଙ୍କୁ ବାସେଲୀ ସହୁଁ କଲା । ତାହାର ଭକତି ଦେଖି ରାଜା ଯେ ପୁଚ୍ଛିଲା ॥୪୦॥
କାହିଁ ତୁ ଅଇଲୁ ନାରୀ କାହାର ଦୁହିତା । ମୋ ଆଗରେ ପ୍ରକାଶିଲୁ ଏସନ ବାରତା ॥
ଶୁଣି ସେହୁ ବୋଲେ ଅଶ୍ୱ ବାସେଲୀ ଯେ ମୁହିଁ । ଆଜ ଗୁରୁବାରେ ମୁହିଁ ପିଣ୍ଡ ଛାଡ଼ିଲଇଁ ॥
ଏହିପରି ବାଣୀ ସହୁଁ ରାଜାଙ୍କୁ କହିଲା । ଶୁଣିକରି ରାଜନ ଯେ ଆଚମ୍ଭିତ ହେଲା ॥
କିଛି ନ କହିଣ ସେ ଯେ ହୋଇଲା ମଉନ । ଅନ୍ତର୍ଗତେ ପ୍ରଭୁ ପାଦେ ଲଗାଇଲା ଧ୍ୟାନ ॥
ତେତେବେଳେ ମହାପ୍ରଭୁ ପ୍ରସନ୍ନ ହୋଇଲେ । ଯୋଡ଼ାର ବିଧାନ ଦାସରାଜାଙ୍କୁ କହିଲେ ॥
ତୋହର ଗୋଷ୍ଠରେ ଏ ଯେ ପୂଜା ପାଉଥିବ । ଚଇତ ପୁନେଇ ଦିନ ଜନ୍ମଦିନ ହେବ ॥
ଏହାର ଯେ ଦିନବାର ଧରି ଦାସରାଜା । ଏ ଆଠବାର ମଧ୍ୟରେ କରି ଯାତ୍ରା ପୂଜା ॥
ବରଷରେ ଥରେ ତୁ ଯେ ଏହାକୁ ପୂଜିବୁ । ଚଇତ୍ର ପୂର୍ଣ୍ଣମୀ ଦିନ ବଳିଭୋଜା ଦେବୁ ॥
ଏବେ ରାଜା କାଠରେ ନିର୍ମାଣ ବେଗେ କରି । ମୁଣ୍ଡଗୋଟି ଗଢାଇବୁ ଅତି ଯତ୍ନ କରି ॥
ଏମନ୍ତ ବୋଲିଣ ପ୍ରଭୁ ତାକୁ ଆଜ୍ଞା ଦେଲେ । ବିଶ୍ୱକର୍ମା ହୋଇ ମୁଣ୍ଡ ସ୍ୱୟେଂ ସେ ଗଢ଼ିଲେ ॥
କାଠି ବାରଖଣ୍ଡ କରି ପଞ୍ଜୁରି କରିଣ । ପାଟପତନୀ ଅଙ୍ଗରେ ଦେଇ ଆଭରଣ ॥୪୧॥
ଅଶ୍ୱର ସାଦୃଶେ କାଠ ପିତୁଳା ଯେ କଲେ । ଅଶ୍ୱିନୀ ବାସେଲୀ ତହିଁ ବିଜେ କରାଇଲେ ॥
ଅଶ୍ୱିନୀ ବାସେଲୀ ନିଜରୂପ ଛପାଇଲା । ଏହି କାଠ ପିତୁଳାରେ ପୂଜା ସେ ପାଇଲା ॥
ମହାପ୍ରଭୁ ସେ ଅଶ୍ୱକୁ ଦାସରାଜେ ଦେଲେ । ଏ ଅଶ୍ୱ ତୋହର ଇଷ୍ଟ ହୋଇଲା ବୋଇଲେ ॥
ତେଣୁକରି ଏହି ଅଶ୍ୱ ଇଷ୍ଟ ମୋ ଅଟଇ । ଆଦ୍ୟପ୍ରାନ୍ତ କରି ରାଇ ବିଦେଲି ତୋତେ କହି ॥
ମୋହ ବୋଲିକରି ତୁହି ଶବଦ ଉଚ୍ଚାର । ସନ୍ଥଗୁରୁ ସେବିଥିଲେ ଆଦର ପଚାର ॥
ଅଶ୍ୱିନୀ ବାସେଲୀ ମାତାଙ୍କର ଶ୍ରୀଚରଣ । କୈବର୍ତ୍ତ ଦାସରାଜା ଯେ ପଶିଲା ଶରଣ ॥
ଅର୍ଜୁନ ବୋଇଲେ ପ୍ରଭୁ ଶୁଣିମା ଗୋସାଇଁ । ଚଉର ସମ୍ବାଦ ସବୁ ଶୁଣିଲଇଁ ମୁହିଁ ॥
କାଷ୍ଠର ପିତୁଳା ତୁମ୍ଭେ ନିର୍ମାଣ ଯେ କଲ । ବାସେଲୀ କି ତହିଁରେ ଥାପନା କରାଇଲ ॥
ଅଶ୍ୱର ସ୍ୱରୂପ ଛାଡ଼ି ମାନବ ହୋଇଲା । କେମନ୍ତ ପ୍ରକାରେ ସେ କାଠରେ ବିଶ୍ରାମିଲା ॥୪୨॥
ସେ ଅଶ୍ୱର ଏତେକ କରଣୀ କାହିଁ ଥିଲା । ପିଣ୍ଡ ଛାଡ଼ି ମାୟାନାରୀ ହୋଇ ବିହରିଲା ॥
ଶ୍ରୀକୃଷ୍ଣ ବୋଇଲେ ଯାହା ପଚାରିଲୁ ବୀର । ସେହି ଅଶ୍ୱଗୋଟି ବଟପୁଟଟି ମୋହର ॥
ନିରାକାର କୋଳକଣ କାରୁଣ୍ୟରେ ଥିଲା । ତେଣୁକରି ମହାମାୟୀ ନାମ ବୋଲାଇଲା ॥

ମହାମାୟି ଅଷ୍ଟଭୂଜା ଚଣ୍ଡିକା ତୁ ଜାଣ । ମଙ୍ଗଳା ବୋଲିଣ ନାମ ହୋଇବ ବଖାଣ ॥
ନାନା ପରକାରେ ରୂପ ହୋଇ ସେ ପାରଇ । ତାହାରି କୋଳରେ ନବ୍ବକାର ବହରଇ ।୬୫।
ଆଦ୍ୟ ଆଜ୍ଞା ପାଇ ଅଶ୍ୱ ନାଚେ ବଜେ କଳ । ଦେଖୀର ସ୍ୱରୂପ ତହିଂ ଲୁଚାଇ ରଖିଲ ॥
ବରାଟ ଅଙ୍ଗରୁ ଜାତ ଦେବକନ୍ୟା ଜାଣ । ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ତାହାର ଭ୍ରମଣ ॥
ଅର୍ଜ୍ଜୁନ ବୋଇଲେ ପ୍ରଭୁ ପାଇଲି ପରତେ । ଏବେ କହ ଅଶ୍ୱଯାଗ ବଢିଲା କେମନ୍ତେ ॥
ଚତୁର ସମ୍ବାଦ ଏବେ ହୋଇଲା ସମ୍ପୂର୍ଣ୍ଣ । ଭଣଇ ଅଚ୍ୟୁତ ଦାସ ରଖ ନାରାୟଣ ।୬୯।

ଇତିଶ୍ରୀ କୈବର୍ତ୍ତଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ ଦାସରାଜା ଅଶ୍ୱଯାଗ ଚରିତ କଥନେ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ନାମ ତ୍ରୟୋବିଂଶୋଽଧ୍ୟାୟଃ ।

—✳—

## ॥ ଚତୁର୍ବିଂଶ ଅଧ୍ୟାୟ ॥

ମର୍ତ୍ତ୍ୟମଣ୍ଡଳ ସମ୍ବାଦ ଶୁଣ ହୋ ଅର୍ଜ୍ଜୁନ । ପଚାରଇ ଦାସ ଭବେ ରାଉତକୁ ପୁଣ ।୧।
ଶୁଣ ଶୁଣ ରାଉତ ହୋ ପଚାରିଲୁଂ ତୋତେ । ଘୋଡ଼ାର ଉତ୍ପତ୍ତି କଥା କହିଦେଲୁ ମୋତେ ॥
ଆଦ୍ୟପ୍ରାନ୍ତ କରି ଭାଇ ସବୁ ଯେ କହିଲୁ । କଥାର ପରମ ସନ୍ଧି ଗୁପତେ ରଖିଲୁ ॥
କେତେ ଖଣ୍ଡ ତତ୍ତ୍ୱରୁ ଅଶ୍ୱ ଦେହେ ଥିଲ । କେତେ ନାଡ଼ିଛନ୍ଦେ ସେ ପୃଥିବୀ ଉପୁଥିଲ ॥
କେତେଖଣ୍ଡ ପତ୍ର ତାର ଅଛଇ ଶରୀର । କେତେ ଗଣ୍ଠି ଭିତରେ ବନ୍ଧନ କଳେବର ॥
କଥାର ଆଦିଅନ୍ତ ତୁ କହିବୁ ବୁଝାଇ । ମହିଁଷିରା ପବ ତାର ରହିଲାକ କାହିଂ ॥
କେତେଗଣ୍ଠି ନାଡ଼ି ସେ କେମନ୍ତେ ହୋଇଲା । ମାତାଗର୍ଭେ କେମନ୍ତେ ସେ ଉତପତ୍ତି ହେଲା ॥
ଚର୍ମ ଯେ ଚରଣ ତାର କେଉଂ ଲୋକ ନେଲା । ଚନ୍ଦୁଆ ଖଣ୍ଡିକ ଅବା କାହିଂଠି ରହିଲା ॥
ଘୋଡ଼ାର ନେ ଚଉଯାମା ଅଛଇ ଶରୀରେ । ସେ ଚଉଯାମା ରହିଲା କାହାର ଦେହରେ ॥
ଦେଗୁରୁ ସେବିଥିଲେ ଏହା କହିଦେବୁ । ନୋହିଲେ ତରଣ ଦନ୍ତେ ଶରଣ ପଶିବୁ ।୧୦।
ମୋର ବୋଲ କରିଣ ତୁ ଶବଦ ଉଚ୍ଚାର । ଅଶ୍ୱିନୀ ବାଯେଲୀ ମାଙ୍କୁ କୋଟି ନମସ୍କାର ॥

ଉତ୍ତର

ଶୁଣ ଶୁଣ ଭାଇ ଏବେ ଶୁଣ ତୁ ସିଂହାଣ । ତୁହି ମୋତେ ପ୍ରଶ୍ନ କଲୁ ଘୋଡ଼ା ବ୍ରହ୍ମଗ୍ୟାନ ॥
ମନ ଚଇତନ ଦେଇ ଶୁଣ ତୂରେ ଭାଇ । ପ୍ରଶ୍ନର ଉତ୍ତର ଏବେ କହିବଇଂ ମୁହିଂ ॥
ଠୁଲରୁ ଆସିଣ ବ୍ରହ୍ମ ଆପ ଦେହେ ପଶି । ଠୁଲଶୂନ୍ୟ ଶୂନ୍ୟପରେ ଏ ଦେହ ପ୍ରକାଶି ॥
ମାତା ଋତୁକାଳେ ହେଲା ପିତାର ସଙ୍ଗମ । ଶୂନ୍ୟରୁ ଖସିଲା ସେ ଯେ ବିନ୍ଦୁ ରୂପେ ଜାଣ ॥
ଶୂନ୍ୟରୁ ଖସିଣ ସେହି ଠୁଲରେ ପ୍ରବେଶ । ସେ ଠୁଲ ଶବଦ କରି କଲାକ ଦ୍ୱାଦଶ ॥
ଶବଦ ଶୁଭନ୍ତେ ଯେ ପବନ ବଳେ ମିଳି । ଷୋଳ ଯେ ତତ୍ତ୍ୱରୁ ଦେବ ଗଲାକ ବାହାରି ॥
ମାତାର ଗର୍ଭ ମଧ୍ୟରେ ପଦ୍ମ ଫୁଟିଥିଲା । ତହିଂରେ ପାଣି ପବନ ଯାଇଂଣ ମିଳିଲା ॥
ବାଜଲୁ ଆକାଶ ତହିଂ ରଜଟି ରହିଲା । ପଦ୍ମର ମଧ୍ୟରେ ସେହି ବିଦ୍ୟମାନ ହେଲା ॥
ଷୋଳ ଦଣ୍ଡରୁ ଯେ ତହିଂ ହୋଇଲାକ ବାଡ଼ । ତହିଂରେ ଲାଗି ରହିଲା ବାଅସ୍ତରୀ ନାଡ଼ ॥

ଶହେ ଅଶତ୍ୱଶ ଶବ ତହିଁକି ରହିଲ । ଅଠଶ ଅଠାଇଶ ଯେ ଗଣ୍ଠି ବୋଲାଇଲା ।୩୮।
କାଉଂରପାଟଣାସେ ଯେ ପଟ୍ଟମେ ତା ଦ୍ୱାର । ତହିଁ ଖେଳୁଥାଇ ସେ ପୁରୁଷ ନିରାକାର ।।
ଭେଦାଇ କହିଲୁଂ ତୋତେ ସାବଧାନେ ଶୁଣ । ନାଶୀ ଦେହକୁ ପୁରୁଷ ନ ଛୁଅଇଂ ପୁଣ ।।
ସେହି ଦ୍ୱାରବାଟେ ଆତ୍ମା ଶୂନ୍ୟେ ଚଳିଗଲ । ମୃତଶବ ଗୋଟି ତହିଁ ପଡ଼ି ରହିଥିଲ ।।
ଶିରଗୋଟି ମହାପ୍ରଭୁ ଦାସରାଜା ଦେଲେ । ମଝି ଗଣ୍ଠି ଝଣ୍ଟି ତୈଳକାରେ ସମର୍ପିଲେ ।।
ପଛ ଚଟୁଆ ଖଣ୍ଡ ଗୁଡ଼ିଆ ଯେ ନେଲ । ଚଇତ ପୁନେଇ ଦିନ ପୁଚ୍ଛ ପୂଜା କଲ ।।
ତଇଲକାରୀ ସେ ମଝିଗଣ୍ଠି ଖଣ୍ଡ ଦେଇ । ଅତ ଯତ୍ନେ ପୂଜା କଲ କହିଲଇଂ ମୁହିଂ ।।
ଏହିମତ ଶୁଣ ତୁହି ଅଶ୍ୱର ବିଚାର । ପୂର୍ବାପୂର୍ବ ଇଷ୍ଟ ତେଣୁ ଅଟେ ଯେ ଯାହାର ।।
ଚର୍ମକୁ ଉତ୍ତର ପ୍ରଭୁ ମୋଚିକୁ ସେ ଦେଲେ । କାଳକାର ଶସ୍ତ୍ର ରଖି ଚର୍ମ ପୂଜାକଲେ ।୩୯।
ମଝିଶିର ଡମ୍ବରୁ ଯେ ରହିଗଲ ପୁଣ । ପ୍ରସନ୍ନେ ଈଶ୍ୱରଙ୍କୁ ତା ଦେଲେ ନାରାୟଣ ।।
ସେହି ଡମ୍ବରୁକୁ ତୋଷେ ଈଶ୍ୱର ଘେନଲେ । ତନିଶ ବାସ୍ତର ନାଡ଼ି ତହିଁରେ କଷିଲେ ।।
ତହିଁରୁ ଆବର ଶେଷ ଥିଲା ଯେଉଂ ନାଡ଼ି । ପାର୍ବତୀଙ୍କ ହସ୍ତେ ତାହା ଦେଲେ ନିପୁରାରି ।।
ପାର୍ବତୀ ନେଇଣ ତାକୁ ମୃଦଙ୍ଗ ଭିଡ଼ିଲେ । ଡ଼ିବ ଡ଼ିବ ଡମ୍ବରୁ ଈଶ୍ୱର ବଜାଇଲେ ।।
ସେ ଡମ୍ବରୁ ଈଶ୍ୱର ଯେ କରନ୍ତେଣ ନାଦ । ଭୂତ ପ୍ରେତ ପିଶାଚ ଯେ ଗଣିଲେ ପ୍ରମାଦ ।।
ଆବର ଯେତେକ ତାର ଅସ୍ଥି ଚର୍ମ ଥିଲ । ଧରଣୀରେ ସେମାନ ଯେ ସମ୍ପାଦିତ ହେଲ ।।
ଏଣୁକରି ଏ ଘୋଡ଼ାର ପାଦ ପାଣି ନାହିଂ । ଅଙ୍ଗମାତ୍ର ଘେନମୁହିଂ ଭ୍ରମଣ କରଇଂ ।।
ଏହି ଘୋଡ଼ାର ଯେବଣ ଚଉସାମା ଥିଲ । ନାଟରେ ବୈଷ୍ଣବେ ତାକୁ ଖୋଲ କହାକଲ ।।
ଏହି ଅଶ୍ୱଗୋଟି ମୋ ଇଷ୍ଟ ଯେ ବୋଲାଇ । ଆଦ୍ୟପ୍ରାନ୍ତ କରି ତୋତେ କହିଦେଲି ଫେଇ ।।
ମୋର ବୋଲ କରିଣ ତୁ ଶବଦ ଉଚ୍ଚାର । ସଦଗୁରୁ ସେବିଥିଲେ ଆଉ କି ପଚାର ।।
ଏତେ ବୋଲିଣ ରାଉତ ବାସେଲୀ ଚରଣ । କଇବର୍ତ୍ତ ଦାସରାଜା ପଶିଲ ଶରଣ ।୪୦।
ଶୁଣିଲୁ କି ଅର୍ଜୁନ ହୋ ଅଶ୍ୱ ଯାତ୍ରା ବିଧି । ଏସନ ପ୍ରକାରେ ଅଶ୍ୱଯାତ୍ରା ହେଲ ସିଧି ।।
ଶାଢ଼ୀ ସୁନାବଳା ରାଜା ପାତ୍ରଠାରୁ ପାଇ । ଏହିମତ ଅଷ୍ଟଦିନ ଯାତ୍ରା ସେ କରଇ ।।
ଅର୍ଜୁନ ବୋଇଲେ ପ୍ରଭୁ ଶୁଣିମା ଗୋସାଇଂ । କାଠ ଅଶ୍ୱଗୋଟିକ ସେ କାହିଁରେ ରହଇ ।।
ଶ୍ରୀହରି ବୋଇଲେ ତାହା ଶୁଣ ତୁ ଅର୍ଜୁନ । ସେ ଅଶ୍ୱର ଯାତ୍ରା ଶେଷ ଅଷ୍ଟଦିନେ ଜାଣ ।।
ତାହାର ମନ୍ତ୍ରରେ ତାକୁ ନଇବେଦ୍ୟ ଦ୍ୟନ୍ତି । ଶିରଗୋଟି ଉତ୍ତରଣ ମନ୍ଦରେ ଥୁଅନ୍ତି ।।
ଅଥବା ଜଳରେ ତାକୁ ଉଭେଇଣ ଦେଇ । ବରଷକେ ପୁଣି ନୂଆ ମୁଣ୍ଡ ଯେ ଗଢ଼ାଇ ।।
ତପୂରେ ପଞ୍ଜର ଖୋଲି ଜଳରେ ପକାଇ । ଏହି ବିଧିମତେ ଯେ ଯତନେ କରୁଥାଇ ।।
ନିରାକାର ଅଙ୍ଗୁ ଏ ବାସେଲୀ ସିନା ଜାତ । ଏହାକୁ ପୂଜିଲେ ହୋଯ୍ୟେ ବଇକୁଣ୍ଠ ପ୍ରାପ୍ତ ।।
ନିଜରୂପ ଲୁଚାଇ ସେ କାଷ୍ଠେ ଅଛି ରହି । ଭକ୍ତକରି ପୂଜିଲେ ଦେଖିବ ମହାମାଇ ।।
ମାନସିକ କରି ଯେହୁ ବାସେଲୀ ପୂଜିବେ । ଅପୁତ୍ରିକ ହୋଇଥିଲେ ପୁତ୍ର'ସେ ଲଭିବେ ।।
ତିନିପକ୍ଷ ତିନିମାସ ତିନି ବରଷରେ । ଅପୂର୍ବ ନନ୍ଦନ ତାର ମିଳିବ କୋଳରେ ।।
ଧନ ଜନ ସମ୍ପତ୍ତି ତା ବଢ଼ଇ ଅବଶ୍ୟ । ବନ୍ଧ୍ୟାସ୍ତ୍ରି ଯେ ହୋଇଥିଲେ ହୁଏ ଗର୍ଭବାସ ।।
କୂଳ ଭୂଆଁ ଶୁଣି ଯେବେ ମଡ଼ଛୀ ହୋଅଇ । ସୃଷ୍ଟିଧରେ ମଙ୍ଗଳ ସଦା ତାହାର ଆଇଖା ।

ଋତୁକାଳେ ସ୍ନାନ ଯେହ୍ନ ସାରଣ ଅବଳା । ଭଗତ କରିବ ଦେଇ ଗନ୍ଧଯେ ଅସ୍ତ୍ରେଂଳା ।୫୪।
ବାସେଳୀ ମାତାଙ୍କଠାରେ ମନାସ ସେ କରି । ଯତନରେ ସ୍ନାନ ତାଙ୍କୁ କରାଇଣ ନାରୀ ॥
ସେହି ଜଳରୁ ଥୋକାଏ ଗର୍ଭକୁ କ୍ଷେପିବ । ପୁଣି ସେହି ଜଳ ଘେନି ସ୍ନାନ ସେ କରିବ ॥
ଏତନମାସେ ମଡ଼ୁଛୀର ଦୋଷ କ୍ଷୟେ ପାଇ । ମୋହର ବଚନ ଶୁଣ ଯୁକେଷ୍ଟିର ଭାଇ ॥
ଗର୍ବପଣ କରି ଯେହୁ ଇଷ୍ଟ ନ ମାନିବ । ଶ୍ରୀକୃଷ୍ଣଙ୍କ ପଦ୍ମପାଦେ ଦୋରେହା ହୋଇବ ॥
ଦୁଃଖୀହୁଂ ଦୁଃଖୀ ହୁଏ ସେ ନ ମିଳଇ ଅନ୍ନ । ଅନ୍ଧକୂପେ ପଡ଼େ ପୁଣି ନରକେ ପତନ ॥
ଆଉ ଦୁଃଖମାନ ତାର କହ ଅବା ଲେଖି । ସେ ଜନମାନଙ୍କୁ ପାର୍ଥ ନୟନେ ନ ଦେଖି ॥
ଅଭାଗ୍ୟରୁ ଯାହାକୁ ଏ ଶାସ୍ତ୍ର ନ ମିଳଇ । ଇଷ୍ଟଗୋଣ ନପୂଜେ ସେ ଅନ୍ତ୍ରାଏ ହୋଇ ॥
କୁଳ ଧର୍ମ ଆଚରଣ ଏ ଶାସ୍ତ୍ର ଅଛଇ । କୁଳଗୋଣ ପୂଜିଲେ ସେ ପାପୁଂ ନସ୍ତରଇ ॥
କୁଳଧର୍ମ ଅର୍ଥେ ବ୍ରହ୍ମା ସୃଷ୍ଟିବେଦ କଲ । ବେଦବାକ୍ୟ ପ୍ରମାଣ ସେ ସଂସାରକୁ ଦେଲ ॥
ସୃଷ୍ଟିବେଦୁଂ ଏହୁ ହେଲ ଗୀତା ବାକ୍ୟସାର । ଭଣଇ ଅଚ୍ୟୁତ ଦାସ ପ୍ରଭୁ ରକ୍ଷାକର ।୭୪।

ଇତଶ୍ରୀ କୈବର୍ତ୍ତଗୀତାୟାଂ ବୈସ୍ୱାସିକ୍ୟାଂ ପାରମହଂସ ସଂହିତାୟାଂ ଅଶ୍ୱସାନ୍ତ
ବଧି କଥନେ ଶ୍ରୀହରି ଅର୍ଜୁନ ସମ୍ବାଦେ ନାମ ଚତୁର୍ବିଂଶୋଽଧ୍ୟାୟଃ ।

—*—

## ॥ ପଞ୍ଚବିଂଶ ଅଧ୍ୟାୟ ॥

ଅର୍ଜୁନ ବୋଇଲ ପ୍ରଭୋ ଶୁଣିମା ଗୋସାଇଂ । ସବୁଦିନେ ସମତୁଲ ହେବା ଅବା କାହିଂ ।୧।
ଦାସରାଜା ଜାତ ହୋଇ ତୁମ୍ଭଠାରୁ ପୁଣ । ସଂଜାତରେ ବଢ଼ି ସେହୁ କଲତ ସ୍ନେମାନ ॥
ଗୋଣ ବଧି ପୂଜଣ ସେ ଯାହା ଭିଆଇଲ । ତେଣୁକରି ବଇକୁଣ୍ଠ ଭୁବନ ପାଇଲ ॥
କେମନ୍ତେ ପ୍ରକାରେ ସେହୁ ଇଷ୍ଟ ଶାନ୍ତ ହୋଇ । ଏଥିର ବିଧାନ ମୋତେ କହିବା ବୁଝାଇ ॥
ଶ୍ରୀକୃଷ୍ଣ ବୋଇଲେ ବାବୁ ଶୁଣ ତୁ ଅର୍ଜୁନ । ପୂଜାର ବିଧାନ ଯାହା ପୁଚ୍ଛାକଲୁ ଜାଣ ॥
ଝିଙ୍ଗିର ମୁଣ୍ଡରେ ଅଶ୍ୱ ମୁଣ୍ଡକୁ ଥାପିବ । ଅଶ୍ୱିନୀ ବାସେଳୀ ପୂଜା ତହିଂ ସେ କରିବ ॥
ଏକା ସେ ପୂର୍ଣ୍ଣିମୀ ଦିନ ପୂଜିବନ୍ତି ଯେବେ । ଅଶ୍ୱିନୀ ବାସେଳୀ ଶାନ୍ତ ହୋଇବଇଂ ତେବେ ॥
ଅର୍ଜୁନ ବୋଇଲେ ପ୍ରଭୁ ଶୁଣିମା ଗୋସାଇଂ । ଗର୍ବପଣ କରି ଯେହୁ ଇଷ୍ଟ ନ ମାନଇ ॥
ସେ ଜନମାନଙ୍କୁ ଦଣ୍ଡ କପରି ହୋଅଇ । ପ୍ରସନ୍ନ ହୋଇଣ ଏହା ସତ୍ୟ ମୋତେ କହି ॥
ଗୋବିନ୍ଦ ବୋଇଲେ ଶୁଣ ପଣ୍ଡୁର ନନ୍ଦନ । ଇଷ୍ଟ ଗୋଣ ନମାନଇ ଯେଉଂ ଜନ ପୁଣ ॥
ସାତଜନ୍ମ ଯାଏ ତାର ପାଦ ବ୍ୟାଧି ହୋଇ । ତହୁଂ ସେ ସଂସାରୁ ଯାଇଂ ନର୍କରେ ପଡ଼ଇ ॥
ଯେଉଂ ମୁଖେ ନିନ୍ଦଇ ସେ ମୁଖ ନ ଫିଟଇ । ସ୍ନେମନ୍ତ ନୋହିଲେ ତାର ତଳୁ ଫୁଟି ଯାଇ ॥
ଅର୍ଜୁନ ବୋଇଲେ ପ୍ରଭୁ କରୁଛୁ ଦଇନ । କେଉଂ କର୍ମ କଲେ ଯେ ପତିତ ହୋଇ ପୁଣି ॥
ଶ୍ରୀହରି ବୋଇଲେ ପାର୍ଥ ସାବଧାନେ ଶୁଣ । ଅଗମ୍ୟରେ ଯେଉଂ ଲୋକ କରଇ ଭ୍ରମଣ ॥
ଅଭିଳାଷ କର୍ମରେ ଯା ଥିବ ତା ଘଟିବ । ସାତ ପାଞ୍ଚ ଭାଇମେଳେ ବଣ୍ଟାଳ ହୋଇବା ।୧୫।

ଅଥବା ଅଛୁଆ ସଙ୍ଗେ କରିବ ବେଭାର । ନାଶ ଯେ ଅନାଶ ସବୁ ଏହାର ମଧରା ।୧୬।
ଅସ୍ପୃଶ୍ୟ ଜନେ ଯେହୁ ପରଶ କରଇ । ଏମନ୍ତେଣ ଜାତିକୁଳେ ବିଟାଳ ହୋଅଇ ॥
ଜାତିକୁଳ ତହୁଂ ଆଉ ନାହିଂ ଉଦ୍ଧାରଣ । ମନୁଷ୍ୟ ଜନ୍ମର ବିଧି ବିଧାତା ଛିଅଣେ ॥
ଅର୍ଜ୍ଜୁନ ବୋଇଲେ ପ୍ରଭୁ ଶୁଣ ଭଗବାନ । ସେ ଲୋକ କେମନ୍ତେ ପୁଣି ହେବ ପରିତ୍ରାଣ ॥
ଏହାର ଉଦ୍ଧାର ପଥ କହହେ ବୁଝାଇ । ଶ୍ରୀମୁଖ ବଚନ ଶୁଣି ପ୍ରବୋଧିବ ମୁହିଂ ।୨୦।
ଜାତି ଭାଇ ମେଳେ ଯେହୁ ଅଛୁଆ ହୋଇଲା । ତାହାପରେ ଅନ୍ନପାଣି କେହି ନ ଛୁଇଁଲା ॥
କେମନ୍ତେ ସେ ଜାତିମେଳେ ଦିଶିବ ଗୋସାଇଂ । ଏହାର ବିଧି ବିଧାନ କହ ହେ ବୁଝାଇ ॥
ଶ୍ରୀହରି ବୋଲନ୍ତି ଶୁଣ ଅରଜୁନ ତୁହି । ଦାସରାଜା ବଂଶ କଥା ତୋ ଆଗେ କହଇ ॥
ଦାସରାଜା ବଂଶ ଯେ ବଢିଲେ ଅପ୍ରମିତ । ସପ୍ତଦ୍ୱୀପା ପୃଥିବୀରେ ହୋଇଲେ ବିଖ୍ୟାତ ॥
ଜ୍ୟେଷ୍ଠପୁତ୍ର ନରେନ୍ଦ୍ର ତା ରାଜପଣ କଲା । ତାହାର କନିଷ୍ଠ ଭାଇ ଗାରବର ଥିଲା ॥
କୈବର୍ତ୍ତ ବିକ୍ରମ ନାମ ସର୍ବେ ଉଚ୍ଚାରିଲେ । ଗୃହ ସମ୍ପଦା ମିଳାଇ ହରିଧ୍ୟାନ କଲେ ॥
ଗାରବର ଦାସ ବୋଲି ନାମ ଭଣାଇଲେ । ଏହିମନ୍ତେ ତହିଂ ଦାନଧର୍ମ ବହୁ କଲେ ॥
ଜାତିଶ୍ରେଷ୍ଠ କଇବର୍ତ୍ତ ବିକ୍ରମ ସେହି । ଏହି ସିନା ଗୋଷ୍ଠି ବିଧି ବିଖ୍ୟାତ କରଇ ॥
ସବୁବେଳେ ମୋହଠାରେ ସ୍ନେହ ଚିତ୍ତ ଦେଇ । ଅମୋକ୍ଷ ଜନମାନଙ୍କୁ ମୋକ୍ଷ ସେ କରଇ ॥
ଏହିମତେ କେତେକ ବରଷ ତହିଂ ଗଲା । ରାଜାର ବଂଶରେ ଆସି କଳଙ୍କି ଲାଗିଲା ।୩୦।
ଅନ୍ୟ ଅନ୍ୟ ଜନେ ତହିଂ ହେଲେ ଦୁରାଚାର । ଅନ୍ୟ ସ୍ତ୍ରୀ ସଙ୍ଗ ହେତୁ ଅଭିଳାଷ କରି ॥
ଜ୍ୟେଷ୍ଠଭାଇ କନିଷ୍ଠ ଭ୍ରାତାର ସ୍ତ୍ରୀ ସଙ୍ଗ । ଅନ୍ୟାଗୃହରେ ମାତିଲେ ଯେ କରି ବିଧିଭଙ୍ଗ ॥
ଏହିପରକାରେ ଜନେ ଅନେକ ହୋଇଲେ । ବିଟାଳିଆ ହୋଇଣ ସେ ଅସ୍ପୃଶ୍ୟ ରହିଲେ ॥
ସେମାନଙ୍କ ଉଦ୍ଧାର କରିବା କଥା ଶୁଣ । ଯେମନ୍ତ ପ୍ରକାରେ ସେ ଯେ ଲଭିଲେ କାରଣ ॥
ଗାରବର ବଇଷ୍ଣବେ ମୁଂ ଯେ ଶାଢ଼ୀ ଦେଇ । ଆଡ଼ତିଆ ପଣେ ତହିଂ ଜଣଙ୍କୁ ବସାଇ ॥
ଶାଢ଼ୀ ବାନ୍ଧିଲା ବୈଷ୍ଣବ ତାହାର ଶିରରେ । ଆଡ଼ତିଆ ବୋଲି କରି ବୋଇଲେ ଜାତିରେ ॥
ସେ ଆଡ଼ତିଆ ପତିତ କରଇ କାରଣ । ପୂର୍ବେ ଯଉଂ ଦୀକ୍ଷା ମୁହିଂ ଦେଇଥିଲି ପୁଣ ॥
ପତିତ ଅଚ୍ଛେ ଯେହୁ ତୀର୍ଥ ମାର୍ଗେ ଯାଇ । ସ୍ନାନ ତର୍ପଣ ସାରି ସେ ଶୁଚିମନ୍ତ ହୋଇ ॥
ଆଡ଼ତିଆ ସନ୍ଧିରେ ତାହାକୁ ବସାଇ । ଅତି ଅଗମ୍ୟରେ ସେହୁ ଯେବେ ଯାଇଥାଇ ॥
ଶୁଣ ହୋ ଅର୍ଜ୍ଜୁନ ଆଡ଼ତିଆ ଯାହା କରେ । ବେଦି ଗୋଟିଏକ ଥାପି କଳସ ତହିଂରେ ॥
ପଞ୍ଚମୁରୁଜେ କଳସ ଥାପିଲା ବିଧିରେ । ତଣ୍ଡୁଳର ଆଣି ତହିଂ ସିନ୍ଦୁର ବିନ୍ଦୁରେ ॥
କଜ୍ଜଳର ବିନ୍ଦୁ ତହିଂ ପାଶରେ ଦେଇଣ । ଅଞ୍ଜୁଳିର ଜଳ ଭରି କଳସ ଗର୍ଭେଣ ।୪୨।
ତୁଳସୀର ଜଳ ରଖି କଳସ ଭିତରେ । ସୁପାରି ଗୋଟିଏ ପୁଣି ତହିଂ ସଙ୍ଗତରେ ॥
ଉପରେ ରସାଳ ଡାଳ ଗୋଟିଏ ରଖଇ । ପିପଳି ପଇଡ଼ ଗୋଟି ତଥିପରେ ଥୋଇ ॥
•ପଞ୍ଚମୁଖେ ପଞ୍ଚଗୋଟି ଭଣ୍ଡୀ ଯେ ରଖିଣ । ଜବାପୁଷ୍ପହାର ସ୍ନେହ ଦେଇ ଆଭରଣ ॥
ଚନ୍ଦନ କର୍ପୂର ଚୂର୍ଣ୍ଣ ଗୁଗୁଳ ମିଶାଇ । ଏହି ଦ୍ରବ୍ୟମାନନ୍ତ ଯେ ତହିଂ ଧୂପ ଦେଇ ॥
କଳସକୁ ଦେବତାଙ୍କ ଅର୍ଚ୍ଚନା କରାଇ । ସ୍ତବ ସ୍ତୁତି ପଢ଼ିଣ ଯେ ତାହାଙ୍କୁ ଆଣଇ ॥
ପୂରୁବ ପଚ୍ଛିମ ପୁଣି ଉତ୍ତର ଦକ୍ଷିଣ । ଚାରିବେଦ ଚାରି ଦିଗୁ ଆସିଣ ବହନ ।୪୮।
କଳସରେ ଆସି ସେହୁ ବିଶ୍ରାମ କରିବେ । ଦେବତାମାନେ ତହିଂରେ ପୂଜା ଯେ ପାଇବେ ॥

ମେଁ କଳସ ପାଣି ତହୁଁ ଦେବାଲ ହୁଅଇ । ସେହି ଜଳେ ସ୍ନାନକଲେ ସର୍ବପାପ ଯାଇ ।୫୦।

## ଦେବତାଙ୍କ ଅର୍ଚ୍ଚନା

ପୂର୍ବେ ବିଜେ କର ମାଗୋ ଦୁର୍ଗା ମହାମାଈ । ଉତ୍ତର ଭଣ୍ଡାରେ ଭଗବତୀ ବିଜେ ହୋଇ ॥
ପଶ୍ଚିମଭଣ୍ଡାରରେ ସେ ସେ ଦେବୀ ନାଗୁଲେଈ । ଦକ୍ଷିଣରେ ଚଣ୍ଡିକା କାଳିକା ମହାମାଈ ॥
ମଧ୍ୟ ଭଣ୍ଡାରରେ ବିଜେ କର ଗୋ ପାର୍ବତୀ । ପଞ୍ଚମ ଭଣ୍ଡାରେ ବସ ପଞ୍ଚମ ମୂରତି ॥
ଚଣ୍ଡୀ ଗୃମଣ୍ଡାମାନଙ୍କୁ ଘେନଣ ସଙ୍ଗରେ । ଆସି ବିଜେ କର ମାଗୋ କଳସ ଭଣ୍ଡାରେ ॥

ନମୋ ନମୋ ନମସ୍ତେ—ଏହା ପଢ଼ି ଦେବତାଙ୍କୁ ଥାପନ କରିବ । ସେ କଳସକୁ ନୈବେଦ୍ୟ ଦେବ । ଛେନାପଣା ପାଚିଲା କଦଳୀ ପାଞ୍ଚଗୋଟି ଆରିଶାପିଠା ପାଞ୍ଚଗୋଟି ଚକୁଳି ପିଠା ପାଞ୍ଚ ଠେକ ବସାଦହି ଘୃତ ମଧୁ ଏକତ୍ର କରିବ । ପୁଷ୍ପ ପାଣି ଘେନି ଚଳୁ ଧରିବ । ଦକ୍ଷିଣ ହସ୍ତରେ ଚଳୁ ଧରିବ । ବାମହସ୍ତ ଘୋଡ଼ାଇ ହୃଦସ୍ଥଠାରେ ଧରିବ । ଦଶାକ୍ଷର ମନ୍ତ୍ର ଜପି ନୈବେଦ୍ୟ ଦେବ । ଓଂ କ୍ଲାଂ ଶ୍ରୀଂ କ୍ଲୁଂ ମନ୍ତ୍ରରେ ପାଣି ଛଡ଼ାଇ ଦେବ ।

ତହୁଁ ଉତ୍ତାରୁ ମହାକାଳ, ନାଗମଣି, ଶ୍ୱେତଦୁବ, ଶ୍ୱେତ କୋଇଲଖିଆ, ଶ୍ୱେତ ଦୁଦୁରା, ଶ୍ୱେତ ମନ୍ଦାର, ହଳଦୀ ଏ ସମସ୍ତ ବାଟିଆଇ ଅସଙ୍ଗା ବାଛୁରୀ ଗୋବର ସଙ୍ଗେ ମିଶାଇ ଦେହରେ ଲେପିବ । ସେହି କଳସ ପାଣିରେ ପତିପତ୍ନୀ ଦୁହେଁ ଅଣ୍ଟୁଠାରେ ସ୍ନାନ କରିବ । ସେଠାରୁ ଆସି ସେମାନେ ବେଦୀପରେ ବସିବେ । ଶୁଷ୍କ କାଷ୍ଠରେ ଘୃତ ଦେଇ ହୋମ ମନ୍ତ୍ର ଉଚ୍ଚାରଣ କରି ବେଦୀ ପାର୍ଶ୍ୱରେ ହୋମ କରିବ । ଏହା ବିଧି—

"ଓଂ ଶ୍ରୀ ଅଣାକାର ବ୍ରହ୍ମଅଗ୍ନି ସହସ୍ରାଂଶୁ ତେଜରାଶେ ଜଗତ୍ପତେ ଅନୁକମ୍ପାସ୍ୱ ମାଂ ଭକ୍ତ୍ୟା—ଶ୍ରୀ ବ୍ରହ୍ମଅଗ୍ନି ଘୃତାସ୍ତୁ ସ୍ୱାହା" । ଏ ମନ୍ତ୍ର ପଢ଼ି ହୋମ କରିବ ଅବଶ୍ୟ । ଯେ ଶ୍ୱେତ ଘୃତ ରହିବ ତାହା ତୁଳସୀପତ୍ର ସଙ୍ଗତରେ ପାଇବାକୁ ପତିପତ୍ନୀକୁ ଦେବ। ତେବେ ସେ ସେ ଶାପ୍ୟରୁ ମୋକ୍ଷ ହୋଇଯାଇ ।

କଳସରେ ନୂତନ ବସ୍ତ୍ର ଦେଇ ପୂଜା କରିବ ଓ ନୂତନ ବସ୍ତ୍ର ପିନ୍ଧି ହୋମ କରିବ । ସନ୍ଧ୍ୟା ସମୟରେ ପୂଷ୍ପ କଳସ ନେଇ ଜଳରେ ଉତେଇ ଦେବ ।

ବନ୍ଧୁ କୁଟୁମ୍ବ ଭାଇଙ୍କୁ ଭୋଜନ ସେ ଦେଇ । ଦୋଷକ୍ଷୟେ ପାଇ ତାର ସଭାରେ ବସଇ ॥
ଶୁଣିଲୁ କି ଅର୍ଜୁନ ହୋ ଦାସରାଜା କଥା । ଜନ୍ମ କାଳରୁ ତାହାର ଯେତେକ ବ୍ୟବସ୍ଥା ॥
ଏହିମତ ପତିତ ଯେ ଉଦ୍ଧାର ହୁଅଇ । ତେବେ ସେହୁ ରାଜବଂଶେ ଆତଯାତ ହୋଇ ॥
ମଣ୍ଡଳର ବୀରବର ଦାସଙ୍କୁ ପୂଜନ୍ତି । ବୀରବର ବୋଲି ତାଙ୍କୁ ସଭାରେ ବୋଲନ୍ତି ॥
ଏହିମତ ଜନ୍ମେ ଜନ୍ମେ ହୋଏ ଆତଯାତ । କଇବର୍ତ୍ତ ନାମ ବୋଲି ଯହାରେ ବିଖ୍ୟାତ ॥
ଏହିରୂପେ ପୂର୍ବକଥା ତାର ବଂଶେ ଅଛି । ପତିତ ଉଦ୍ଧାରଣ କହିଲୁ ପଣ୍ଡୁ ବଛି ।୬୦।

ଶୁଣିଣ ସନ୍ତୋଷ ଲଭ ପଣ୍ଡୁର ଦୁଲଲ । କୋଟି ପ୍ରଣାମ ଶ୍ରୀକୃଷ୍ଣ ଚରଣ କମଳ ॥
ଅର୍ଜ୍ଜୁନ ବୋଇଲେ ପ୍ରଭେ ପାଇଲି କାରଣ । ଅଚ୍ୟୁତ ଦାସ ଶରଣ ଶ୍ରୀକୃଷ୍ଣ ଚରଣ ।୭୨।

ଇତଶ୍ରୀ କୈବର୍ତ୍ତଗୀତାୟାଂ ବୈୟାସିକ୍ୟାଂ ପାରମହଂସ ସଂହିତାୟାଂ ଦାସବାକା ଚରିତେ
ପତିତଜନନିସ୍ତାରଣ କଥନେ ଶ୍ରୀହରି ଅର୍ଜ୍ଜୁନ ସମ୍ବାଦେ ନାମ ପଞ୍ଚବିଂଶୋଽଧ୍ୟାୟଃ ।

—ସଦାଜୟେ ସମ୍ପୂର୍ଣ୍ଣ—

—*—

ଓଁ ଶ୍ରୀ ଗଣେଶାୟ ନମଃ

## ॥ ପ୍ରଥମ ପଟଳ ॥

ଶୁଣ ହୋ ସୁଜନେ ଗୁପତ ଏବେ ।
ରାମ ଦାସ ପୁଚ୍ଛଇ ଗୁରୁ ଠାବେ ।୧।
ହେ ଗୁରୁ କହ ପରମ ଗୁପତ ।
କାହିଂ କେତେ ଭକ୍ତ ହୋଇବେ ଜାତ ।୨।
ରାମଚନ୍ଦ୍ର ଦାସ ମୋହୋର ଶିଷ୍ୟ ।
ଆମ୍ଭ ଚରଣରେ ବଡ଼ ବିଶ୍ୱାସ ।୩।
ଗୁରୁ ଶିଷ୍ୟ ବେନି ମୂରତି ଗତି ।
ନିଗମ ସ୍ଥାନରେ ଯାଇଂ ବସନ୍ତି ।୪।
ପଚାରଇ ସବୁ ଆଗତ ବାଣୀ ।
ଚରଣେ ପଡ଼ି ଯୋଡ଼େ ବେନିପାଣି ।୫।
ହେ ଗୁରୁବ୍ରହ୍ମ ଜଗତ ଈଶ୍ୱର ।
ମନରେ ପଡ଼ିଲା କଥାଏ ମୋର ।୬।
ତୁମ୍ଭେ ଯେ ପଞ୍ଚସଖା ଜନ୍ମ ନେଲ ।
ପ୍ରଭୁଙ୍କ ସଙ୍ଗତେ ଦୃଶ୍ୟ ଲଭିଲ ।୭।
କଳିରେ ତୁମ୍ଭର ହୋଇଲା ଜନ୍ମ ।
କେତେ ଅଙ୍ଗ କାହିଂ କେତେ ପ୍ରମାଣ ।୮।
କହିବା ହୋଅ ଗୁରୁବ୍ରହ୍ମ ମୋତେ ।
ଶୁଣ ସୁଜନେ ପଚାରିଲା ଯେତେ ।୯।
ଅଚ୍ୟୁତାନନ୍ଦର ହରଷ ମନ ।
ଭଲ ପଚାରିଲୁ ବୋଲେକି ରାମ ।୧୦।
ଶୁଣ ରାମଚନ୍ଦ୍ର ସୁମନ ହୋଇ ।
ରୁକ୍ମିଣୀ ସମ୍ବାଦ ଦେବା ବତାଇଂ ।୧୧।
ସୁଦାମା ସଖା ନିତ୍ୟରେ ମୁଂ ଥିଲି ।
ସେବାରେ ରହି ମୁଂ ସର୍ବ ଶୁଣିଲି ।୧୨।
ଦେବତାମାନେ ଯେ ମେଳିଣିପାଇ ।
ଛାମୁରେ ଜଣେ ନରହିଲେ କେହି ।୧୩।

ରୁକ୍ମଣୀ ପଗ୍ରରେ ବଚନସ୍ତକର ।
କାହୁଁ ତୋ ଭକ୍ତ କେତେ ଅବତର ।୧୪।

ମୋତେ ବୋଇଲେ ଲେଖ ହୋ ଅଚ୍ୟୁତ ।
ଶ୍ରୀମୁଖୁ ଲେଖି ଆଣିଛୁ ଏମନ୍ତ ।୧୫।

ଏ ଯେ ଗୁପତ କେହୁ ନ ଜାଣନ୍ତି ।
ତୋତେ କହୁଅଛୁ ଶୁଣ ଏ ଗୂଢ ।୧୬।

ସବୁ କହିଲେ ଆଗତ ବଗୃର ।
କାହୁଁ ଯେ କେତେ ଭକ୍ତ ଅବତାର ।୧୭।

ଯେତେବେଳେ ଯୁଗ ପ୍ରଳୟେ ହେଲା ।
ଚତୁର୍ଦ୍ଦଶ ପୁର ବିନାଶ ଗଲା ।୧୮।

ପର୍ବତମାନେ ପଡ଼ିଲେ ଜଳରେ ।
ବେଲୁଂ ବେଲୁ ମାୟା କାରୁଣ୍ୟ ବଢ଼େ ।୧୯।

ଧ୍ରୁବ ମଣ୍ଡଳ ପର୍ଯ୍ୟନ୍ତେ ଜଳ ।
ମାରେ ଲହରୀ କାହୁଁ ଅଳକୂଳ ।୨୦।

ବେଳକୁ ବେଳ ଯେ ଜଳ ବଢ଼ିଲା ।
ଦେବମାନଙ୍କ ଆସନ ଶଙ୍କିଲା ।୨୧।

ସକଳ ଦେବ ଯେ ମେରୁ ଉପରେ ।
ବସିଲେ ଯାଇଂ ସୁଧର୍ମା ସଭାରେ ।୨୨।

ଜଳ ବଢ଼ନ୍ତେ ଯେ ମେରୁ ବୁଡ଼ଇ ।
ସୁଧର୍ମା ସଭା ମଧ୍ୟେ ସର୍ବେ ରହି ।୨୩।

ଦେବତାଏ ଯହୁଂ ନାଶ ନୋହିଲେ ।
ମାୟାରେ ଦେବଚକ୍ଷୁ ପେଷିଦେଲେ ।୨୪।

ନିରାକାର ସ୍ୱାମୀ ଆକାର ନାହିଁ ।
ଆକାର ହୋଅନ୍ତି ଭଗତ ପାଇଁ ।୨୫।

ପରମ ଧାମ ନୀଳଗିରି ଜାଣ ।
ଆକାରି ସକଳ ଗର୍ଭେ ପାପ୍ରାଂଶ ।୨୬।

ଠୁଳ ସ୍ୱରୂପ ଧରି ନାରାୟଣ ।
ଠୁଳ ସ୍ୱରୂପେ ସମସ୍ତ ଗୋପ୍ୟାନ ।୨୭।

ବଟପତ୍ରେ ନିରାକାର ଶୟନ ।
ବଟ ବଢ଼ଇ କମଳ ଯେସନ ।୨୮।

କମଳ ଲତା ପର୍ଯ୍ୟନ୍ତେ ଯେ ହୋଇଂ ।
ପ୍ରଳୟ ଜଳେ ଯେ ବଟ ବଢ଼ଇ ।୨୯।

ଦ୍ୱାଦଶ ଆଙ୍ଗୁଳ କଳିକା ଜାଣ ।
ଆସନ କଲେ ଦେବଙ୍କ ପ୍ରାମାଣ ।୩୦।
ଯବ ପ୍ରମାଣ ହୋଇଲକ ସନ୍ଧ୍ୟଂ ।
ନୀଳ ଆକାରେ ଜ୍ୟୋତ ଦାଉ ଦାଉ ।୩୧।
ଢୁଗ୍ନନଶାସ୍ତ୍ରୀରେ ଆସନ କଲେ ।
ବଟପୂଟରେ ନଶ୍ଚିନ୍ତେ ଶୋଇଲେ ।୩୨।
ଚରଣ ବୃଦ୍ଧା ଅଙ୍ଗୁଷ୍ଠିକି ଦେଇଂ ।
ଚୁଚୁମୁ ଅଛନ୍ତି ସାନନ୍ଦ ହୋଇଂ ।୩୩।
ଆସ୍ୱାଦ କରନ୍ତି ଅମୃତ ପାନ ।
ଅମୃତ ସ୍ରବତ ହୋଇଣ ଜାଣ ।୩୪।
ବ୍ରହ୍ମାଣ୍ଡ ଯାକ ଗର୍ଭରେ ସମ୍ଭୂତ ।
ଗର୍ଭଅଗ୍ନି ଘେନଛନ୍ତି ଜଗତ ।୩୫।
ଯେଣୁ ଅମୃତ ଯେ ପାନ କରନ୍ତି ।
ଅମୃତ ପାନରୁ ସୁଖେ ବଞ୍ଚନ୍ତି ।୩୬।
ଆତଯାତ ହୋଉଥାନ୍ତି ଗର୍ଭରେ ।
ଯାହାର ଯେମନ୍ତ ଲୀଳା ପ୍ରକାରେ ।୩୭।
ମାର୍କଣ୍ଡ ପଶି ଅନ୍ତ ନ ପାଇଲେ ।
ସଂସାର ସର୍ଜନା ମାନ ଦେଖିଲେ ।୩୮।
ଅନେକ କାଳ ଗର୍ଭରେ ରହିଲେ ।
ଠାବେ ଠାବେ ଲୀଳାମାନ ଦେଖିଲେ ।୩୯।
ଶୁଣ ରାମଚନ୍ଦ୍ର ସୁମନ ହୋଇ ।
ପ୍ରଭୁ କହନ୍ତି ରୁକ୍ମିଣୀ ଶୁଣଇଂ ।୪୦।
ରୁକ୍ମିଣୀ ଦେବୀ ଯେ ଯାହା ପଚାରେ ।
ସବୁ କହନ୍ତି ଲୀଳା କଳେବରେ ।୪୧।
ଶୁଣ ରୁକ୍ମିଣୀ ମନଚିତ୍ତ ଦେଇ ।
ନିଃଶ୍ୱାସରୁ କୋଟି ବ୍ରହ୍ମାଣ୍ଡ ହୋଇ ।୪୨।
ଯୋଗ ନିଦ୍ରାରେ ଯେ ବଟପୂଟରେ ।
ବାଳକ ମୂରତି ଠୁଳ ଆକାରେ ।୪୩।
ଯୋଗମାୟାକୁ ସ୍ୱପନେ ଦେଖିଲୁଂ ।
ଶୃଙ୍ଗାର ରସରେ ବନ୍ଧୁ ଟାଳିଲୁଂ ।୪୪।

ହସ୍ତେ ଧରିଲୁଂ ଯେ ଜଳେ ପଡ଼ନ୍ତେ ।
ଉଦକଧାର ହୋଇ ଗଳାକ୍ଷ ଅନ୍ତେ ।୪୫।

ଉଦକ ଦେବତା ହୋଇଲେକ ଜାତ ।
ମନର ମଧ୍ୟରୁ ସବୁ ସମ୍ଭୃତ ।୪୬।

ଆଳସ୍ୟ ହୋଇଲା ବିଷ୍ଣୁ ଶରୀର ।
ବ୍ରହ୍ମାଙ୍କୁ କହୁ ଚଳିଲେ ସତ୍ୱର ।୪୭।

ହରଷେ ଅନନ୍ତ ଶେଯ୍ୟା ହୋଇଲେ ।
ତହିଂ ଉପରେ ଯେ ବିଷ୍ଣୁ ଶୋଇଲେ ।୪୮।

ମନରୁ ମଧୁ କଇଟଭ ଜାତ ।
ଅନେକ ଯୁଦ୍ଧ ସେ କଲେ ସଙ୍ଗତ ।୪୯।

ଯୋଗମାୟା ଆସି ମନ ମୋହିଲେ ।
ଚକ୍ରରେ ହରି ତାହାଙ୍କୁ ଛେଦିଲେ ।୫୦।

କୁହିଳ ମାଟି ସାନ୍ଧିଲା ପରିଏ ।
ହସ୍ତରେ ମର୍ଦ୍ଦିଲା ଦୈତ୍ୟର କାୟେ ।୫୧।

ଦଣ୍ଡରୁ ବ୍ରହ୍ମା ଉଦକଖଣ୍ଡ କରି ।
ପୃଥ୍ୱୀ କଳ୍ପିଲେ ସ୍ୱେମନ୍ତ ବିଚାରି ।୫୨।

ଅଜସ୍ତ୍ରେ ଶିଳାରେ ମେରୁ ବସାଇ ।
ଦକ୍ଷକୁ ଜାତ କଲେକ ଗୋସାଇଂ ।୫୩।

ଗାୟତ୍ରୀ ସାବିତ୍ରୀ ଏ କନ୍ୟା ବେନି ।
ପ୍ରଥମେ ଜାତ ହୋଇଲେ କାମିନୀ ।୫୪।

ବ୍ରହ୍ମା ସର୍ଜନା ମନେ ବିଚାରିଲେ ।
ଅଙ୍ଗୁଷ୍ଠି କୁଶରୁ ନାରଦ ହେଲେ ।୫୫।

ଶୁଣ ରୁକ୍ମିଣୀ ମନଚିତ୍ତ ଦେଇଂ ।
ବଟ ପୁଟରେ ଆମ୍ଭେ ଥିଲୁ ଶୋଇଂ ।୫୬।

ଅଙ୍ଗୁଷ୍ଠି ଉଣ୍ଡରୁ କାଢ଼ିଲୁଂ ସନ୍ଧୁଂ ।
ସପାରେ ସମସ୍ତ ଉଦିତ ତହୁଂ ।୫୭।

ମାର୍କଣ୍ଡ ମୁନି ସହିତେ ସକଳ ।
ଗୁରୁମୁଖ ବ୍ରହ୍ମା ଆଦି ଯେ ମୂଳ ।୫୮।

ପଦ୍ମଯୋନି ପଦ୍ମଯୋନିରୁ ଜାତ ।
ସେହିଟି ଜାଣି ସୃଜିଲେ ଜଗତ ।୫୯।

ଆଦ୍ୟ ବେଦଠାରୁ ସୃଷ୍ଟିନନ୍ଦନ ।
ଜନମ ହୋଇଲେ ବ୍ରହ୍ମ ଅଂଶେଣ ।୬୦।

ଆଦ୍ୟ ଅନନ୍ତ ବ୍ରହ୍ମ ଯୁଗେ ଜାତ ।
ତାହାଙ୍କ ତହୁଂ ଯେ ସକଳ ଜାତ ।୬୧।

ତାହାଙ୍କ ତହୁଂ ସୃଷ୍ଟିପୁଞ୍ଜ ଜାତ ।
ସଂସାରେ ହୋଇଲେ ଏହୁ ଉଦ୍ଭବ ।୬୨।

ନାରଦ ମାରକଣ୍ଡ କୃପାଜଳ ।
ଶାଗ୍ରବ ଯେଜନେ ସୃଷ୍ଟି କୁମର ।୬୩।

ସତ୍ୟ ତ୍ରେତୟା ଯେ ଦ୍ୱାପର କଳି ।
ଏ ସୃଷ୍ଟି ଯୁଗକୁ ଅଛୁ ଆବୋରି ।୬୪।

ଅଗସ୍ତିଙ୍କି ଯେବେ ପଞ୍ଚୁ ହୋଇଲୁଂ ।
ସତ୍ୟ ଯୁଗରେ ଯେ ଆମ୍ଭେ ଜନ୍ମିଲୁଂ ।୬୫।

ତ୍ରେତୟା ଯୁଗେ ଏହୁ ପାଞ୍ଚଜଣ ।
ଦ୍ୱାପରେ ଗୋପାଳ ପାଞ୍ଚ ପ୍ରମାଣ ।୬୬।

କଳି ଯୁଗରେ ଯେ ଏ ପାଞ୍ଚଜଣ ।
କଳଙ୍କୀ ରୂପକୁ କରନ୍ତୁ ଧ୍ୟାନ ।୬୭।

ଦୁଷ୍ଟ ନିବାରି ଉଶ୍ୱାସିବୁ ମହୀ ।
କଳିରେ ଅଚ୍ୟୁତ ନାମଟି ବହି ।୬୮।

ଶୁଣ ରାମଚନ୍ଦ୍ର ସୁମନ ହୋଇ ।
ପ୍ରଥମ ପଟଳ କହିଲୁ ଫେଇଂ ।୬୯।

## ॥ ଦ୍ୱିତୀୟ ପଟଳ ॥

ସତ୍ୟଯୁଗ କଥା ଦେବା ବତାଇଂ ।
ଶୁଣ ରାମଚନ୍ଦ୍ର ସୁମନ ଦେଇଂ ।୭୦।

ସତ୍ୟ ଯୁଗରେ ଯେ ଜନମ ହେଲୁ ।
ଶ୍ରୀହରି ସଙ୍ଗତେ ରୂପ ଲଭିଲୁ ।୭୧।

ଯେ ଯାହା ଆଶ୍ରମ ତର୍ପଣ ଯେବେ ।
ଜନମ ହେଲୁ ଆମ୍ଭେ ବ୍ରହ୍ମମୁନି ।୭୨।

ଚଉଷଠୀ ସିଦ୍ଧ ହେଲୁଂ ଜନମ ।
ନାରାୟଣ ମନ୍ତ୍ର ଯେ ଉପାସନ ।୭୩।

ନାଭି କମଳରୁ ବ୍ରହ୍ମା ଜନମ ।
ଅଙ୍ଗରୁ ସୁଦାମା ଗୋପାଳ ଜନ୍ମ ।୭୪।
ବ୍ରହ୍ମାର ରେ କପାଳନ୍ତି ଯେହ୍ନଂ ।
ବ୍ରହ୍ମଗୋପାଳ ତହିଁ ଜନ୍ମହୋଇ ।୭୫।
ଜନେକ ସନେକ ଯେ ସନାତନ ।
ଭୃଗୁ ଅଙ୍ଗିରା ଗାଗ୍ରେବ ଚ୍ୟବନ ।୭୬।
ଅଗସ୍ତି ପୁଲସ୍ତ୍ୟ ବଶିଷ୍ଠ ହୋଏ ।
କଶ୍ୟପ ନାରଦ କପିଳ ଆତ୍ରେୟ ।୭୭।
କୃପାଜଳ ଲଣ୍ଡ ମାର୍କଣ୍ଡ ଜାଣ ।
ବ୍ୟାସ ଶୁକ ଶମ୍ଭୁ ଶଚୀ ପ୍ରମାଣ ।୭୮।
ବାଲମିକ ଅଦ୍ଧ ବନ୍ଦିବା ଜାଣ ।
ତତ୍ତ୍ୱ କ୍ରୀଡ଼ା ଭବ ଦ୍ୱାଦଶ ନାମ ।୭୯।
କେତେ କହିବା ଏକ ଏକ କରି ।
ଏହିମାନେନ୍ତି ସତ୍ୟେ ଅବତରି ।୮୦।
ଅବତାର ନାଥ ସଙ୍ଗତେ ଥାଇଁ ।
ଲୀଳା କରିଥାଉଂ ସୁରଙ୍ଗେ ରହିଂ ।୮୧।
ଯହିଂରେ ଯେତେକ ସଙ୍ଗ ଯୋଜଣ ।
ହରି ସଙ୍ଗତେ ହୋଇଥାନ୍ତି ଜନ୍ମ ।୮୨।
ଲୀଳା ଅଙ୍ଗରେ ଜନ୍ମ ହୋଉଥାନ୍ତି ।
ଯୁଗ ଅନୁସାରେ ମାନ କରନ୍ତି ।୮୩।
ଯହିଂ ଯୁଗେ ଯାଉଂ ବଧି ପ୍ରମାଣ ।
ଗୁରୁ ବେଦରେ କରିଛୁ ଭିଆଣ ।୮୪।
ଧ୍ରୁବ ପ୍ରହ୍ଲାଦ ଷଡ଼ ଚକ୍ରବର୍ତ୍ତୀ ।
ସତ୍ୟ ଯୁଗରେ ହେବେ ଉତପତ୍ତି ।୮୫।
ଯେ ସେ ଶ୍ରୀହରି ସେହ୍ନ ନାରାୟଣ ।
ମଧୁ ଦୈତ୍ୟକୁ ନାଶିଲେ ସତ୍ୟେଣ ।୮୬।
ହିରଣ୍ୟ ହିରଣାକ୍ଷକୁ ନିବାରି ।
ପାତାଳେ ଗୁପି ବଳକ ନସ୍ତାର ।୮୭।
ତ୍ରେତୟା ଯୁଗେ ମାଇଲେ ରାବଣ ।
ପ[illegible] ଯୂଥ ସଙ୍ଗତେ ଯୋଜଣ ।୮୮।

ପର୍ଶୁରାମ ରୂପେ ସହସ୍ରାର୍ଜୁନ ମାର ।
ରାମ ସ୍ୱରୂପେ ରାବଣ ସଂହାର ।୮୯।
କହ୍ଲା ଅବତାର ହୋଇଲେ ହର ।
ଅଷ୍ଟମଲ୍ଲ କଂସ ଘାତେ ହବାର ।୯୦।
କୃଷ୍ଣ ସଙ୍ଗତେ ଦ୍ୱାଦଶ ଗୋପାଳ ।
ରାମକୃଷ୍ଣଙ୍କ ସେବା ନିରନ୍ତର ।୯୧।
କଳରେ କଲଙ୍କୀରୂପ ଉଦୟେ ।
କଲଙ୍କୀ ରୂପକୁ କରନ୍ତୁ ଲୟେ ।୯୨।
ପଞ୍ଚସଖାଙ୍କୁ ଯେନ ସଙ୍ଗତରେ ।
ବଳେ ସ୍ୱାମୀ ମିଳିବି ଶିରେ ।୯୩।
ସେଠାରେ ଆମ୍ଭେ ଯେ ଆଶ୍ରୀଂ ପାଇବୁ ।
ଦେହ ବନ୍ଧଣ ଯେ ଜନମ ହେବୁ ।୯୪।
କଳାମାନଙ୍କୁ ଗୁପତେ ରଖିଣ ।
ସଂସାରେ ବହୁଛୁ ଧିବୁ ଗୋପ୍ୟାନ ।୯୫।
କଲଙ୍କୀ ରୂପକୁ ହୃଦେ ସୁମର ।
ସ୍ୱରୂପ ହୋଇ ନାନା ରୂପ ଧର ।୯୬।
ଶୁଣ ରାମଚନ୍ଦ୍ର ସୁମନ ହୋଇଂ ।
କଲଙ୍କୀ ରୂପକୁ ଥିବୁ ଅନାଇଂ ।୯୭।
କଲଙ୍କୀ ରୂପ ହୋଏ ପ୍ରକଟନ ।
ରେବତୀ ଉଦେ ହେବେ ଦେହଧନ ।୯୮।
ମୀନମାସରେ ହର ହେବେ ଜନ୍ମ ।
ଚଇତ ମାସେର ଆରମ୍ଭେ ରଣ ।୯୯।
ସପତ ଦନ ଯାମିନୀ ଯୋଟିବ ।
ସତ୍ୟ ସତ୍ୟ ରାମ ଅଟଇ ଧ୍ରୁବ ।୧୦୦।
ଜନ୍ମକୁ ଜନ୍ମ ସଙ୍ଗେ ଜନ୍ମ ଲଭ ।
ଯୁଗ ଗୋଟି କେତେ ନୋହଇ ଭାବ ।୧୦୧।
ଅବତାରକେ ଆମ୍ଭ ହେଉଂ ଜନ୍ମ ।
ଇଚ୍ଛାମୁଖେ ରାମ ହୋଇ ହୋ ଜନ୍ମ ।୧୦୨।
ଗୋଲୋକ ନତ୍ୟଟି ଯାହା ବୋଲନ୍ତି ।
ପଞ୍ଚଭୂତରେ ଯେ ସେ ସ୍ଥାନ ଥିତ ।୧୦୩।

ଦୂର୍ଯ୍ୟଙ୍କୁ ସୂର୍ଯ୍ୟ ଯେ ସୂର୍ଯ୍ୟ ପବନ ।
ପବନୁଂ ଜଳ ଜନ୍ମଭୂମି ମାନ ।୧୦୪।

ଏମନ୍ତ ହୋଇଂ ଯେ ଗୁପତ ମନ୍ତ୍ର ।
ଏଥିରେ ସନ୍ଧ ଅନେକ ଅଛଇ ।୧୦୫।

ନବଦ୍ୱୀପକୁ ଯେ ନବ ସମୋ୍ର ।
ଏଥିର ମଧ୍ୟେ ଦଶଦଶ ଭେଦ ।୧୦୬।

ଯୁଗ ବୋଲନ୍ତେ ଚାରି ଯୁଗ ହୋଏ ।
ଆବର ଯୁଗକୁ ଗୁପତ ଥାସ୍ତେ ।୧୦୭।

ଆଦ ଅନ୍ତ ଯୁଗ ଯାହାକି କହୁଂ ।
ଅନନ୍ତ ହଂଶମନ୍ତ୍ର ସେ ଅଛଇ ।୧୦୮।

ନାରାୟଣ ମନ୍ତ୍ର ସତ୍ୟଯୁଗରେ ।
ରାମ ତାରେକ ମନ୍ତ୍ର ତ୍ରେତୟାରେ ।୧୦୯।

ଗୋପାଳ ମନ୍ତ୍ର ଯେ ଦ୍ୱାପରେ ସାର ।
ଷୋଡ଼ଶ ଅକ୍ଷର କଳି ହୁଙ୍କାର ।୧୧୦।

ପାଞ୍ଚଯୁଗକୁ ଯେ ପାଞ୍ଚ ଦେବତା ।
ପଞ୍ଚ ସଖାସ୍ତେ ବ୍ରହ୍ମାଣ୍ଡ କରତା ।୧୧୧।

ସୁଦାମ ସଖା ଯେ ମୋହୋର ନାମ ।
ସତ୍ୟେ କୃପାଜଳ ଋଷି ଆଶ୍ରମ ।୧୧୨।

ତ୍ରେତୟା ଯୁଗେ ନଳ ନାମ ବହୁଂ ।
ଗୋଲକେ ସୁଦାମ ନାମ ଅଛଇ ।୧୧୩।

ଯେଣୁ ଗୋଲକ ଲୀଳା ଗୋପ୍ୟ ହେଲା ।
ତେଣୁ ସୁଦାମ ନାମ ବୋଲାଇଲା ।୧୧୪।

କଳିଯୁଗରେ ଚୈତନ୍ୟ ଠାକୁର ।
ଅବତାର ହେଲେ ନବ ଦ୍ୱୀପର ।୧୧୫।

ପଞ୍ଚ ସଖା ଯେ ନାମ ବୋଲାଇଲେ ।
ଶ୍ରୀକୃଷ୍ଣ ସଙ୍ଗତେ ବାହାର ହେଲେ ।୧୧୬।

ପୃଥ୍ୱୀ ଅପ ତେଜ ବାୟୁ ଆକାଶ ।
ନାଥିଲା ପଞ୍ଚଭୂତ ଦଶଦଶ ।୧୧୭।

ରାଧାକୃଷ୍ଣ ତେଜ ମୂର୍ତ୍ତି ଥିଲେ ।
ତେଣୁ ଜନେ ଗୋଲେଖ ବୋଲାଇଲେ ।୧୧୮।

ଗୋଲେଖ ନିତ୍ୟଟି ବୈକୁଣ୍ଠ ସ୍ଥାନ ।
ତହୁଂ ଜନମ ପଞ୍ଚ ମହାଜନ ।୧୧୯।
ପଞ୍ଚ ଭୂତରେ ସଂସାର ଘଟଣ ।
ପଞ୍ଚ ଅବତାର ଲୀଳା ଭିଆଣ ।୧୨୦।
ସତ୍ୟେ ନାରାୟଣେ ନୃସିଂହ ଦୁଇ ।
ତ୍ରେତୟାରେ ରାମ ନାମ ବୋଲାଇ ।୧୨୧।
ଦ୍ୱାପରେ କାହ୍ନୁ ସେ ସନ୍ଧିକ୍ଷେଣରେ ।
କଳି ନିତ୍ୟାନନ୍ଦ ଚୈତନ୍ୟ ଦାସେ ।୧୨୨।
ସତ୍ୟରେ ମାୟା କେହି ନ ଜାଣିଲେ ।
ଲୀଳା ଗୋଟିଏ ସେ ଭିଆଣ କଲେ ।୧୨୩।
ସହୁଂ ଆରମ୍ଭ ଭିଆଇଲେ ତହୁଂ ।
ବିପ୍ରକୁ ସେ ଗାୟତ୍ରୀ ମନ୍ତ୍ର ଦେଇ ।୧୨୪।
ଗାୟତ୍ରୀ ମନ୍ତ୍ର ସେ ଜପ କରିବ ।
ପରିରଜ ସସବନ୍ଧ ଭଜିବ ।୧୨୫।
ଅଷ୍ଟ ଅକ୍ଷର ଅଷ୍ଟଗୋଟି ପାପ ।
ଦହନ ହୋଇବ ଏ ସବ ଗୋପ୍ୟ ।୧୨୬।
ସଗ୍ୟଂରେ ଗୋକୁଳୁ ଭସ୍ମ କରନ୍ତି ।
ନରମାନଙ୍କୁ ବଚନେ ମାରନ୍ତି ।୧୨୭।
ମନ୍ତ୍ର ସିଦ୍ଧହେଲ ବୋଲିଣ ଜାଣି ।
ଜାଆନ୍ତି ସେହି ମନ୍ତ୍ର ଫୁଙ୍କି ପୁଣି ।୧୨୮।
ଏମନ୍ତ ହୋଇ ଯୁଗ ଭୋଗ୍ୟ କଲା ।
ତ୍ରେତୟା ଯୁଗେ ପ୍ରବେଶ ହେଲା ।୧୨୯।
ରାମ ଅବତାର ହୋଇଲେ ସହୁଂ ।
ସଙ୍କରସ ସିଦ୍ଧ ଅଧିକ ତହୁଂ ।୧୩୦।
କଳାକାହ୍ନୁ ରୂପେ ମାୟା ଭିଆଣ ।
ରଙ୍ଗରସ ସେ କରିବେ ନିର୍ବାଣ ।୧୩୧।
ଚୁଡ଼ୁକେ ଡାକ ଭିଆଇବେ ମାୟା ।
ମନ କଲମ ପଢ଼ି ଧୂମ୍ର ହୁଆ ।୧୩୨।
ଗୋରୁ ପଞ୍ଜାରୁ ମାଂସ କାଟିବେ ।
ମାନ୍ତ୍ରାମନ୍ତ୍ର ପଢ଼ି ଲଗାଇ ଦେବେ ।୧୩୩।

ରାବଣ ଜମନ୍ତେ ସୀତାକୁ ଯେନ ।
ଆଶ୍ରୁର ଆରମ୍ଭ କଲେକ ମୁନ ।୧୩୪।

ମାୟା ମୃଗ ଯେ ଶୂନ୍ୟରେ ଉଡ଼ଇ ।
ମୃଗ ମାରଯାନ୍ତି ସେ ବେନଭାଇ ।୧୩୫।

ନାଗଲଛଣା ମାୟାମୃଗ କର ।
ନତ୍ରୋ ମାୟାମୃଗ ବନରେ ମାର ।୧୩୬।

କନ୍ଦମୂଳ ଯେନ ବନୁଂ ଆସନ୍ତି ।
ଷିଆଳ ପକ୍ଷ ଯେ ନାଛ କରନ୍ତି ।୧୩୭।

ଜନକୁ କହନ୍ତି ମୃଗ ମାଶ୍ଚେଂଯ ।
ଗଜାମୃଗ କନ୍ଦ କରନ୍ତି ଗ୍ରାସ ।୧୩୮।

ରାବଣ ସୀତାକୁ ହରବା ପାଇଂ ।
ମାୟାମୃଗ ଗୋଟି ଦେଲା ପେଶାଇଂ ।୧୩୯।

ଅନ୍ତର୍ଯ୍ୟାମୀ ନାଥ ଜାଣିଲେ ତାହା ।
ମାୟାମୃଗ ଦେଖି କଲେ ସେନେହା ।୧୪୦।

ବାଣ ପ୍ରହାରଲେ ମାୟା ମୃଗକୁ ।
ମରଣ ଲଭିଲା ଗଡ ଭୁବକୁ ।୧୪୧।

ରାବଣ ସୀତାକୁ ହରଣ ନେଲା ।
ସୀତା ସକାଶୁଂ ଯେ ରାବଣ ମଲା ।୧୪୨।

ଦ୍ୱାପର ଯୁଗ ପରବେଶ କାଳ ।
କୃଷ୍ଣ ଜନମିଲେ ଗୋପ ମଣ୍ଡଳ ।୧୪୩।

କଂସର ପାଇଂ ଅବତାର ହୋଇଂ ।
ବକା ଅର୍ଘାସୁର ପୋତନା ସେହୁ ।୧୪୪।

କାଳୀ ଦାବାନଳ ଆରଷ୍ଟି ମାନ ।
ନ ଜାଣିଲେ ଲୀଳା ଗୋପଭୁବନ ।୧୪୫।

ଦଇବର ବଳୁଂ ଛେଦନ ହୋଇ ।
କୃଷ୍ଣ କଲେ ବୋଲି ନ ବୋଲେ କେହୁ ।୧୪୬।

କଳିଯୁଗ ପୀଡ଼ା ଅତ ପ୍ରବଳ ।
ଭକ୍ତଜନଙ୍କୁ ସେ ଦଅଇ ସ୍ଥଳ ।୧୪୭।

ଚଇତନ୍ୟ ନତ୍ୟାନନ୍ଦ ସଙ୍ଗରେ ।
ପ୍ରଭୁଙ୍କ ପାଶେ ଖଣ୍ଟୁ ନରନ୍ତରେ ।୧୪୮।

ଅନ୍ତର୍ଦ୍ଧାନ ହେଲେ ଗୋଲୋକନାଥ ।
ରାଧିକା ଭବରେ ଦେଇଣ ଚିତ୍ତ ।୧୪୯।
ଦାମ ସୁଦାମ ସୁବାହୁ ସୁବଳ ।
ଓଡ଼ିଶା ରାଜ୍ୟେ କଲେ ନାମଗୋଳ ।୧୫୦।
ଖୋଲ କରତାଳ ସିଙ୍ଗା ମୁରଲୀ ।
ଗୋଷ୍ଠ ନାନାରଙ୍ଗ ରଙ୍ଗରେ କେଳି ।୧୫୧।
ଓଡ଼ିଶା ରାଜ୍ୟରେ ନାମ ପ୍ରବଳ ।
ଭଗତର ଭାଗ୍ୟ ଶୂଦ୍ର ଉଧାର ।୧୫୨।
ଅଚ୍ୟୁତ ଗୋପାଳ ଭୁଲକୁ ଛାର ।
ନାମ ପଞ୍ଚାକ୍ଷର ଗୁପତ କର ।୧୫୩।
ପଞ୍ଚାଶ ଭ୍ରମଣ ସମାଧ ଧ୍ୟାନ ।
ସାଧନ କରି ନପାରିବେ ଜନ ।୧୫୪।
ରଙ୍ଗ ରହସ୍ୟକୁ କଳି ଭୁଲିବେ ।
ଓଡ଼ିଆ ବାଣୀ ସମସ୍ତେ ବୁଝିବେ ।୧୫୫।
ଶତଗୁଳଣ ଯେ ପଥ ଚିହ୍ନଣ ।
ଅନନ୍ତ ପଥ ଯେ ଗୁପତ ଜାଣ ।୧୫୬।
ଅନନ୍ତ ପଥ ହୋଇବାର ଯାଏ ।
ପ୍ରାଣୀଏ ଭୁଲି ମରିବେ ଯୋକାଏ ।୧୫୭।
ସାହାସ୍ର ପଢ଼ି ବୁଝି ନପାରିବେ ।
କହନ୍ତି କଥା ଧରି ନ ପାରିବେ ।୧୫୮।
ଶୂଦ୍ରର ପାଇଁ ଅକର୍ମ କରିବେ ।
କୃଷ୍ଣ ଭଗତର ପ୍ରମାଣ ନେବେ ।୧୫୯।
ବେଦର କଥା ଅଭାବ କରିବେ ।
ପର ଦରବକୁ ଲୋଭ କରିବେ ।୧୬୦।
ଯଜ୍ଞ ଆରମ୍ଭିବେ ନାମ ବିଚାରି ।
ଲୋକନାଥଠାରେ ଯଜ୍ଞ ଆଚରି ।୧୬୧।
ଗୁହ୍ୟ ପାରେଶ୍ୱର ସ୍ୱେଶ୍ୱ ବୋଲାଇ ।
ବ୍ରାହ୍ମଣେ ପଢ଼ି ନବୁଝିବେ କେହି ।୧୬୨।
ବ୍ରାହ୍ମଣେ ପଢ଼ି ନ ବୁଝିବେ ସେହି ।
ସକଳେ କହୁଛି ବଚନେ ଯାହା ।୧୬୩।

ଶୁଣ ରାମଚନ୍ଦ୍ର ଶିଷ୍ୟ ମୋହୋର ।
ତୃତୀୟ ପଟଳେ ରସ ବିଗ୍ରହ ।୧୬୪।

## ।। ତୃତୀୟ ପଟଳ ।।

ବିଷ୍ଣୁର ମାୟା ନ ଫେଡ଼ିବୁ ସ୍ନେହା ।
କଳରେ ଶ୍ରୀବିଷ୍ଣୁ କରିବେ ଯାହା ।୧।
ଶୂଦ୍ର କୁଳରେ ମୁଂ ଜନମ ବହି ।
ଦୀନ ଅଚ୍ୟୁତ ଯେ ନାମ ବୋଲାଇ ।୨।
ଶୁଣ ରାମଚନ୍ଦ୍ର ସୁମନ ଦେଇ ।
ରୁକ୍ମିଣୀ ପୁଅ ଯେ ବିନସ୍ତ ହୋଇଂ ।୩।
ରୁକ୍ମିଣୀ ବୋଇଲେ ଶୁଣ ଗୋସାଇଂ ।
ଚାରିଯୁଗ ବାଟ ଦେବା ବତାଇଂ ।୪।
ଶ୍ରୀହରି ବୋଇଲେ ଶୁଣ ସଙ୍ଗାତ ।
ଭଲ କଥାମାନ ପଚ୍ଛୁ ମିତ ।୫।
ଆଦ୍ୟପ୍ରାନ୍ତ କଥା ଦେବା ବତାଇ ।
କେତେ ଯୁଗେ କେତେ ପ୍ରମାଣ କହି ।୬।
ଦିବାହିଂ ଯେତେ ହେଂ ରାତ୍ରହିଂ ତେତେ ।
ବ୍ରହ୍ମ ଯାମିନୀ ଘୋଟଇ ନିରତେ ।୭।
ଛତ୍ତିଶ ନିଃଶ୍ୱାସରେ ମୁହୂର୍ତ୍ତେ କହିଂ ।
ଚାରି ମୁହୂର୍ତ୍ତେ ନତ୍ୟେ ନତ୍ୟ କହି ।୮।
ଚାରି ନତ୍ୟରେଟି ବିଶ୍ୱାସେ ଜାଣ ।
ଷୋଳ ବିଶ୍ୱାରେକ ଦଣ୍ଡେ ପ୍ରମାଣ ।୯।
ଏହି ବିଧିରେଟି ରାତ୍ର ଦିବସ ।
ଷାଠିଏ ଦଣ୍ଡରେ ଭୋଗ ପ୍ରକାଶ ।୧୦।
ତିରିଶି ଦିନରେ ଗଣିତା ମାସେ ।
ବାରମାସରେଟି ହେଲ ବରଷେ ।୧୧।
ସତ୍ୟଯୁଗ କେତେ କହିବା ସଙ୍ଖ ।
ସତର ଲକ୍ଷ ଅଠାଇଶି ସହସ୍ର ହିଂ ।୧୨।
କୋଡ଼ି କଳା ସେଟି ପ୍ରମାଣ ଜାଣ ।
ସତ୍ୟଯୁଗ ସାକ୍ଷୀ ଏତେ ପ୍ରମାଣ ।୧୩।

ତ୍ରେତୟା ଯୁଗରେ ଯେତେ ପ୍ରମାଣ ।
ବାରଲକ୍ଷ ଛୟାଣୋଇ ସତ୍ର ଜାଣ ।୧୪।
ବାରଲକ୍ଷ ଛୟାଣୋଇ ସତ୍ର ବର୍ଷ ।
ଏତେକରେ ସଖୀ ତ୍ରେତୟା ଶେଷ ।୧୫।
ରାମ ଅବତାର ହୋଇବ ମୁହିଂ ।
ରାବଣ ମାର ଉଶ୍ୱାସିବ ମହୀ ।୧୬।
ଦ୍ୱାପର ଯୁଗ ପ୍ରମାଣ କହିବା ।
ଚିତ୍ତନକ କର ବୁଝାଇ ଦେବା ।୧୭।
ଅ.ଠ ଲକ୍ଷ ଚୌଷଠୀ ସତ୍ର ବର୍ଷ ।
ଦ୍ୱାପର ଯୁଗଟି ଏତେକ ଶେଷ ।୧୮।
କଂସକୁ ମାର ଦେବଙ୍କୁ ରକ୍ଷିଲୁଂ ।
ଦ୍ୱାପର ଯୁଗେ ନାନାଖେଡ଼ କଲୁଂ ।୧୯।
କଳିଯୁଗ କେତେ ପ୍ରମାଣ ସହି ।
ଚୌଶଲକ୍ଷ ବତଶି ସତ୍ର ହୋଇଂ ।୨୦।
କଳି ଯୁଗରେ ଏତେକ ପ୍ରମାଣ ।
କୃଶଯୁଗରେଟି ଗଣ୍ଡାଏ ଜାଣ ।୨୧।
ଏହି ସହସ୍ର ବରଷ ଗଣ୍ଡାରେ ।
ଧାପକୁ ଦନେ ଶୁଣ ସଖୀ ଆରେ ।୨୨।
ରାଜହିଂ ସହସ୍ର ଗଣ୍ଡା ପ୍ରମାଣ ।
ରାତ ପାହିଲେ ବ୍ରହ୍ମା ଉଠେ ପୁଣ ।୨୩।
ନିଦ୍ରାରୁ ଉଠି ସଂସାର ସୃଜଇ ।
ରାତ ହୋଇଲେ ପୁଣିହିଂ ଶୁଅଇ ।୨୪।
ଶୁଣ ରାମଚନ୍ଦ୍ର ସୁମନ ହୋଇଂ ।
ପୁଣି ରୁକ୍ମଣୀ ପଚ୍ଛରେ ବନୋଇଂ ।୨୫।
କଉଂ ଯୁଗରେ କେମନ୍ତ ବଗୃର ।
ଶୁଣିମି କହିଦେବା ଚକ୍ରଧର ।୨୬।
ଶୁଣ ରୁକ୍ମଣୀ ମନଚତ୍ତ ଦେଇଂ ।
ସତ୍ୟଯୁଗ କଥା ଦେବା ବତାଇଂ ।୨୭।
ସତ୍ୟଯୁଗରେ ତପସ୍ୟା କରମ ।
ତ୍ରେତା ଯୁଗରେ ଯାଗଯଜ୍ଞ ଧର୍ମ ।୨୮।

ନାମକୁ ନ ଚହ୍ନି କଳରେ ପ୍ରାଣୀ ।
ନାନା କୁତର୍କେ ମାତବେ ମିତଣି ।୨୯।

ବହୁତ ଛଳ ଜ୍ପହାସ୍ୟ ମାନ ।
ସତକୁ ମିଛ କରବେ ଶୁଣିଣ ।୩୦।

ମାଛ ମାଉଂସ ଭୋଜନ କରବେ ।
ଦେଖୁଦେଖୁଂ ଯେ ଅଗତକ ଯିବେ ।୩୧।

ମୋହ ଭକ୍ତକୁ ନମାନମେ କେହୁ ।
ମୋ ଭକ୍ତେ ଥିବେ ଯେ ଦରିଦ୍ର ହୋଇଂ ।୩୨।

ଭକ୍ତ ପାଇବେ ବହୁତ କଷଣ ।
ମୋହ ଚନ୍ତାରେ ବଞ୍ଚିଥିବେ ଧନ ।୩୩।

କଳ କୁତର୍କେ ଯେ ପୀଡ଼ିତହୋଇ ।
ଗର୍ବି ହୋଇଣ ହୋଇଥିବେ ଦ୍ରୋହୀ ।୩୪।

ସତକଥାକୁ ଯେ ମିଛ କରବେ ।
ସତ କହନ୍ତେ କର୍ଣ୍ଣେ ନଶୁଣିବେ ।୩୫।

ମିଛକୁ ସତ ମଣିବେ କଳରେ ।
କଳିଯୁଗ ଷେଏ ଏହୁ ପ୍ରକାରେ ।୩୬।

ରୁକୁଣୀ ଦେବୀ ଯେ ପୁଣି ପଚ୍ଚିରେ ।
କଳିଯୁଗ ଭୋଗହେବ କପର ।୩୭।

ଚୃର ଲକ୍ଷ ବତଶ ସହ୍ର ବର୍ଷ ।
ଭୋଗ ନୋହିବ କହ ପୀତବାସ ।୩୮।

ଅଠାଇଶ ସହ୍ର ବର୍ଷ ପ୍ରମାଣ ।
ଆହୁରେ ପାପେ ତୁଟିବାକ ପୁଣ ।୩୯।

ଶୁଣ ରୁକୁଣୀ ମନଚିତ୍ତ ଦେଇ ।
କଳି କୃତ୍ୟ ତୋତେ ଦେବା ବୁଝାଇ ।୪୦।

ଏକୋଇଶ ଛଡ଼ ସତର ଯାଏ ।
ଭୋଗଯିବ କଳିଯୁଗ କଷ୍ଟସ୍ତେ ।୪୧।

ବସୁଧା ଭର ପାଇ ନ ସହିବ ।
ମୋତେ ଆଉଙ୍କେ ଯେ ସ୍ତୁତି କରବ ।୪୨।

ତେବେଟି କଳଙ୍କ ଗୁରୁ ହୋଇବୁ ।
ଏକାମ୍ରର ସ୍ଥାନେ ଗୃହ ବାନ୍ଧିବୁ ।୪୩।

ଗୋବିନ୍ଦ ବୋଇଲେ ଶୁଣ ମିତଣୀ ।
ଯୁଗ ନାମ ଯେ କଳିଯୁଗ ପୁଣି ।୪୪।
ଜଣେ ଜଣେ ମନ୍ତ୍ରଗରବ ବନ୍ଧ୍ୱଂ ।
ନ ମାନବେ ଗୁରୁ ଗରବ ହୋଇଂ ।୪୫।
ଧନ ଦେଖାଇ ଆଣ୍ଡ କରୁଥିବେ ।
ଶୁଣ ରୁକୁଣୀ ସେ ଅଗ ମରବେ ।୪୬।
କଳିଟି ଛଏ ମିଛ ପାପ ଅଂଶ ।
ମିଛ ଯିବ ପଞ୍ଚସସ୍ର ବରଷ ।୪୭।
ଗଙ୍ଗାରେ ଉଲଙ୍ଗ ସ୍ନାନ କରବେ ।
ଏ ଦୋଷ୍ଟୁଂ ଦଶସସ୍ର ଭୁଟିଯିବେ ।୪୮।
ବ୍ରହ୍ମ ସ୍ତିରି ହରଣେ ଯେତେ ଥାଇ ।
ତେଶ୍ରି ସହସ୍ର ଛଏ ହୁଅଇ ।୪୯।
ମିତ୍ରଦ୍ରୋହୀ ଗ୍ଭେଦ ସହସ୍ର ଜାଣ ।
ଅବଶ୍ବାସୀ ଙ୍କର ସସ୍ର ପ୍ରମାଣ ।୫୦।
ସ୍ତିରି ହତ୍ୟା ଦୋଷ୍ଟୁଂ ଭୁଟିବ ଏତେ ।
ବତଶ ସହସ୍ର ଜାଣ ପ୍ରତକ୍ଷେ ।୫୧।
ଗୋ-ଦଣ୍ଡାହାରୀ ଗୃଲଶି ସସ୍ର ଜନ ।
ସ୍ତିରିଚ୍ଛେଦ ଶତେ ସହସ୍ର ପୁଣ ।୫୨।
ଏକାଦଶ ସସ୍ର ଜନ୍ତୁ ବଧରେ ।
ଦ୍ୱାଦଶ ସହସ୍ର ମଚ ପ୍ରୀତରେ ।୫୩।
ବିଧବା କାମେନୀ ହରଣେ ସସ୍ର ।
ବାଇଶି ସହସ୍ର ମରଣ କହ ।୫୪।
ଗୋହତ୍ୟା ଦୋଷ ଯେ ଲକ୍ଷେ ବରଷ ।
ଏହି ରୂପେ କଳିଯୁଗର ଶେଷ ।୫୫।
ପର ଦାନ ଦେଲେ ନ ପାରୁ ସହ ।
ଚଉଦ ସହସ୍ର ବର୍ଷ ଭୁଞ୍ଜେ ।୫୬।
ଆୟୁ କ୍ଷୟରେ ଯୋକେ ଯିବେ ମାର ।
ପର ଅନ୍ନହାରୀ ସସ୍ର ପନ୍ଦର ।୫୭।
ତୁଳସୀ ଲଗାଇଂ ଜଲ ନ ଦେଲେ ।
ପାଞ୍ଚ ସସ୍ର ଛୟେ ଯାଇଟି ଭଲେ ।୫୮।

ଗ୍ୟାଂଢ ନବ୍ରଣ ଦ୍ୱୈସପ୍ତ ବରଷ ।
ଷସ୍ତ ହୋଇବେ କହିଲୁଂ ସନ୍ଦେଶ ।୫୯।
ବଷ୍ଟୁ ପ୍ରତମା ଅପୂଜ୍ୟ ହୋଇଂ ।
ଦଶ ସପ୍ତ ବର୍ଷ ଷଏ ଯାଇଂ ।୬୦।
ତ୍ରିଲକ୍ଷ ବତଶ ସପ୍ତ ବର୍ଷ ।
ଷସ୍ତ ଯାନ୍ତେ କଳି ହୋଇବ ଶେଷ ।୬୧।
କାଞ୍ଚନଗ୍ର ସିଂହଦ୍ୱାରେ ଗୋ ସଙ୍ଗ ।
ଯେ ସତ୍ୟ ଅନ୍ନ ପରଷିବୁ ସଙ୍ଗ ।୬୨।
ପୂର୍ବ ଦଗେ ସେ ଯେ ଭେଟଣ ଦନ ।
ମାଡ଼ିଣ ଆସିବ ସେ ବେନ ସ୍ତୁଣ ।୬୩।
ଭଗତ ଥିବେ ମ୍ଲେଚ୍ଛ ରୂପଧର ।
ଶୁଣ ରୁକ୍ମୁଣୀ ଚତୁର୍ଦ୍ଧିର କର ।୬୪।
ଅତ ଅଜାତ ନପାରିବୁଂ ସହି ।
ମୋର ଭକ୍ତ ଥିବେ ଗୁପତ ହୋଇ ।୬୫।
ପଞ୍ଚ ସଖାଙ୍କୁ ଆଜ୍ଞା ଦେବ ମୁହିଂ ।
ଜନମ ହୋଅ ଦାସ ଦେହ ବହିଂ ।୬୬।
ଦାସ ଦୀକ୍ଷାରେ ବଞ୍ଚୁ ଥିବେ ଦନ ।
ନୀଳ ପାସ୍ତେନ୍ଦ୍ରର ରୂପେ ପ୍ରମାଣ ।୬୭।
ସୁଷେଣକୁ ବଦ୍ୟାଧର କରବୁ ।
କାମ୍ଦେବକୁ ଶ୍ରେଷ୍ଠଗ୍ଏ କରବୁ ।୬୮।
ନୀଳକଣ୍ଠି ଶ୍ରୀଚନ୍ଦନ ନାମ ବହି ।
ହନୁମନ୍ତ ବ୍ରହ୍ମା ବଧାତା ହୋଇ ।୬୯।
ପଞ୍ଚ ସଖା ମୋର ଢଳକ ପେହି ।
ପଞ୍ଚ ଭୂତ ଆତ୍ମା ସ୍ୱେ ମୋର କହି ।୭୦।
ରୁକ୍ମଣୀ ବୋଇଲେ ଶୁଣ ଗୋସାଇଂ ।
କେମନ୍ତ ଖବେ ଭକ୍ତ ଥିବେ ରହିଂ ।୭୧।
କଳିଯୁଗରେ ଜନ୍ମିମେ କେମନ୍ତେ ।
ସଣସ୍କ ଫିଟାଇ କହିବା ମୋତେ ।୭୨।
ଜଗନ୍ନାଥଙ୍କର ରହସ୍ୟ ମନ ।
ଭଲ ପଚ୍ଚରିଲୁ ଗୁପତ ଧନ ।୭୩।

ଯେତେବେଳେ କଳି ହୋଇବ ଶେଷ ।
ପଞ୍ଚୁ ଗୋପାଳେ ଯେ ହେବେ ପ୍ରକାଶ ।୭୪।
ସୁଦାମ ସଖା ଯେ ସତ୍ୟଯୁଗରେ ।
ଜନମ ହେବ ଯେ ବ୍ରହ୍ମବର୍ତ୍ତରେ ।୭୫।
ତ୍ରେତୟାଯୁଗେ ତନ୍ନ ଜନ୍ମ ଜାଣ ।
ଦ୍ୱାପର ଯୁଗରେ ତନ୍ନ ଜନମ ।୭୬।
ଗୋପରେ ସ୍ୱରୂପାନନ୍ଦଟି ସେହୁ ।
କଳିରେ ଅଚ୍ୟୁତ ନାମଟି ବହୁ ।୭୭।
ସୁଦାମ ନାମଟି ତ୍ରେତ ଜନମେ ।
ଚୈତନ୍ୟ ବଳରାମ ତନ୍ନ ଜନମ ।୭୮।
ଚୈତ ଅଙ୍ଗ ପଞ୍ଚୁଆତ୍ମା ବହର ।
ଯୁଗେ ଯୁଗେ ମତ ସବୁ ବଦ୍ଭର ।୭୯।
ଗମ୍ଭୀର ଧୈର୍ଯ୍ୟ ଆଗତ ଜାଣ ।
ତାହାର ତହୁଂ ସକଳ ପ୍ରାମାଣ ।୮୦।
ମାୟା ଧରଣ ଥିବେଟି ଗୋପ୍ୟାନ ।
କଳିଯୁଗେ ନାମ କରିବେ ଗାନ ।୮୧।
କ୍ଷ୍ୟୋତ ଦଣ୍ଡୁଣ୍ଡ ଜାଳି ନିରନ୍ତରେ ।
ପରମ ଦୀକ୍ଷା ଜପି ଏକାନ୍ତରେ ।୮୨।
ସତେଣ ଯୁଥପତ ତାଙ୍କୁ ଗୃହ୍ନଂ ।
ଅନେକ କଷ୍ଟ ପାଉଥିବେ ସହ ।୮୩।
ଜଳ ପବନ କେ ଆହାର କରି ।
କେହୁ ଆହାର କେହୁ ନିଆହାର ।୮୪।
କେହୁ ଫଳ ମୂଳ ପତ୍ର ଭକ୍ଷିଣ ।
ହରି ଭାବରେ ବଞ୍ଚୁଥିବେ ଦିନ ।୮୫।
ସୁଦାମ ସଖା ଯେ ଯତ୍ନଂ ମନ୍ତ୍ରର ।
ତା ପେନ ଯତନେ ପାଇ ନିସ୍ତାର ।୮୬।
ଜନମ ହୋଇଣ ଗୁପତେ ଥିବ ।
ଭଣ୍ଡାରିଆ ବୋଲି ଧୁନ ଶୁଭିବ ।୮୭।
ସବୁ ଅଧିକାର ତାହାର ତହୁଂ ।
ତାହାର ଯେତେ ଗଣ ଥିବେ ରହୁ ।୮୮।

ସମସ୍ତରେ ଏକାକ୍ଷର ଭଜିବେ ।
ଯୋଗେ କଷ୍ଟରେ ଧନ ବାଞ୍ଛୁଥିବେ ।୮୯।
ଦୈତ୍ୟବ ବୋଲି ବାର ଯେ ନୋହିବ ।
ସେ ସର୍ବେ ଚହ୍ନି କରିଥିବେ ଠାବ ।୯୦।
ତାହାଙ୍କୁ ଅଉ ନଚହ୍ନିମେ କେହିଂ ।
ସୁଦାମ ସଙ୍ଗେ ଥିବେ ନିତ୍ୟେ ରହି ।୯୧।
କୁଞ୍ଚିତ କେଶ ବପୁଷ୍ଟ ଶରୀର ।
ବର୍ତ୍ତୁଳ ଭୁଜ କଟି ଭାଗ ସ୍ଥୂଳ ।୯୨।
ସଂସାରେ ଜାଣି ନ ଜାଣିମେ କେହି ।
ଗୁପତ ଭାବେ ଖେଳୁଥିବେ ରହି ।୯୩।
ଏକାଅକ୍ଷର ଯେ ପ୍ରଚ୍ଛିନ୍ନ କାଳେ ।
ତାହା ପ୍ରକାଶ ହେବ ତେତେବେଳେ ।୯୪।
ଶୁଣ ରୁକ୍ମଣୀ ମନଚିତ୍ତ ଦେଇ ।
ଗୁପତ ଖେଳ ନଚହ୍ନିଣ କେହି ।୯୫।
ସାବଧାନ ହୋଇ ଶୁଣ ମିତଣୀ ।
ସୁବାହୁ ସଖା ଜନ୍ମହେବେ ପୁଣି ।୯୬।
ତ୍ରିବେଣୀର ପୂର୍ବଭାଗେ ଖେଳଇ ।
ଅତି ଗୁପତେ ଥିବ ଦେହ ବହି ।୯୭।
କ୍ଷତ୍ରୀକୁଳରେ ହୋଇଥିବ ଜାତ ।
ବୈରାଗ୍ୟ ବେଶେ ଭ୍ରମେ ଅନୁବ୍ରତ ।୯୮।
ତିନି ଜନ୍ମରେ ଅଛି ଦେହ ବହିଂ ।
ସମସ୍ତ ଜାଣି ସେ ବାହାର ହୋଇ ।୯୯।
ବୃଦ୍ଧା ମନୁଷ୍ୟ ପ୍ରାଏକ ଦିଶଇଂ ।
ଅତ୍ୟନ୍ତ କୋମଳ ବଚନ କହିଂ ।୧୦୦।
ଲୋଚନେ ଅଞ୍ଜନ ଦେନାଲ ପ୍ରାୟେ ।
କ୍ଷିଣ ଶରୀର ଦିଶେ ଶୂନ୍ୟମଧ୍ୟେ ।୧୦୧।
ଅତି କଷ୍ଟରେ ସେ ବଞ୍ଚଇ ଦିନ ।
ଚଇତନକୁ ଆପଣେ ଯୋଗିଣ ।୧୦୨।
ସାଧବ ହେତୁ ମନ ପୂର୍ବେ ଦେଇ ।
ଲୋଚନେ ନିରତେ ଦେଖ ମାଧୋଇ ।୧୦୩।

ଚନ୍ଦ୍ରବ ଚନ୍ଦ୍ରି ସେ ଦେଖି ବାଉଳ ।
କହିଲୁଂ ସୁଦାମ ଜନମ ଫେଇ ।୧୦୪।
କଳଙ୍କି ରୂପକୁ ଧାସ୍ୟେ ନଦଳେ ।
ଏକାମ୍ରର ବନେ ବାହାଡ଼ା ମୂଳେ ।୧୦୫।
ବାହାଡ଼ା ବୃକ୍ଷ ମୂଳେ ପୁଣି ବାସ ।
ଗଉର ବର୍ଣ୍ଣ ବାହାର ମନୁଷ୍ୟ ।୧୦୬।
ମନଷ୍ୟ ଦେଖିଲେ ସେ ଯେ ଡରଇଂ ।
ହୃଦେ ନାମଧର ମୂର୍ତ୍ତି ଚଳଇ ।୧୦୭।
ନରତେ କେଶସ୍ତ ଭ୍ରମଣ କରେ ।
ଗତ ବାସନାକୁ ହୃଦରେ ଧରେ ।୧୦୮।
ତାରେକ ମନ୍ତ୍ରରେ କରେ ଭଜନ ।
ବେଦ ପଥରେ କରଇ ଭୋଜନ ।୧୦୯।
ସଦା ଅନନ୍ଦ ବ୍ୟଥା ନ ପେନଇଂ ।
ନରତେ ନୟନେ ନ୍ଧର ଦେଖଇ ।୧୧୦।
ଚୂଳଇ ଖରେ ଯେ ପାଦ ବାଜଇଂ ।
ଧୈର୍ଯ୍ୟ କଳସ ଯେ ହୃଦରେ ଥୋଇଂ ।୧୧୧।
ଦନୁଂ ଦନ ଦେହ କନ୍ଦର୍ପ ପ୍ରାସ୍ୟେ ।
ସଦା ଶ୍ରୀକୃଷ୍ଣ ମୂର୍ତ୍ତି ହୃଦେ ଧାସ୍ୟେ ।୧୧୨।
କଳଙ୍କୀ ରୂପ ଉଦେ ଯେତେବେଳେ ।
ତା' କଳା ଉଦେ ହେବ ତେତେବେଳେ ।୧୧୩।
କଳା ମାଧକୁ ନତ୍ୟରେ ରଖିଣ ।
ପ୍ରକାଶ ରୂପରେ ସସାରେ ଜନ୍ମ ।୧୧୪।
ଏବେ ଶୁଣ ସଖୀ ଦାସ ଜନମ ।
ଚଇତନ ଶିଶୁ ବୋଲି ସେ ଜାଣ ।୧୧୫।
ସତ୍ୟଯୁଗରେ ସେ ଜାଣ ଅଗସ୍ତି ।
ତ୍ରେତୟାରେ ସୁଗ୍ରୀବର ନୃପତି ।୧୧୬।
ଦ୍ୱାପର ଯୁଗରେ ଉଦ୍ଧବ ଜାଣ ।
କଳିଯୁଗରେ ଅନନ୍ତ ପ୍ରମାଣ ।୧୧୭।
ପଞ୍ଚ ସଖାରେ ସେ ଦାସଟି ଜାଣ ।
ଶୁଣ ରୁକ୍ମଣୀ ହୋଇ ସାବଧାନ ।୧୧୮।

ଦ୍ୱାଦଶ ସଙ୍ଖା ତା ହୃଦରେ ଆନ୍ତ ।
କଲଙ୍କୀ ରୂପକୁ ଧ୍ୟାନ କରନ୍ତ ।୧୧୯।

କୃଷ୍ଣ ପାଦୁକ ମୂର୍ତ୍ତିନ୍ୟାସ କର ।
ଜନାର୍ଦ୍ଦନ ରୂପ ସେ ଦେହ ବହ ।୧୨୦।

ଜନାର୍ଦ୍ଦନ ବୋଲି ନାମ ବିଖ୍ୟାତ ।
ବନସ୍ତେ ବୁଲଇଂ ବୈରାଗ୍ୟ ମତ ।୧୨୧।

ନୀଳହୃତ ବର୍ଣ୍ଣ ଶରୀର ତାହାର ।
ଶିରରେ ଜଟା କନ୍ଧେ ବାଘାମ୍ବର ।୧୨୨।

ଭୁବନ ମଣ୍ଡଳେ ବେହାର କଲା ।
ଭିକ୍ଷାମାଗି ଖାଇଂ ମ୍ଳେଛ ହୋଇଲା ।୧୨୩।

ମ୍ଳେଛମାନଙ୍କୁ ସେ ମାରବ ସେହୁ ।
ତାହାର ଘାତେ ନ ବର୍ତ୍ତିବେ କେହୁ ।୧୨୪।

ଅଙ୍ଗୁଷ୍ଠିମାନ ସାନ ସାନ ଜାଣ ।
ଶରୀର ଦଶଇ ଅଟହିଂ ଖିନ୍ନ ।୧୨୫।

ଶଙ୍ଖ ପ୍ରାୟେ ଜାଣ କର ଦଶଇଂ ।
ନିରବଧି ହରି ନାମ ଜପଇ ।୧୨୬।

ଅତି କଷ୍ଟରେ ସେ ବଞ୍ଚଇ ଦିନ ।
କ୍ଷଣ କ୍ଷଣକେ କରଇ ରୋଦନ ।୧୨୭।

ଅଖଣ୍ଡ ଚେତା ଅମୃତ ଆହାର ।
ପ୍ରସନ୍ନ ମୁଖ କହେ ମୃଦୁ କର ।୧୨୮।

ତାହାଙ୍କ ଶିଷ୍ୟମାନେ ଜନ୍ମ ପୁଣି ।
ଖେଡ଼ କରବ ତାଙ୍କୁ ସଙ୍ଗେ ଦେନି ।୧୨୯।

ଧନୁକୁ ଧନ ଯେ ତନୁ ବଢ଼ିବ ।
ପ୍ରଘଟ ନୋହି ଗୁପତରେ ଥିବ ।୧୩୦।

ବେଲ ବୃକ୍ଷ ମୂଳେ କରେ ଆସନ ।
ମାଧବୀଲତା ବେଢିଚ ସଘନ ।୧୩୧।

ପ୍ରାନ୍ତ ସମସ୍ତ ମଧ୍ୟାହ୍ନ ତ୍ରିକାଳ ।
ଆସନ କରଇ ବୃକ୍ଷର ମୂଳ ।୧୩୨।

ପ୍ରହରେ ତର୍ପଣ ସନ୍ଧ୍ୟା ସେ କର ।
ଜଶିରେ ଗମେ ସେ ଉଦସ୍ପୃବିର ।୧୩୩।

ତା'ହାକୁ ଭେଟିବ ଯେବଣ ମତେ ।
ଶୁଣ ଗୋ ପ୍ରିୟେ କହୁଅଛୁ ତୋତେ ।୧୩୪।

କୃଷ୍ଣପକ୍ଷ ଯେ ସପତମୀ ଦିନ ।
ଦକ୍ଷିଣ ମୁଖେ କରିବ ଗମନ ।୧୩୫।

ବାଣପଣ କୃଷ୍ଣ ତା ମୁଣ୍ଡ ଚିହ୍ନ ।
ଅଞ୍ଜନ କରି ଯେ ନୟନେ ଦେନ ।୧୩୬।

ପାଦୁକମନ୍ତ୍ର ହୃଦେ ଜପୁଥିବ ।
ଏକାକରି ଉଙ୍କାର ଯେ ଚଳିବ ।୧୩୭।

ସଙ୍ଗତେ କେହୁ ଯେ ଜଣେ ନଥିବ ।
ନିଗମ କାଳଟି ସେହୁ ଦେଖିବ ।୧୩୮।

ନଣାକାଦଳ ଯେସି ଭ୍ରମରି ପୁଣି ।
ଦ୍ରଶନେ ଝଣ୍ଡିର ବିପତ୍ତି ପୁଣି ।୧୩୯।

କଲଙ୍କି ରୂପକୁ ଅଛୁ ଅନାଇଂ ।
କ୍ଷଣ ମାନଙ୍କୁ ସଂହାରିବ ସେହୁ ।୧୪୦।

ଯାହା ପଚ୍ଛରିଲୁ ଶୁଣ ରୁକ୍ମଣୀ ।
କହୁଅଛୁ ଶୁଣ ମୋ ଭକ୍ତ ବାଣୀ ।୧୪୧।

ଶ୍ରୀବତ୍ସ ସଖା ଜନମ କହିବା ।
ଠିକଠିକ କରି ବୁଝାଇ ଦେବା ।୧୪୨।

ଗୁପତ ଭାବେ ଶ୍ରୀବତ୍ସ ଜନମ ।
ଦେହଧରି ସେ ବୈଷ୍ଣବ ରୂପେଣ ।୧୪୩।

ବ୍ରାହ୍ମଣ କୁଳେ ଜନମ ହୋଇବ ।
ମୁକୁନ୍ଦ ଦାସ ନାମ ବହିଥିବ ।୧୪୪।

ଯେ ପୂର୍ଣ୍ଣଗିରି ସେ କାଣ ଉତ୍ତରେ ।
ଶିଆଳିଲତା ପଲ୍ଲିଶ ବନରେ ।୧୪୫।

ନୀଳ ରୂପ ତାର ଅଟଇ ସ୍ପଷ୍ଟ ।
ଅଣ ଅକ୍ଷର ଭଜନେ ଅବଷ୍ଟ ।୧୪୬।

ପୂଜାବିଧି ଜାଣି ପଞ୍ଜିକା ଦେବ ।
ଝଣ୍ଡଗିରିରେ ସେ ଗୁପତେ ଥିବ ।୧୪୭।

ଅବେଭ୍ରର କାଳେ ଏମାନେ ଯାହା ।
କଳି କଲ୍ମଷ ତାରଣକୁ ନାହା ।୧୪୮।

କୃଷ୍ଣୀ ଆଗରେ ଅଛୁ ନବ ଗଛୁ ।
ସହସ୍ରେ ଅହ୍ନ ଗର୍ଜନ ଶୁଭୁଛୁ ।୧୪୯।
ଭୋଜନ କରଇ ବେଳ ପଡର ।
ଗୀତ-ଗୋବିନ୍ଦ ଗାଏ ନିରନ୍ତର ।୧୫୦।
ବାରୁଣୀ ରସ ଉଲ୍ଲାସ କରଇ ।
ବର୍ତ୍ତୁଳ ତନୁ ବାଙ୍ଗର ଦଶଇଂ ।୧୫୧।
ନିଶି ଗମନ୍ତ ଅଟାଇଣି ପୁର ।
ବ୍ରଜାନନ୍ଦ ସଙ୍ଗେ ବନ୍ଧୁ ବିଗ୍ରହ ।୧୫୨।
ସେଠାରୁ ପୁଣି ନୀଳଗିର ଯାଇଂ ।
ବଟ ମଙ୍ଗଳାଙ୍କ ସନ୍ନିଧ୍ୟେ ଥାଇ ।୧୫୩।
ଦ୍ୱାଦଶ ଉଠି ନିଜସ୍ଥାନ ଯାଇଂ ।
କୋଇଲି ବୈକୁଣ୍ଠ ଭ୍ରମଣ ପାଇଁ ।୧୫୪।
ଦୁଆର ଦାସୀ ଯେତେ ଜଗିଥିବେ ।
ବାରଣ ପବନ ପୁତ ରଖିବେ ।୧୫୫।
ଶ୍ରୀବତ୍ସ କେଶରୀ ରୂପ ସମ୍ଭୂତ ।
ଗୁପତ ସନ୍ଦେଶ କହିଲୁ ମିତ ।୧୫୬।
ପଞ୍ଚ ସଖାରେ ଅଙ୍ଗ ସାର ଏହି ।
ଆମ୍ଭେ ବାହାର ହେବୁଂ ଦେହ ବହି ।୧୫୭।
ଛନ ଟେକାଇବୁ କେଶରୀ ଶିର ।
ଅଣଦରଶରେ ଲଗିବ ଗୋଳ ।୧୫୮।
ଏମନ୍ତେ ଲୀଳା ଭିଆଇବୁ ସଖୀ ।
ଚନ୍ଦ୍ରିମେ ଶୁଣିମେ ବୁଝିବେ ନାହିଂ ।୧୫୯।
କଳି କୃତ୍ୟରେ ମତ୍ତ ଖେଳ ଥିବେ ।
କହିଲି କଥା ପ୍ରତେ ନ କରିବେ ।୧୬୦।
ଶୁଣ ରାମଚନ୍ଦ୍ର ସୁମନ ଦେଇ ।
ନିତ୍ୟାଛନରେ ଶୁଣୁଅଛୁ ମୁହିଂ ।୧୬୧।
ରୁକ୍ମିଣୀ ଆଗରେ ଏହା କହନ୍ତେ ।
ସାକ୍ଷାନ୍ତେ ଶୁଣିଅଛୁ କର୍ଣ୍ଣ ପଥେ ।୧୬୨।
ସେସାର ଲୀଳା ଜାଣିମା ନିମନ୍ତେ ।
ତେଣୁ ରାମଚନ୍ଦ୍ର କହୁଛୁ ତୋତେ ।୧୬୩।

ପଞ୍ଚସଖାଙ୍କର ମନେ ବସ୍ତୁର ।
ତୃତୀୟ ପଟଳ ଚନ୍ଦ୍ର କପର ।୧୬୪।
ଦୀନ ଅଚ୍ୟୁତ ଯେ ନତ୍ୟରେ ଥିଲ ।
ଶ୍ରୀମୁଖୁଂ ଶୁଣିଣ ଏହା ଲେଖିଲ ।୧୬୫।

## ॥ ଚତୁର୍ଥ ପଟଳ ॥

ରାମଚନ୍ଦ୍ର ଶିଷ୍ୟ ପ୍ରବୋଧ ଶୁଣି ।
ପୁଣି ପଚ୍ଛରେ ଯୋଡ଼ି ବେନି ପାଣି ।୧।
ତୁମ୍ଭ ଜନମ ଶୁଣିଲି ଗୋସାଇଂ ।
ଆଉ ଭକ୍ତମାନେ ଜନମ କାହିଂ ।୨।
ପଞ୍ଚସଖାଙ୍କ ଜନ୍ମ କାହିଂ ପୁଣ ।
ଶ୍ରୀଗୁରୁ ମୋତେ କହିବା ଫେଡ଼ିଣ ।୩।
ଶୁଣ ରାମଚନ୍ଦ୍ର ତୁହେତୁ ଦେଇ ।
ରୁକ୍ମିଣୀ ଦେବୀ ପୁଣି ପଚ୍ଛରଇ ।୪।
ସେ ପ୍ରଭୁ କଥାଏ ପଡ଼ିଲ ମନେ ।
କାହିଂ ଜନମିଲେ ଭଗତମାନେ ।୫।
ଶୁଣ ରୁକ୍ମିଣୀ ମନଚିତ୍ତ ଦେଇ ।
ଭକ୍ତଙ୍କୁ ଯେମନ ଖେଳିବୁଂ ସହି ।୬।
ଅଳକା ଭୁବନ କୁଣ୍ଡୀ ନଗରୀ ।
ଗୋଷ୍ଠ କୂଳେ ଗୋପ୍ୟ କୋଠି କରି ।୭।
ପଶ୍ଚିମ ଭାଗରେ ଅଛଇଂ ରହି ।
ଧର୍ମ୍ମ ଚିତର ପ୍ରାପ୍ତେ ନତ୍ୟେ ଭ୍ରମଇଂ ।୮।
ନାମ ତାହାର ଯେ ମଧୁସୂଦନ ।
ବେନି ଗୋଷ୍ଠି କରେ କରେ ଭୋଜନ ।୯।
ସାନନ୍ଦେ ନତ୍ୟେ କରେ ହରିଧୁନି ।
ନିଶାରେ ନତ୍ୟେ ଭ୍ରମଇ ମେଦିନୀ ।୧୦।
ଭସ୍ମାଙ୍କାର ମୂର୍ତ୍ତି ଧରି ଭ୍ରମଇଂ ।
ବଡ଼ ବିକଟ ସେ ଅଟଇ ଦେହୀ ।୧୧।
ଲୀଳାକୁ ଅନୁସରି ଅଛୁ ମୂହିଂ ।
ଅନେକ ବଳ ନାଶିବାକ ସେହି ।୧୨।

ତାକଦ୍ୱାରରେ ଦାନବ ନାଶିବେ ।
ଯେ ମୁଖେ ପଡ଼ିବେ ବିନାଶ ହେବେ ।୧୩।

ଅତ ମ୍ଲେଚ୍ଛ ତନୁ ଅଛଇଂ ହୋଇଂ ।
ଗୁପତେ ଖେଳନ୍ତ ଉଛନ୍ନ ହୋଇଂ ।୧୪।

ତାହା ନିକଟେ ଏକ ରଥ ଅଛୁ ।
ନବ ଗଛ ମୂଳେ ଭ୍ରୁପ୍ତି କରୁଛୁ ।୧୫।

ପାଞ୍ଚଗୋଟି ଲେଖ କପୋଳେ ଯେଣ ।
କଥା ନ କହଇ ହୋଇଂ ମଉନ ।୧୬।

ରକ୍ତବର୍ଣ୍ଣ ଫୁଟି ଦିଶଇ ଦେହ ।
ନୟନକୁ ଟେକ ଗୃହୁଂଣ ଥାଇଂ ।୧୭।

ଶିରେ ନବଗୋଟି ପଣ ଦେଇଣ ।
ନଗ୍ରେ ବୁଲଇଂ ବୈରାଗ୍ୟ ବେଶେଣ ।୧୮।

ଦେହରେ ବୋଲଇ ଧୂବ ପାଉଂଶ ।
ଦେହ ଲିପି କରେ ଜ୍ୟୋତ ପ୍ରକାଶ ।୧୯।

ଶ୍ୱେତସ୍ତା ଯୁଗରେ କୃଷ୍ଣ ନାମ ଥିଲା ।
ଯାଦବ ନାମ କଳରେ ହୋଇଲା ।୨୦।

ଧ୍ୱଜ ବଳୀରେ ଜାତ ହୋଇଅଛୁ ।
ଦାନେବ ବଳ ପକାଇବ ମଛି ।୨୧।

ଯାଦବ ଘାତରେ ମହୀ କମ୍ପିବ ।
ଆରେ ଆରେ ବୋଲି ରଡ଼ିଏ ଦେବ ।୨୨।

ତା ରଡ଼ି ଶୁଣି ମନୁଷ୍ୟ ମରିବେ ।
ପଞ୍ଚସଖାଏ ଉଣ୍ଟାପି ରଖିବେ ।୨୩।

ପଛ ଦୁଷ୍ଟବେ ବେଳକାଳ ଜାଣି ।
ବାଇ ବୋଲି କର ମାରନ୍ତ ପୁଣି ।୨୪।

ଦନ ବଞ୍ଚୁଥାନ୍ତ ଅତ କଷ୍ଟରେ ।
ସାତ ଦିବସରେ ମଣୋହୁଂ କରେ ।୨୫।

ଶ୍ୱେତସ୍ତା ଯୁଗେ ବୃନ୍ଦାବନ ତା ନାମ ।
ଦୀନବନ୍ଧୁ ନାମ କଳି ଯୁଗେଣ ।୨୬।

ମୃତ୍ୟୁ ସଞ୍ଜିବନୀ ମନ୍ତ୍ର ଜପଇଂ ।
ମନୁଷ୍ୟ ଦେଖିଲେ ଓଷ୍ଠ କମ୍ପାଇଂ ।୨୭।

ରଥରେ ଅଛୁ ହନୁମନ୍ତ ଠାରେ ।
ବାପସ୍ୱରୂପ ଧରଛୁ ନର୍ଭରେ ।୨୮।
ତ୍ରେତୟା ଯୁଗରେ ତାହାର ନାମ ।
ଯୂଥପତଙ୍କ ମଧ୍ୟରେ ପବନ ।୨୯।
ଏମନ୍ତେ କଳରେ ହୋଇଛୁ ଜନ୍ମ ।
ଭଗବାନ ନାମ ଗୋଟି ବହଣ ।୩୦।
ସନ୍ଧ୍ୟାକାଳରେ ନିଜ ରୂପ ଧରେ ।
ଗମନ କରଇ ଶ୍ରୀବନଶରେ ।୩୧।
ରାତ୍ରରେ ଲିଙ୍ଗ ଦରଶନ କରେ ।
ଯାଇଁଣ ପ୍ରବେଶ ନୃପତଠାରେ ।୩୨।
ରାଜାଙ୍କୁ ଯେ ନାମ ବଚନ କହି ।
ଲେଉଟି ନିଜ ଆସନେ ବସଇଂ ।୩୩।
ଏକାକ୍ଷର ମନ୍ତ୍ର ଜପଇ ନିତ୍ୟ ।
ଗୁପତ ଭାବେ ଯେ ନିତ୍ୟେ ଦେଖିଲୁ ।୩୪।
ତାହାଙ୍କୁ ଭେଟ ପାଇବା କେମନେ ।
ଭେଟ ପାଇଅଛୁ କୃଷ୍ଣସ୍ୱା ଦନେ ।୩୫।
ଶ୍ରୀରାମ ବୃକ୍ଷରୁ ପଣ ଗୋଟିଏ ।
ଶତା ନେଇଲେ ସେହୁ ଦେଖାଦେବ ।୩୬।
ନୟନେ କଜ୍ଜଳ ରେଖା ଯେ ଶୋହେ ।
କପୋଳେ ସିନ୍ଦୂର ଶିଖା ଲେଖଏ ।୩୭।
ଦନ୍ତ ତାକାମୃ ବୀଜ ପ୍ରାସ୍ତେ ଜାଣ ।
ବାହାର ଦାନ୍ତ ଗୋଟିଏକ ପୁଣ ।୩୮।
ଗଜର ବର୍ଣ୍ଣ ଦଶଇ ଶରୀର ।
ସେ ଘୋର ଯୁଦ୍ଧ କରବ ଅପାର । ୩୯ ।
ଦାନବ ବଳକୁ ମର୍ଦ୍ଦିବ ସେହୁ ।
ତାହାର ଘାତେ ନ ବର୍ତ୍ତିବେ ଆଉ ।୪୦।
ଶୁଣ ରୁକ୍ମିଣୀ ସ୍ଥିର ଚିତ୍ତ ହୋଇ ।
ଗୁପତ ଖେଳ ନ ଜାଣନ୍ତ କେହି ।୪୧।
ଚନ୍ଦ୍ରେଶ୍ୱରଙ୍କଠାରେ ଶୁଚକାଇ ।
ଛଡ଼ ରଥ ଛନ୍ତ ସେଠାରେ ରହି ।୪୨।

ଚନ୍ଦେଶ୍ୱରଙ୍କଠାରେ ବଟେ ଅଛୁ ।
ବେଲଗଛ ତହୁଂ ନିକଟେ ଅଛୁ ।୪୩।
ସେ ବନେ ସେହୁ ସେ ଅଛଇଂ ରହି ।
ରାମଚନ୍ଦ୍ର ବୋଲି ନାମ ତା କହି ।୪୪।
ସେ ଦାସ ମୋହୋର ବଡ଼ ବିଶ୍ୱାସ ।
କଳଙ୍କୀ ରୂପକୁ କରିଛୁ ଆଣ ।୪୫।
ତ୍ରେତୟା ଯୁଗେ କେଶରୀ ଏ ସେହୁ ।
ରାମଚନ୍ଦ୍ର ନାମ କଳିରେ ବହୁଂ ।୪୬।
ଚନ୍ଦେଶ୍ୱରଙ୍କୁ କରେ ଦରଶନ ।
ବୈରାଗ୍ୟ ବେଶେ ବୁଲେ ଅନୁକ୍ଷଣ ।୪୭।
ସାତ ପାଞ୍ଚ ଘରେ ଭିକ୍ଷା କରଇ ।
ରନ୍ଧନକରି ଆହାର କରଇଂ ।୪୮।
କୃଷ୍ଣ ବର୍ଣ୍ଣ ଅଟେ ଶରୀର ତାର ।
ନିତ୍ୟେ ଶ୍ରୀକୃଷ୍ଣ ଭଜେ ହୃଦୟର ।୪୯।
ଆନ କଥାମାନ ନ ଶୁଣେ କିଛୁ ।
ରାଧାକୃଷ୍ଣ ଭାବେ ସେ ବୁଡ଼ିଅଛୁ ।୫୦।
ପାହାଡ଼ା ବଣ ତହୁଂକ ଲଟିଛି ।
ସେ ସ୍ଥାନେ ଅଛଇ ଜଣେ ଗୋବଛୁ ।୫୧।
ସେ ସ୍ଥାନେ ଅଛଇ ଜଣେ ଗୋପାଳ ।
ରାମଚନ୍ଦ୍ର ସଙ୍ଗେ କରଇ ଖେଳ ।୫୨।
ଶିରରେ ଝଳକେ ମୟୂରଚୋପ ।
ପ୍ରାଣୀଙ୍କ ଅଦୃଶ୍ୟେ ଲୁଚିଛି ରୂପ ।୫୩।
ନାମଇଂ ପୁଣ୍ଡରୀକ ତାହାଙ୍କର ।
ପ୍ରଭୁ ତେଜକୁ ଅଟେ ଅନୁସାର ।୫୪।
ସତ୍ୟଯୁଗରେ ସତ୍ୟାନନ୍ଦ ଜାଣ ।
ତ୍ରେତୟାଯୁଗେ କହିବା ତା ନାମ ।୫୫।
ସତ୍ୟବନ୍ତ ନାମ ତ୍ରେତୟା ଯୁଗେ ।
ଭଗବନ୍ତ ନାମ ଦ୍ୱାପର ଯୁଗେ ।୫୬।
କଳିଯୁଗରେ ଉଦନ ଜନ୍ମ ଜାଣ ।
ଏବେ ପୁଣ୍ଡରୀକ ବୋଲିଣ ପୁଣ ।୫୭।

କେହୁ ତାହାର ମାୟା ନଜାଣନ୍ତି ।
କ୍ଷଣ କ୍ଷଣକେ ଧରେ ଆନ ମୂର୍ତ୍ତି ।୫୮।
ଦିବସେ ବନେ ପଣ୍ଡିତ ନୁହଇଂ ।
ସର୍ପ ପ୍ରାଏକ ସେ ବନେ ଗର୍ଜଇ ।୫୯।
ଅନେକ ବୃକ୍ଷ ଯେ ତାହାଙ୍କ ଜାଣ ।
ଅନେକ ଛନ୍ଦୀ ପାର୍ଥିବ ହୃଷ୍ଟେଣ ।୬୦।
କୋଠାର ଗୋଟାଏ ଅଛୁ ତାଙ୍କର ।
ଚନ୍ଦ ପ୍ରାସ୍ତେକ ବୁଲଇଂ ନର୍ଭର ।୬୧।
କାମୁଡ଼ାଲ ଗିରେ ଯୋଗିଣ ଥାଇଂ ।
ତା ଡାକରେ ଚଣ୍ଡକାଳୀ ଗୋଡ଼ାଇଂ ।୬୨।
କଦମ୍ବ ଗଛ ତହିଂ ପ୍ରାନ୍ତେ ଥାଇ ।
କଦମ୍ବ ଅଗରେ ତୁଳସୀ ରହି ।୬୩।
ସେଠାବ ମହିଂମା କେହୁ କହିବ ।
ଅସ୍ଥାନ କଣ୍ଠରୁ ଜଗେ ସେ ଠାବ ।୬୪।
ହିତବାଚ ନାମ ସତ୍ୟଯୁଗରେ ।
କୁଣ କେତୁ ଯେ ନାମ ତ୍ରେତୟାରେ ।୬୫।
ଦ୍ୱାପର ଯୁଗେ କର୍ଣ୍ଣିଣୀ ତା ନାମ ।
କଳରେ ନହେଲଣି ସ୍ମୃତ ଜନମ ।୬୬।
ଦେହ ବନ୍ଧୁଅଛୁ ନାମ ଦନାଇ ।
ଫଳମୂଳ ତୁଳେ ପଚର ଖାଇ ।୬୭।
ଶୁକ୍ଳପକ୍ଷ ଟଥ ଅଷ୍ଟମୀ ଦିନ ।
ଘଣ୍ଟରୁ ଉଠି କରଇ ସ୍ନାହ୍ନାନ ।୬୮।
ଅଙ୍ଗରେ ପଞ୍ଚ ଚତା ଯେ ଧେନଇଂ ।
ସାମ ତାରକ ଭଜନ କରଇ ।୬୯।
ତେର ଅକ୍ଷଉଣି ହଙ୍ଗେ ଯୁଝିବ ।
ବିଦ୍ୟାଧର ମନ୍ତ୍ରୀ ଅସି ଭେଟିବ ।୭୦।
ହାଥରେ ଶାଢ଼ୀ ବାନ୍ଧବୁ ରେ ସଙ୍ଖ ।
ରମ୍ୟେକ ଦ୍ୱୀପରେ ଥିବଇଂ ମୁହିଂ ।୭୧।
ତା ପ୍ରଭା ଦେଖି କେଣସ୍ଥ ହରଷ ।
ତା ସଙ୍ଗେ ଥାଅଇ ଜଣେକ ଦାସ ।୭୨।

ଅତ କ୍ଷୀନ ତାର ଅଟଇ ଦେହଂ ।
ନୟନରୁ ତାର ଅଶ୍ରୁ ଗଳଇ ।୭୩।

ନାମ ତାହାର ବନମାଳୀ ଜାଣ ।
କଥା ନକହି ଥାଅଇଂ ମଉନ ।୭୪।

ଅଖଣ୍ଡ ବିଭୂତ ଶିରରେ ମୋହଂ ।
ପଦ୍ମମାଳା ଏକ ପେନ୍ଧଣ ଆଇଂ ।୭୫।

ସୁବଳ ସଖା ଯେ ସେହୁ ସେନବ ।
ତା ଝଣ୍ଡେ ଦୂରେ ଲୋକନାଥ ଥିବ ।୭୬।

ସେ ଦୁହେଂ ନତ୍ୟ ଚହ୍ଲାଚହ୍ଲି ହୋନ୍ତ ।
ଅନେକ ଧର୍ମ ଗତ ବିସ୍ତରନ୍ତ ।୭୭।

ସନ୍ୟାସ ବେଶ ଶିରେ ଜଟା ବନ୍ଧଂ ।
ପଞ୍ଚକ୍ରୋଶରେ ସେ ନତ୍ୟେ ଭ୍ରମଇଂ ।୭୮।

ଏବେ ନେମାଳ ବଟ ସନ୍ନିଧିରେ ।
ଚତୁର୍ଦ୍ଦିଗ ଭୂମି ରହେ ସେଠାରେ ।୭୯।

କେହ୍ନଂଣି ନଗ୍ରେ ନ ରହେଣ୍ଟି ସେହ ।
ଲୋକ ଦେଖିଲେ ଅନ୍ନ ନ ଭୁଞ୍ଜଇ ।୮୦।

ଲଟାବଟ ଗୋଷ୍ଟି ସେଠାରେ ଅଛୁ ।
ଦଗ ଭ୍ରମଇଂ ତହ୍ନଂ ଅଛୁ ଲୁଚ ।୮୧।

ବୃତକାଇ ଯେ ଉତ୍ତର ଦଗରେ ।
ଏମନ୍ତେ ରୁକୁଣୀ ଅଛୁ ସେଠାରେ ।୮୨।

ବନସ୍ତେ ଦବା ରଜନୀ ବୁଲଇଂ ।
ଚକ୍ରଧର ତାର ନାମ ଅଟଇଂ ।୮୩।

ସୁଦାମଙ୍କ ବଡ଼ ପୀରତ ସେହ୍ନ ।
କଳଙ୍କି ରୂପକୁ ଅଛଇ ଧ୍ୟହ୍ନଂ ।୮୪।

ଶୁଣ ରୁକୁଣୀ ପାରେଶ୍ୱରଠାରେ ।
ଅନୁକ୍ଷଣେ ଅଛୁ ଦୃଷ୍ଟି ଅଗ୍ରରେ ।୮୫।

ବଳରାମ ବୋଲି ନାମ ତାହାର ।
ଯୋଡ଼ ଦଣ୍ଡ ଜାଲେ ନିରନ୍ତର ।୮୬।

କୂର୍ମ୍ମେକ ଭାବେ ସେ ଅଛଇଂ ରହ୍ନଂ ।
ଚନ୍ଦ୍ର ସୂର୍ଯ୍ୟରେ ସେ ନତ୍ୟେ ଖେଳଇଂ ।୮୭।

ଶୃଙ୍ଗାର ଝଟକେ ଡମ୍ବା ପଗ୍‌ଏ ।
କଳଙ୍କି ରୂପକୁ କରନ୍ତୁ ଧ୍ୟାଏ ।୮୮।

ବେଣ୍ଟପୁର ବୋଲି ଶାସନ ନାମ ।
ସେଠାବେ ଅଛଇ ସେବକ ଗୋପ୍ୟାନ ।୮୯।

ପ୍ରାଚୀ ଉତ୍ତର ବସନ୍ତ ନଗରେ ।
ଅଠାଇଶପୁର ବଟ ମଧ୍ୟରେ ।୯୦।

ସାଲୁଙ୍କା ସେଠାବେ ଗୁପତେ ଅଛୁ ।
ଆଗତାନାଗତ ସବୁ କହୁଛୁ ।୯୧।

କପିଳାସଗିଣ ଉତ୍ତର ଭାଗେ ।
ଗୁପତେ ଅଛଇଂ ଜଣେ ସେଠାବେ ।୯୨।

ତାହାର କଥା ଅତ ଅଚୁମ୍ବିତ ।
ଅନେକ ଦୁଷ୍ଟ ସେ କରିବ ହତ ।୯୩।

ଗୋପାଳ କୁଳେ ସେ ହୋଇଛି ଜନ୍ମ ।
ନିଜ କଳାକୁ କରନ୍ତୁ ଗୋପ୍ୟାନ ।୯୪।

ତାହାର ମାୟା ନ ଜାଣନ୍ତି କେହ୍ନ ।
ସଂସାର ଭାବେଣ ଭ୍ରମୁଣ ଥାଇଂ ।୯୫।

କଟକ ପଶ୍ଚିମ ଭାଗର ସ୍ଥାନେ ।
ଅନନ୍ତ ଅଛୁ ଜଗି ସେହୁ ସ୍ଥାନେ ।୯୬।

ରସତ୍ୱାଜ ପୁରେ ବଣିକେସନ ।
ଗୁପତେ ଅଛୁ ନଜାଣନ୍ତି ଆନ ।୯୭।

ଶ୍ରୀମୁଖ ବଚନ ଅଗ୍ୟାଂ ମୋ ଏହ୍ନ ।
ଯୋକେ ଉପହାସ୍ୟ କରିବେ ସହ୍ନ ।୯୮।

ସତ୍ୟ ବଚନ ଏହା ନ ମାନମେ ।
ଦୁର୍ଗା ମୁଣ୍ଡରେ ସେମାନେ ପଡ଼ିବେ ।୯୯।

ଅକାଳ ମରଣ ହୋଇବ ତାଙ୍କୁ ।
ଶୁଣ ରୁକ୍ମଣୀ କହିଲୁଂ ତୁମ୍ଭଙ୍କୁ ।୧୦୦।

କରଣି କର ଠୁଣ୍ଡକାରେ ଥିବେ ।
ମୁଂକାର ବନ୍ଧଣ ବନାଶ ହେବେ ।୧୦୧।

ଗୁପତ ଝେଲ ଯେ ଏହ୍ନ ମୋହୋର ।
ଗୁପତେ ଭକ୍ତ ନାନା ଅବତାର ।୧୦୨।

ଦାରୁ ସ୍ୱରୂପ ଯେବେ ମିଛ ହେବ ।
ଏ ବଚନ ତେବେ ଅନ୍ୟଥା ହେବ ।୧୦୩।
ପୁରୁଷୋତ୍ତମ ଯେବେ ମିଛ ହେବ ।
ଏ ଆଗ୍ୟା ରେ ସଖୀ ତେବେ ଟଳିବ ।୧୦୪।
ରୁକ୍ମିଣୀ ବୋଇଲେ ଶୁଣ ଗୋସାଇଁ ।
ବ୍ରହ୍ମଗାର କେବେ ଟଳଇ କାହିଁ ।୧୦୫।
କହ ସ୍ୱାମୀ ତୋର ଭକ୍ତ ବଗ୍ରଶ ।
ଶୁଣ ରୁକ୍ମିଣୀ ହେଉ ଚିତ୍ତ କଶ ।୧୦୬।
ଯାରଳା ଦେବୀ ଉତ୍ତର ଭାଗରେ ।
ଆନନ୍ଦ ବୋଲିଣ ଅଛଇଂ ବାଟରେ ।୧୦୭।
ଭୁବନେଶ୍ୱରଙ୍କ କେଶରୀ ପାଶେ ।
କ୍ଷଣେ ନ ଛାଡନ୍ତି ପଞ୍ଚ ପୁରୁଷେ ।୧୦୮।
ଶ୍ରୀମ ଗଦାଧର ନୃସିଂହ ମୁରାର ।
କନ୍ଦର୍ପ ଯେନଣ ପଞ୍ଚ ବହର ।୧୦୯।
ଏହାଙ୍କ ତେଜ ଅନେକ ଯେ ସହ୍ସ ।
ସେ ଯେହ୍ନେ ସିଂହ ବନେ ଗରଜଇ ।୧୧୦।
ତେସନେ ଏହାଙ୍କ ଗର୍ଜନ ଘାତ ।
ଅନେକ ମ୍ଳେଛ କରବେ ନପାତ ।୧୧୧।
ହୃଦବ ଅକ୍ରୂର ଚନ୍ଦନ ବନେ ।
ନତ କୀର୍ତ୍ତନ କରନ୍ତି ନମସ୍ତେ ।୧୧୨।
ଅଙ୍ଗ ବସ୍ତ୍ରରେ ସର୍ବ କ୍ଷସ୍ତ୍ର ଯିବେ ।
ଦୁଷ୍ଟ ଦର୍ପିଷ୍ଟମାନେ ନ ବର୍ତ୍ତିବେ ।୧୧୩।
ମହୋଦଧି ତଟ ଦକ୍ଷିଣ ଭାଗ ।
ସେଠାବେ ସାଧୁ ଅଛନ୍ତି ନଯୋଗ ।୧୧୪।
ନାମ ଦୟାନଧି କରୁଣାକର ।
ମନ୍ତ୍ରଭୂତ ସିଦ୍ଧି କରେ ବସ୍ତୁର ।୧୧୫।
ଭାର୍ଗବୀ କୂଳ ଦେଉଳ ଯେ ମୂଳ ।
ସିଦ୍ଧାଙ୍କ ସ୍ଥାନ ସଦାଶିବ ଆଳ ।୧୧୬।
ଚଣ୍ଡେଶ୍ୱରଙ୍କର ପୂର୍ବ ଭାଗରେ ।
ଜଗନ୍ନାଥ ଦେଖି ସୁଖେ ବହରେ ।୧୧୭।

ପଞ୍ଚାଶ ସୂଅପଠମାନେ ସନ୍ଧି ।
ଆଗ୍ୟାଂ ପ୍ରମାଣେ ଜନ୍ମ ଦେହ ବନ୍ଧ ।୧୧୮।

ଅଣ୍ଟୁଟା ଭୂଷ୍ଟନ୍ତ ଅଗ୍ୟାଂ ପ୍ରମାଣ ।
କଳାମାନଙ୍କୁ କରଣ ଗୋପ୍ୟାନ ।୧୧୯।

କଲଙ୍କି ମୂହ୍ନଂ ହେବ ଯେତେବେଳେ ।
ଛେଦନ କରିବ ମଣ୍ଡମଣ୍ଡଳେ ।୧୨୦।

ଜନ୍ମ ସଙ୍କେତ ଯେତେବେଳେ ନୋହ୍ନଂ ।
କେବେହେଂ ପ୍ରକାଶ ହୋଇବେ ନାହ୍ନଂ ।୧୨୧।

ଶୁଣ ରୁକ୍ମଣୀ ଚନ୍ଦ୍ରୋତ୍ପଳା ଖଣ୍ଡରେ ।
ଭଗତ ଅଛନ୍ତି ମୋର ସେଠାରେ ।୧୨୨।

ସୁଦାମ ସଖା ମୋ ଧ୍ୟାନ ଅଚ୍ୟୁତ ।
ମୋହ୍ନ ଆଗ୍ୟାଂରେ କରୁଥାଇ ନୃତ୍ୟ ।୧୨୩।

ତହ୍ନଂ ସଖା ଯେହ୍ନଣ ଜନ୍ମବ୍ୟାପି ।
ମହା ମହିମା ଯୋଗେଶ୍ୱର ତପୀ ।୧୨୪।

ମୋ ଜନ୍ମ ଗୋପାଳ କର ଭାବନା ।
ମହାଶୂନ୍ୟ ପରିକ୍ଷ କର ଯେନା ।୧୨୫।

ଚନ୍ଦ୍ରଭାଗୀ କୂଳେ ଶାଳଶୀଳ କୁଦ ।
ତହ୍ନଂରେ ଗୋଷ୍ଠା ଅର୍ଦ୍ଧେ ଗୋବିନ୍ଦ ।୧୨୬।

ଉତ୍ତର କୂଳେ ଲେମ୍ବାଳ ଗ୍ରାମରେ ।
ପୂର୍ବ ପଶ୍ଚିମ ଦକ୍ଷିଣ ମଧ୍ୟରେ ।୧୨୭।

ମୁହାଂସ ବଡ଼ ଯେ ଅଛଇ ତହ୍ନଂ ।
ସେ କୂଳେ ଗୋବିନ୍ଦ ଜପ କରଇ ।୧୨୮।

ମନ ବାପ୍ତଣଠାରେ ଯେ ଉଦୟେ ।
କହିଲୁଂ ମିତ ନାହ୍ନଂ ନା ସଂଶୟେ ।୧୨୯।

ଲୀଳା କରିବେ ତାରକା ଭାବେଣ ।
କହୁଛୁଂ ସଖୀ ଶୁଣ ସାବଧାନ ।୧୩୦।

ଦକ୍ଷିଣ ଦଣ୍ଡ ଯେ ପୂର୍ବ ଭାଗରେ ।
ଆଳରୁ ଝରି ଆସେ ସେହ୍ନଠାରେ ।୧୩୧।

ଚୈତ୍ର ଶୁକ୍ଳ ସପତମୀ ଦିନ ।
ଜନ୍ମ କୃଷ୍ଣପକ୍ଷ ଅମାସ୍ୟା ଦିନ ।୧୩୨।

ହକାର ସକଳକୁ ସଙ୍ଗେ ଦେବଣ ।
ଶୁଭଲଗ୍ନ ଦେଖ ହୃଦେ ତପନ ।୧୩୩।
ଯେଦନ ଖଣ୍ଡ ଶିଖରେ ମିଳବେ ।
ସେ ଯାହା ମନ୍ତ୍ର ଭାବନା କରିବେ ।୧୩୪।
ଏକାନ୍ତର ମନ୍ତ୍ର ଭାବନା କର ।
ବେଳକୁ ଥିବେ ଆଗ ପ୍ରତିଅର ।୧୩୫।
ଶୁଣ ରାମଚନ୍ଦ୍ର କହିଲି ତୋତେ ।
ଶ୍ରୀମୁଖ ଆଗ୍ୟାଂ ହୋଇଅଛୁ ମୋତେ ।୧୩୬।
ରୁକୁଣୀ ଶ୍ରୀମୁଖୁଂ ଶୁଣି ସନ୍ତୋଷ ।
ବୋଇଲେ ଲେଖ ହୋ ଅଚ୍ୟୁତ ଦାସ ।୧୩୭।
ଏ ମୋର ପଞ୍ଚସଖା ମଧ୍ୟେ ସାର ।
ଗୁପତ ଫେଇ କହୁଛ କୁମର ।୧୩୮।
ଶୁଣି ସୁମନେ ରାମଚନ୍ଦ୍ର ତୋଷ ।
ମୋହର ପାଦେ ଲଗାଇଣ ଶିଷ ।୧୩୯।
ଅଚ୍ୟୁତ ଦାସ ମୁଂ ନଧର ଦୋଷ ।
ହରି କରଣି ସମ୍ବାଦ ପ୍ରକାଶ ।୧୪୦।

—*—

## ॥ ପଞ୍ଚମ ପଟଳ ॥

ଶୁଣ ରାମଚନ୍ଦ୍ର ବଡ଼ ଗୁପତ ।
ସୁଦାମ ସଖାଟି ଥାଇ ଅଚ୍ୟୁତ ।୧।
ହରିକାର ସ୍ୱାମୀ ବଟ ପତ୍ରରେ ।
ଶୟନ କଲେଟି କଳକାଳରେ ।୨।
ବଟପତ୍ରଟି ଦ୍ୱାଦଶ ଆଙ୍ଗୁଳ ।
ଯେବେ ପ୍ରମାଣେ ପୁରୁଷ ତହୁଂର ।୩।
ସବ ସରହଣ କର ଗର୍ଭରେ ।
ନଷ୍ଟଲେ ଶୋଇଲେ ବଟପତ୍ରରେ ।୪।
ସେଠାବେ ଅଚ୍ୟୁତ କାହୁଂ ଜାଣିମା ।
ତୋତେ କହୁଅଛୁ ଏହୁ ମହିମା ।୫।
ପତ୍ର ମଧ୍ୟରେ କଳକାଟି ଜାଣ ।
କଳ ତାରକଟି ସୁଦାମ ଚିହ୍ନ ।୬।

କଳକାରେ ଯହିଂ ରେଖ ଦଶଇ ।
ସୁଦାମ ସଖା ଅଚ୍ୟୁତଟି ସେହି ।୭।
ଅନନ୍ତଶାୟୀରେ ଶୋଇଣ ଥିଲେ ।
ସ୍ୱର ଯେ ଗୋଟା ନିଶ୍ୱାସ ମାଇଲେ ।୮।
ସ୍ୱର ବେଦୁଂ ସ୍ୱର ନିଶ୍ୱାସ ଜାଣ ।
ସ୍ୱର ବେଦରୁ ସଂସାର ଉଆଣ ।୯।
ବ୍ରହ୍ମା ଜନମିଲେ ସୃଜିଲେ ମନ୍ତ୍ର ।
ସ୍ଥଳସ୍ଥ ସେବା ଦେଲୁ ତୋତେ କହୁ ।୧୦।
ତ୍ରେତୟା ଯୁଗେ ପ୍ରଭୁ ସଙ୍ଗେ ହନୁ ।
ନୀଳ ସୁଷେଣ ଜାମ୍ବବ ଯେ ହନୁ ।୧୧।
ଦ୍ୱାପର ଯୁଗରେ ପଞ୍ଚ ପାଣ୍ଡବ ।
ନୀଳାଦ୍ରିରେ ଆମ୍ଭେ ହୋଇବୁ ଠାବ ।୧୨।
ପଚଣ ଯୂଥପତିଙ୍କୁ ଯେ ଯେନ ।
ଅବତାରମାନଙ୍କରେ ଜନମି ।୧୩।
ଶୁଣ ରାମଚନ୍ଦ୍ର ସୁମନ ହୋଇ ।
ରୁକ୍ମିଣୀ ପୁଚ୍ଛନ୍ତି ବିନୟ ହୋଇ ।୧୪।
କହିବା ହେଉ ନୀଳାଦ୍ରି ପୁରୁଷ ।
ଆଉ କେତେ ସ୍ଥାନେ ଜନମ ଦାସ ।୧୫।
ଶୁଣ ରୁକ୍ମିଣୀ ମୋ ଦାସ ଜନମ ।
କଳିରେ ବୈଷ୍ଣବ ସେହୁଟି ଚିହ୍ନ ।୧୬।
କଳିରେ ବୈଷ୍ଣବ ରୂପେ ଖେଳଇଂ ।
ଦାସମାନଙ୍କ ସଙ୍ଗତେ ମିଳଇଂ ।୧୭।
ଦାସମାନଙ୍କ ସଙ୍ଗେ ଥିବ ରହି ।
ପରମହଂସ ପଶ୍ଚିମରେ ଯାଇଂ ।୧୮।
ଗଦା ଯେ ରୁକ୍ମିଣୀ ଅଛି ସେଠାରେ ।
ପଦ୍ମପୁରଠାରେ ଜନମ ଜଣେ ।୧୯।
ବ୍ରାହ୍ମଣ ଘରେ ହୋଇଛି ଜନମ ।
[illegible]ରେ ଅଛି ନ ଚିହ୍ନେ ପୁଣ ।୨୦।
ନୃସିଂହ ମିଶ୍ର ଯେ ନାମ ତାହାର ।
[illegible]ଅଂଳା ବୃକ୍ଷ ଅଛି ତା ବାଡର ।୨୧।

ପାଞ୍ଚଭ୍ରାତାରେ ମହିଁଅଛନ୍ତି ସେହି ।
ଅଏଂଳା ମୂଳରେ ସ୍ୱରୂପ ଧାଇ ।୨୨।
ସେ ଦାସେ ମୋର ବଡ଼ ବିଶ୍ୱାସ ।
ପୂର୍ବ ଜନ୍ମରେ ସେହୁ ସୁପୁରୁଷ ।୨୩।
ସେବକ ଶିଷ୍ୟ ସତ୍ୟଯୁଗେ ସେହୁ ।
କଳିରେ ନାମ ନୃସିଂହ ବୋଲାଇ ।୨୪।
କାବଳପୁରେ ଯେ ଜଣେ ଅଛଇ ।
ଗ୍ରାମ ଉତ୍ତର ଭାଗେ ଅଛି ରହି ।୨୫।
ଅଠ କଷ୍ଟରେ ବଞ୍ଚୁଥାଇ ଧନ ।
ଲୋକେ ନଜାଣନ୍ତି ତାହାର ଜନ୍ମ ।୨୬।
ଗୋପାଳ କୁଳେ ହୋଇଅଛି ଜାତ ।
ମାତାର ନାମ ଲବଙ୍ଗ ବଦତ ।୨୭।
ଅଣ-ସ୍ୱାଦରେ ଗର୍ଭ ହୋଇଥିଲା ।
କେମନ୍ତେ ଗର୍ଭ ତାହା ନ ଜାଣିଲା ।୨୮।
ଦଶମାସ ସନ୍ତୁଂ ହେଲା ସମ୍ପୂର୍ଣ୍ଣ ।
ଉଶ୍ୱାସ ଲଭିଲା ସେ ଅନୁକ୍ଷଣ ।୨୯।
ସ୍ନାହାନକୁ ଏକା ହୋଇସ୍ତେ ବାହାର ।
ଶୁଳ ଅଇଲା ତା ଜାଣି ନପାର ।୩୦।
ଜାମୁଗଛ ମୂଳେ ପୁଚ୍ଛେ ବସିଲା ।
ଜନମ ହେବଲେ ଫୁଟି ଫାଟିଗଲା ।୩୧।
ଜନମ ହୋଇଣ ପଡ଼ ନନ୍ଦନ ।
ପୃଥ୍ୱୀ ଭିତରେ ହୋଇଲା ଗୋପ୍ୟାନ ।୩୨।
ନୀଳ ସ୍ୱରୂପ ସେ ଅଷ୍ଟଭି ଦେହି ।
ଗୋପ୍ୟାନ ବେଳେ ସେ ମାତାକୁ କହି ।୩୩।
ହେ ମାତା ଜନମ କଲୁ ଯେ ମୋତେ ।
କୁଥ୍ୟାକ୍ଷେ କହି ଯାଉଅଛି ତୋତେ ।୩୪।
ମୋହ ଜନମ କାହିଂ ନ କହିବୁ ।
ଯେବେ କହିବୁ ଦେହ ନ ପାଇବୁ ।୩୫।
ସନାତନ ମୁହିଁ ଜନମ ହୋଇଂ ।
ସନକାଦ ଅଂଶେ ଜାଣିଥା ରହି ।୩୬।

ଶୁଣି ଗୋପାଳୁଣୀ ଘରକୁ ଗଲ ।
ହୃଦର ଚନ୍ଦ୍ର କାହିଂ ନ କହିଲ ।୩୭।

ଶୁଣ ରାମଚନ୍ଦ୍ର ସୁମନ ହୋଇ ।
ରୁକ୍ମୁଣୀ ଦେବୀ ନମସ୍ତେ ଶୁଣେ ।୩୮।

ସତ୍ୟ ଯୁଗେ ସେ ଜାବାଳଟି ଜାଣ ।
ସକଳ ଭୁବନେ କରେ ଗମନ ।୩୯।

ଅମର ଭୁବନ ଆଦି ସମସ୍ତ ।
ସ୍ୱର୍ଗ ମର୍ତ୍ତ୍ୟ ଯେ ପାତାଳ ସହିତ ।୪୦।

ଦିନେ ଜାବାଳି ଗମନ କରନ୍ତେ ।
ଯାଇଂ ମିଳିଲେ ଦ୍ୱିଦସ୍ତୁ ପର୍ବତେ ।୪୧।

କନ୍ୟାଏ ଯୋଗ ସାଧୁଛନ୍ତି ତହିଂ ।
ବେନି ଅଙ୍ଗୁଳି ହସ୍ତେ କରିଛଇଂ ।୪୨।

ଲକ୍ଷ୍ମୀ ସରସ୍ୱତୀ ପାର୍ବତୀ ତହିଂ ।
ସେ ରୂପକୁ ସରି ନୁହନ୍ତି କେହି ।୪୩।

ସୁବର୍ଣ୍ଣମୟ ଯେ ଭୂମି ଉପରେ ।
ଧ୍ୟାନଲଗ୍ନ କରିଅଛି ସେଠାରେ ।୪୪।

ଜାବାଳି ଦେଖି କିଛି ନ କହିଲେ ।
ସମାସନ ପାଇଂ ଯତ୍ନ ରଖିଲେ ।୪୫।

ଯୋଗ ସମ୍ପୂର୍ଣ୍ଣେ ଏହାଙ୍କୁ ଦେଖିଲେ ।
ଦେଖି ଜାବାଳି ସେ ପାଦେ ପଡ଼ିଲେ ।୪୬।

ଜାବାଳି ପୁଚ୍ଛନ୍ତି କନ୍ୟା କହଇଂ ।
ଶୁଣ ହୋ ମୁନି ବ୍ରହ୍ମବିଦ୍ୟା ମୁହିଂ ।୪୭।

ବ୍ରହ୍ମା ମୁହିଂ ବ୍ରହ୍ମ ମୋ ଦେହେ ଲୀନ ।
ମୋହର ଠାକରୁ ବ୍ରହ୍ମ ବିଦ୍ୟମାନ ।୪୮

ମୁନିଙ୍କୁ କହି ଅନ୍ତର୍ଦ୍ଧାନ ହେଲେ ।
ବସ୍ତୁର ମୁକତି ପଦ ଲଭିଲେ ।୪୯।

ଶୁଣ ରୁକ୍ମୁଣୀ ମନ ଚିତ୍ତ ଦେଇ ।
ଜାବାଳି ଉପରେ ବସିଲ ଯାଇ ।୫୦।

ବ୍ରହ୍ମ ଗୋପାଳ ଯେ ମନ୍ତ୍ର ପଢ଼ିଲେ ।
ନବକଳ୍ପ ପରିଯନ୍ତେ ଧ୍ୟାଇଲେ ।୫୧।

ଦ୍ୱାପର ଯୁଗେ ଜନମ ହୋଇଲେ ।
ପ୍ରଚଣ୍ଡ ଗୋପାଳ ଘରେ ଜନ୍ମିଲେ ।୫୨।

କୃଷ୍ଣଙ୍କୁ ଲଭିବୁ ବୋଲି ଜନ୍ମିଲେ ।
ଚନ୍ଦ୍ରଗନ୍ଧ ବୋଲି ନାମ ବହିଲେ ।୫୩।

ସ୍ତ୍ରୀ ଅଙ୍ଗ କଳା ନିଜରେ ରଖି ।
ପୁରୁଷ ଅଙ୍ଗ ପାଲଟିଲି ସଖୀ ।୫୪।

କାବଳପୁରରେ ଜନମ ସେହି ।
ସନାତନ ନାମ ଅଛଇ ବହି ।୫୫।

ଗୁପତ ହୋଇ ଖେଳୁଅଛୁ ନିତ ।
କଳଙ୍କି ରୂପକୁ ଚିନ୍ତଇ ନିତ ।୫୬।

ନିତ୍ୟେ ନୀଳଗିରି କରେ ଗମନ ।
ଗରୁଡ଼ ପଛରେ କରଇ ଧ୍ୟାନ ।୫୭।

ଉତ୍ତର ଦୁଆରେ ଆସଇ ଯାଇ ।
କାବଳପୁରକୁ ଯାଇ ଆସଇ ।୫୮।

ଉତ୍ତର ଭାଗେ ଯେ ନିଗମ ସ୍ଥାନ ।
ସେ ଠାବରେ କରିଅଛୁ ଆସ୍ଥାନ ।୫୯।

ଦ୍ୱାଦଶ ଅଙ୍ଗୁଳ କୌପିନ ମାତ୍ର ।
ନିଶାକାଳେ ସମୁଦ୍ରରେ ବିହାର ।୬୦।

ଧ୍ୟାନ ସମାଧିରେ କରିଛୁ ଲକ୍ଷ୍ୟ ।
ଅନେକ ମ୍ଳେଚ୍ଛ ଯେ କରିବ ଭକ୍ଷ୍ୟ ।୬୧।

କପିଳାସ କନ୍ଦର ଇନ୍ଦ୍ର ଶିଖରେ ।
ପାର୍ବତୀ ସେବକ ଅଛନ୍ତି ସଙ୍ଗରେ ।୬୨।

ସପତ ଋଷିଟି ଅଛନ୍ତି ତହିଁ ।
କଳଙ୍କୀ ରୂପକୁ ଅଛନ୍ତି ଚାହିଁ ।୬୩।

ନାଟେଶ୍ୱରଙ୍କ ପଶ୍ଚିମ ଭାଗେ ।
ଜଣେକ ଅଛଇ ଗୁପତ ଭାବେ ।୬୪।

ମାହାନ୍ତି କୁଳେ ଜନମ ହୋଇଛୁ ।
ମନକୁ ନେଇ ଚୈତନ୍ୟେ ରଖିଛୁ ।୬୫।

ପଟ ଭୁଲୁଥିଲେ ଅଙ୍ଗ ନ ହଲେ ।
ଅତି ଶିଶୁବନ୍ତ ଥାଇ ନିର୍ଗ୍ଗେଲେ ।୬୬।

ପତୀ ସିଂହ ବୋଲି ତାହାର ନାମ ।
ତାହାଙ୍କୁ ଦେଖିଲେ ଡରନ୍ତି ଯମ ।୬୭।

ବ୍ରହ୍ମ ଏକାକ୍ଷରୀ କରେ ଭଜନ ।
ସାଧନ ଦେଖିଣ ହୋଇଲି ଛନ୍ନ ।୬୮।

ସେ ଭାବ ମନୁ ପାଶୋର ନ ଯାଇ ।
ମୁକୁଳା ପଣ ସେ ନିତ୍ୟେ କରଇ ।୬୯।

ଘର କୁଟୁମ୍ବ ନ ପାରିବେ ସହି ।
ବାଇ ବାଁଇ ବୋଲି ଦେବେ ଉଡ଼ାଇ ।୭୦।

ଭାବ ଅର୍ଥେ ତାକୁ ହୁକୁମ ହୋଏ ।
ଭେକ ଶୌଚ ତାକୁ ବିନାଶ ଯାଏ ।୭୧।

ଯାଅ ହୋ ଦାସ ବନ୍ଧୁ ଆଅ ଦିନ ।
ପୂର୍ବ ହେତୁରୁ ଧରି ପାଳଟିଣ ।୭୨।

ଏମନ୍ତ ଆଜ୍ଞା ଯେ ଅଛଇ ଦେଇ ।
ଗୁପତ ଭାବେ ସେ ନିତ୍ୟେ ଖେଳଇ ।୭୩।

ନଣାକାଳରେ ସେ ଦଗ ଭ୍ରମଇ ।
ଦର୍ବସରେ ଆସନେ ବସିଥାଇ ।୭୪।

ଶୁଣ ରାମଚନ୍ଦ୍ର ହେତୁ ଲଗାଇ ।
ଶ୍ରୀମୁଖୁ ଏହା ଶୁଣିଅଛୁ ମୁହିଁ ।୭୫।

ଶ୍ରୀମୁଖ ଆଜ୍ଞାଟି ଯେବେ ଟଳିବ ।
ପୁରାତନ କଥା ମିଥ୍ୟା ହୋଇବ ।୭୬।

ପୃଥ୍ୱୀ ଅଭିଷେକ ଦିନଟି ଏହା ।
କହୁ ଅଛନ୍ତି ସ୍ୱାମୀ ଚଢ଼ିବାହା ।୭୭।

ଶୁଣ ସାଧବା ତୁ ପ୍ରାଚୀ ତଟରେ ।
ବିଶ୍ୱାମିତ୍ର ମୁନି ଯଜ୍ଞ ସେଠାରେ ।୭୮।

ମହାବଳ ବୋଲି ଜଣେ ଅଛଇ ।
ଶ୍ରୀଅଙ୍ଗ ବିଭୂତ ହୋଇଣ ଥାଇ ।୭୯।

ଶିରେଣ ଜଟା କଷାବାସ ପଟ ।
ସିଠି ଦଣ୍ଡରେ ଲଗୁଥାଇ ପେଟ ।୮୦।

ସପତ ପତର ଆହାର କରେ ।
ସ୍ନାନ ଦିବସ ବୁଲେ ବନସ୍ତରେ ।୮୧।

ଅମୃତ ଅହାର କରଇ ନିତ ।
ଦୂରକୁ ଦିଶେ ବଡ଼ ତେଜ ମୂର୍ତ୍ତି ।। ୮୨।
ଝଳଲ ତମ୍ବା ପ୍ରାୟେକ ସ୍ବରୂପ ।
ଗୋରେକ୍ଷଙ୍କ ଗୁରୁ ମଚ୍ଛିନ୍ଦ୍ର ସେ ତ ।।୮୩।
ଲୋକନାଥ ପାଶେ ସ୍ୱୈରୀଣି ମିଛ ।
ଜନମ ହୋଇବେ ୯ ଦିଗମ୍ବର ।୮୪।
ତ୍ରପଞ୍ଚ ନୋହ୍ବଂଶ ଗୁପତ ହୋଇଂ ।
ସ୍ବରୂପ ମାନକୁ ଥିବୁ ଲୁଚିଇଂ ।୮୫।
ଯେପାରେ ଚହ୍ନି ନଚହ୍ନିମେ ଜନ ।
କଳି ଦେଖି ସବୁ ହେବେ ଗୋପ୍ୟାନ ।୮୬।
ମୟୂରଭଞ୍ଜ ଯେ ତପବନରେ ।
ବ୍ରହ୍ମାନନ୍ଦନ ରହିଛି ସେଠାରେ ।୮୭।
ସତ୍ୟଯୁଗରେ ଚନ୍ଦ୍ରଧ୍ବଜ ରାଜା ।
ବହୁତ କରେ ଯଜ୍ଞ ଧ୍ୟାନ ପୂଜା ।୮୮।
ତାର ନନ୍ଦନ ଚନ୍ଦ୍ରଧ୍ବଜ ଯେହୁ ।
କଳିଯୁଗରେ ବ୍ରହ୍ମାଦେବ ସେହୁ ।୮୯।
ତ୍ରେତୟା ଯୁଗରେ ଦଣ୍ଡକାରଣ୍ୟେ ।
ରଘୁନାଥଙ୍କୁ ଦେଖିଲ ନୟନେ ।୯୦।
ଦ୍ୱାପର ଯୁଗ ରଙ୍ଗା ଅବତାରେ ।
ଜନମ ହେଲ ଖାରଘୋଷ ଘରେ ।୯୧।
ପ୍ରିଣିଲଙ୍କରେ ସେ ହୋଇଲ ଜାତ ।
ପୂର୍ବ ବାସନା ପ୍ରାପତ ନିସ୍ବତ ।୯୨।
ନାମ ଚନ୍ଦ୍ରକଳା ଅନନ୍ତ ରୂପ ।
ଗୋଲୋକେ ସେବଇ ଭାଗ୍ୟ ସ୍ବରୂପ ।୯୩।
ମର୍ତ୍ତ୍ୟରେ ସକଳ ଗୋଷ୍ଠିଙ୍କ ଥାଇ ।
ଜନମ ହେବ ନର ଦେହ ବହି ।୯୪।
ଭଂଜ ବଂଶରେ ସେ ହୋଇବ ଜାତ ।
ବ୍ରହ୍ମାନନ୍ଦ ଦାସ ନାମ ବହିତ ।୯୫।
ଉପବନରେ ଅହର୍ନିଶି ଥାଇ ।
ମୃତ୍ୟୁ ସଞ୍ଜୀବନୀ ଜପ କରଇ ।୯୬।

ପଶ୍ଚିମ ଭାଗେ ବଟବୃକ୍ଷ ମୂଳେ ।
କଳଙ୍କି ରୂପ ଚନ୍ଦ୍ର ନରନ୍ତରେ ।୯୭।

ବରଜା ମଣ୍ଡଳେ ଜଣେ ଜନମ ।
ଦତ୍ୟସିଂହ ବୋଲି ତାହାର ନାମ ।୯୮।

ଦୀପ ଦହୁଡ଼ି ଯେ ଜାଳୁଚ ନତ୍ୟେ ।
ଅମଣୀଜ ଯେ ଜନ୍ମ ଗୁପତେ ।୯୯।

ହଦସ୍ତେ ବେଲକୁ ଅଛଗ ଚହ୍ନଂ ।
ଗୁପତେ ଥିବେ ଯେ ପ୍ରପଟ ନୋହି ।୧୦୦।

ତାଟକା ଭାବରେ ବଞ୍ଚିଅି ଧନ ।
ସେ ନଦ୍ୟନ ମଧ୍ୟେ ଜ୍ୟୋତ ନବା୍ ।୧୦୧।

ସେହି ବନରେ ଖେଳୁଅଛୁ ନତ ।
ସେ ବନେ ଗୁପତେ କରେ ପୀରତ ।୧୦୨।

ମାଳ ଗୋଟିଏ ଘେନଥାଇ କର ।
ଭଜନ କରେ ବସ୍ତୁ ପଞ୍ଚାକ୍ଷରୀ ।୧୦୩।

ଫୁଲ ଅଳସାରେ ଚୂର ଅଛନ୍ତି ।
ଋଷିଙ୍କ ଅଙ୍ଗ ଯେ ଧର ଅଛନ୍ତି ।୧୦୪।

ତୋଟା ପଦ୍ମମ ଭାଗେ ଛନ୍ଦ ରହିଂ ।
ଗୁରୁ ପାଦୁକାରେ ଅଛନ୍ତି ତହିଂ ।୧୦୫।

ମନଷ୍ୟ ଦେଖିଲେ ହୋଇ ଅନ୍ତର ।
ଗୂର ଏକ ସ୍ତେ ବସ୍ତ୍ରେଯ ବାଙ୍ଗର ।୧୦୬।

ତୋର କଉପୁନ କଟିରେ ଶୋହି ।
ବୈଷ୍ଣବ ମତେ ସେ ଅଛନ୍ତି ରହି ।୧୦୭।

ମାଧବ ମୁରାରି ହରି ମୁକୁନ୍ଦ ।
ଏ ଗୁର ନାମେ ରହିବେ ସାନନ୍ଦ ।୧୦୮।

ଭୃଷ୍ଟ ଗୁଷ୍ଟ ଶିଖା ଝାଲେଶ ପୁଚ୍ଛ ।
ଏହି ବେଶ ଧରି ଥିବେ ପ୍ରତଛ ।୧୦୯।

କୃଷ୍ଣ ମନ୍ତ୍ର ସଦା ଭଜନ କର ।
ଅଳସା ତୋଟାରେ ଥିବେ ବହୁଶ ।୧୧୦।

କାଳ ବେଳକୁ ସେ ଥିବେ ଅନାଇଂ ।
ପ୍ରାଣୀଙ୍କି ଅଛନ୍ତି ଦେଖା ନଦେଇ ।୧୧୧।

ଶୁକ ଶୌନକ ବ୍ୟାସ ତପୋଧନ ।
ଅଳସା ତୋହାରେ ଦୃଶ ଗୋପ୍ୟାନ ।୧୧୨।
ମାଧେବ ମୂର୍ତ୍ତି ମୁକୁନ୍ଦ ନାମ ।
ଏ ନାମ ପାଇ ହୋଇଥିବେ ଜନ୍ମ ।୧୧୩।
ଶ୍ରୁଭ ଚୂଡ଼ୁଣୀ ମନବନ୍ଧ ଦେଇ ।
ଭରଦ୍ୱାଜ ଥିବେ ଯେ ଦେହ ବନ୍ଧ ।୧୧୪।
ଦେହ ଧରଣ ସେ ହୋଇବେ ଜନ୍ମ ।
ମାଧବେନ୍ଦ୍ର ପୁରି ହୋଇବ ନାମ ।୧୧୫।
ବୃନ୍ଦାବନରେ ଯେ ସଦା ବିଭୋଳ ।
କଢ଼ଂ ଦନରେ ସେ କରବ କେଳି ।୧୧୬।
ଗୋଲୋକ ନାଥ ଚୈତନ୍ୟ ଠାକୁର ।
ଅବତାର ହେବ କଢ଼ଂ ଦନର ।୧୧୭।
ହରି ନାମ ଦେଇ ଜୀବ ତାରିବୁ ।
ଜନମ ହୋଇଂ ପାଷାଣ୍ଡ ଦଳିବୁ ।୧୧୮।
ଅନନ୍ତ ଯେ ନିତ୍ୟାନନ୍ଦଟି ସେହ ।
ସନ୍ୟାସ ଦୀକ୍ଷା ଅପେ ନେବେ ସେହ ।୧୧୯।
ମାଧବାନନ୍ଦ ପୁରି ଦୀକ୍ଷାନନ ।
ନିତ୍ୟାନନ୍ଦ ପ୍ରଭୁ ମୁଖେ ପ୍ରଚ୍ଛିନ ।୧୨୦।
ଉତ୍କଳ ଦେଶକୁ ଆସିବୁ ସନ୍ନ ।
ଛଡ଼ ଭକ୍ତକୁ ଦେଖାଇବୁ ମୋହ ।୧୨୧।
ଛଡ଼ଭକ୍ତ ଛଡ଼ ଗୋସାଇଂ ଜାଣ ।
ଛଡ଼ ଆଣଟି ସେହ ମୋର ଚିହ୍ନ ।୧୨୨।
ପ୍ରକାଶ କଳାଟି ତାହାକୁ କହୁ ।
ଅବତାର କଳା ଜାଣିମ ସେହୁ ।୧୨୩।
କଳା ନୀଳାଦ୍ରି ବ୍ରହ୍ମଂରେ ସେ ଲୀନ ।
ଅନନ୍ତ କଳା ମହିମା ଭୂଷଣ ।୧୨୪।
ଷୋଡ଼ଶ କଳା ନୀଳାଞ୍ଚଳେ ଥାଇ ।
କଳଙ୍କି ସ୍ୱରୂପ ହୋଇବେ ସେହି ।୧୨୫।
ପ୍ରକାଶକଳା ଜଗନ୍ନାଥ ଚନ୍ଦ୍ର ।
ଶ୍ରୀ ପୁରୁଷୋତ୍ତମ ଯେ ନିତ୍ୟ ଧାମ ।୧୨୬।

ମାଧେବ ପୁଣ କୀର୍ତ୍ତନ ଲକ୍ଷଣ ।
ନିତ୍ୟାନନ୍ଦ ମୁଖେ ଯତ୍ନ ପ୍ରଚ୍ଛିନ ।୧୨୭।

କଳି ଶେଷରେ ସେ ତତ୍ତ୍ୱଂ ଜାଣିବ ।
ସ୍ୱେପନ ସନ୍ଦେଶ କହୁଛୁ ଧ୍ରୁବ ।୧୨୮।

କଳି ଶେଷରେ ଜନ୍ମ ହୋଇଥିବ ।
ବ୍ରହ୍ମଚର୍ଯ୍ୟ ବୋଲି ଧ୍ରୁବ ଶୁଭିବ ।୧୨୯।

ମାଧଇନ୍ଦ୍ର ପୁଣ ଯାହାଙ୍କୁ କହୁ ।
ବ୍ରହ୍ମଚୈତ ବୋଲି ଚହ୍ନିବ ସେହୁ ।୧୩୦।

କିଛୁ ଦିନ ରହୁ ଗୁପତ ହେବ ।
ନିଜ କଳା ଦେଇ ଅନ୍ତର ହେବ ।୧୩୧।

କଳଙ୍କି ରୂପ ପ୍ରକାଶ ହୋଇଲେ ।
ସେହୁ ପ୍ରକାଶ ହେବ ତେତେବେଳେ ।୧୩୨।

ଅସଂଖ୍ୟ ମହିମା ବୃଦ୍ଧି ତାହାର ।
ଚହ୍ନିମା ଲୋକ ଚହ୍ନିମ ଏଠାର ।୧୩୩।

ଶୁଣ ରୁକ୍ମିଣୀ ମନଚିତ୍ତ ଦେଇ ।
ଶ୍ରୀମୁଖ ବଚନ ଅନ୍ୟଥା ନୋହି ।୧୩୪।

ବାଙ୍କୀ ମୃତଂଘାଇ ପଶ୍ଚିମ ଭାଗେ ।
ଜଣେକ ଅଛୁ ରହୁଣ ସେଠାବେ ।୧୩୫।

ଶିବଧର ବୋଲି ତାହାର ନାମ ।
ଘୃତରେ ଅଛୁ ତାର ଚକ୍ର ଚିହ୍ନ ।୧୩୬।

ମନୁଷ୍ୟ ଦେଖିଲେ କଥା ନକହୁ ।
ମୃତ୍ୟୁ ସଞ୍ଜିବନୀ ନିତ୍ୟେ ଭଜଇ ।୧୩୭।

ଗଉର ବର୍ଣ୍ଣ ଯେ ଶୁଷ୍କ ତାର ।
ସ୍ୱଚ୍ଛରେ ଗ୍ରାମେ କରଇ ବେହାର ।୧୩୮।

ଏକାଅରେ ସେ ଯେ ଛାଡ଼ଇ ପଶୀ ।
ଏକାଘରକୁ ଯାଏ ଭିକ୍ଷା ପେଇ ।୧୩୯।

ବଟ ମୂଳରେ ସେ ଅଛଇ ଆଜି ।
ଝଡ଼ ବରଷା କିଛୁ ନ ମାନଇଂ ।୧୪୦।

ଯେ ଯେ ତ୍ରିଲୋଚନ ସେ ଶିବଧର ।
କଳଙ୍କି ରୂପ ଚନ୍ଦ୍ରେ ନିରନ୍ତର ।୧୪୧।

ସାରଙ୍ଗ ଗଡ଼ ପଶ୍ଚିମ ବାହୁରେ ।
ସାରଙ୍ଗାଇ ଛନ୍ତି ପୂର୍ବ ସ୍ୱଗରେ ।୧୪୨।
ଶିବାନନ୍ଦ ସତ୍ୟାନନ୍ଦଟି ଜାଣ ।
ବେଲ ବୃକ୍ଷ ମୂଳେ ମାଧବୀ ପୁଣ ।୧୪୩।
ବେଲ ସାହାଡ଼ା ତନ୍ତୁଳ ସ୍ଥାବର ।
ଚନ୍ଦନ ଗଛ ଅଛୁ ଏକ ଠାବର ।୧୪୪।
ସାତ ବରଷ କୁମର ଯେସନ ।
ସେହିକା ବୟେସ ଦଶଇ ତେସନ ।୧୪୫।
ସ୍କୃଚର କେଶ ଯେ ଦଶେ ଶାମଳ ।
ନାମ ଭଜନ ବୀଜ ତ ହାଙ୍କର ।୧୪୬।
ଦକ୍ଷିଣେ ପଲ୍ଲତା ପାଦେ କଠାଉ ।
ସୁବର୍ଣ୍ଣ ପ୍ରାୟେ ରୂପ ଦାଉଦାଉ ।୧୪୭।
କଲଙ୍କି ରୂପକୁ ଧ୍ୟାୟେ କରନ୍ତି ।
କନ୍ଦ ଫଳ ମୂଳ କଛୁ ଭକ୍ଷନ୍ତି ।୧୪୮।
ବଚନ ଭାଷନ୍ତି ଶୁଆ ପକ୍ଷୀୟେ ।
ମ୍ଳେଚ୍ଛଦ ମାନଙ୍କୁ କରନ୍ତି କ୍ଷୟେ ।୧୪୯।
ନୀଳ ଉତ୍ପଳ ଯେ ପୂର୍ବରେ ଜାଣ ।
କଳରେ ସତ୍ୟବନ୍ତ ଶିବରାମ ।୧୫୦।
ସତ୍ୟବନ୍ତ ଯେହୁ ନଳନୀ ସେହୁ ।
ଶିବରାମ ଯେହୁ ଉତ୍ପଳ ସେହୁ ।୧୫୧।
ଶୁମତେ କଳଯୁଗେ ଜନମିବେ ।
ମ୍ଳେଛ ଛେଦନକୁ ଜନମ ହେବେ ।୧୫୨।
କଲଙ୍କି ରୂପକୁ ଅଛନ୍ତି ଗୃହଂ ।
ଜାହାର ପଦାର୍ଥ ବୁଝନ୍ତି ନାହଂ ।୧୫୩।
ଶୁଣ ରାମଚନ୍ଦ୍ର ସୁମନ ହୋଇ ।
ହର କହନ୍ତି ରୁକୁଣୀ ଶୁଣଇ ।୧୫୪।
ପ୍ରାଚୀ କୂଳରେ ରଙ୍ଗଭୂମି ଜାଣ ।
ଅମଣାକୁନ୍ଦ ଯେ ନାମ ବଖାଣ ।୧୫୫।
ଗୁପତ ମଣିକର୍ଣ୍ଣିକା ପ୍ରାଚୀରେ ।
ମିଳଛନ୍ତି ଆସି ତ୍ରିବେଣୀ ଠାରେ ।୧୫୬।

ସଙ୍ଗ ସେ ହୋଅନ୍ତି ଅମାବସ୍ୟା ଦିନ ।
ଈଶ୍ୱର ଭଗେ ହୋଅନ୍ତି ଗୋପ୍ୟାନ ।୧୫୭।
ବାରଭୁଜା ବୋଲି ଯାହାଙ୍କୁ କହି ।
ବ୍ରହ୍ମାନନ୍ଦ ମସ୍ତ ପାର୍ବତୀ ଯେହି ।୧୫୮।
ଦକ୍ଷର ନନ୍ଦନୀ ଅଟନ୍ତି ଏହି ।
ପ୍ରାଚୀ ତଟରେଟି ଅଛନ୍ତି ରହି ।୧୫୯।
ପିତାର ବଚନ ସହି ନପାରି ।
ଅଗ୍ନି ଭିତରେଣ ପଶିଲି ବାଳୀ ।୧୬୦।
ନାରଦ ଦେଖି କପିଳାସ ଗଲେ ।
ହରଙ୍କୁ ଯାଇଂ ସମସ୍ୟା କହିଲେ ।୧୬୧।
କୋପେ ଶୂଳପାଣି ଯଜ୍ଞ ଠାବରେ ।
ପ୍ରବେଶ ହୋନ୍ତେ ସର୍ବେ ପଳାଇଲେ ।୧୬୨।
ଦକ୍ଷ ପ୍ରଜାପତି ଅଛନ୍ତି ରହି ।
ଏକା ଖୁପୋଡ଼େକେ ମୁଣ୍ଡ ଛିଣ୍ଡାଇଂ ।୧୬୩।
ଅଗ୍ନିଙ୍କି କୋପ କରିଣ ଗୃହାଂନ୍ତେ ।
ଡର ବୈଶ୍ୱାନର ଗଲି ଭୁଲିତେ ।୧୬୪।
ପାର୍ବତୀଙ୍କୁ ଘେନି ଈଶ୍ୱର ଭୋଳ ।
ଅତି ସ୍ନେହରେ ସେ କଲେକ କୋଳ ।୧୬୫।
ପାର୍ବତୀ ବୋଇଲେ ଶୁଣିମା ସ୍ୱାମୀ ।
ତୁମ୍ଭ ମହିଂମା ସେ ନଜାଣେ ପୁଣି ।୧୬୬।
ମୁଂ ଯେ ଗୁପତେ ରହିବ ସ୍ୱେ ସ୍ଥାନ ।
ଦ୍ୱାଦଶ ଭୁଜ ହୋଇବ ନିର୍ମାଣ ।୧୬୭।
କହୁଂ କହୁଂ ସେହିକ୍ଷଣି ସେ ରୂପ ।
ଦ୍ୱାଦଶ ଭୁଜ ହୋଇଲେ ପ୍ରତକ୍ଷ ।୧୬୮।
ପୂର୍ବ ମୁଣ୍ଡରେ ସେ ସ୍ୱରୂପ ହେଲେ ।
ସେ ସ୍ଥାନେ ରହି କପିଳାସ ଗଲେ ।୧୬୯।
ରଙ୍ଗଭୂମିକ ସେ ମାଡ଼ି ବସିଲେ ।
ଦ୍ୱାଦଶ ଭୁଜ ଘେନି ପ୍ରକାଶିଲେ ।୧୭୦।
ଚଣ୍ଡୀ ଗୋଟିକୁ ଜଗାଇ ଦୁଆରେ ।
ନିଶ୍ଚିନ୍ତେ ରହିଲେ ରଙ୍ଗଭୂମିରେ ।୧୭୧।

ପିତା ଛେଦନ ଶୁଣି କର୍ଣ୍ଣପଥେ ।
ସଙ୍କୋଚ ଭାବ ବହିଲେ ସେ ଚିତ୍ତେ ।୧୭୨।
ପିତା ମାତାଙ୍କର ମୁଣ୍ଡକୁ ଗୃହି ।
ପୃଥ୍ୱୀ ଭିତରେ ସେ ଗୁପତେ ରହି ।୧୭୩।
ମୁଣ୍ଡ ପୋତି ଦେବୀ ଲଜେ ରହିଲେ ।
ଦ୍ୱାରକ ଯୋଜନ ନମସ୍ତେ ବହିଲେ ।୧୭୪।
ମୋହୋର ସେବା ପୂଜା ପାଅ ତୁହି ।
ପିତା ପଗୁଭଲେ ଅଛଇ ମୁହିଂ ।୧୭୫।
ଶୁଣ ରୁକ୍ମିଣୀ ଏ ଗୁପତ କଥା ।
କେହି ନ ଜାଣନ୍ତି ଏହି ବ୍ୟବସ୍ଥା ।୧୭୬।
ନଉ ସହସ୍ର ଯେ ବରଷ ଯାଏ
ଗୁପତ ହୋଇଥିବ ସ୍ୱେକ ଠାଏ ।୧୭୭।
କଳିଯୁଗରେ ଯେ ପୂଜା ପାଇବ ।
ଆପଣା ନିଜ ଅଧିକାର ନେବ ।୧୭୮।
ଦ୍ୱାଦଶ ଭୁଜା ଯେ ଆପେ ନିର୍ବାଣ ।
ମାଡ଼ି ବସିବ ଜଗି ଅସ୍ୱେତନ ।୧୭୯।
ହର ଗଉରୀ ଗୁପତ ସେଠାରେ ।
ବସିଅଛନ୍ତି ପୂର୍ବ ପଶ୍ଚିମରେ ।୧୮୦।
ରଙ୍ଗଭୂମିରେ ଅମ୍ବିକାଣ୍ଟି ଯେହି ।
ତାହା ପାତରେ ନବର୍ତ୍ତିବେ କେହି ।୧୮୧।
ଅମ୍ବିକାକୁଦ ଦକ୍ଷିଣ ଭାଗରେ ।
ବାରବାହୁ ଅଛି ପାହାଡ଼ା ମୂଳେ ।୧୮୨।
ଅଣ ଅକ୍ଷର ଭଜନ ତାହାର ।
ଭୋଜନ କରଇ ବେଳ ପ୍ରହର ।୧୮୩।
ପାଞ୍ଚ ବରଷିଆ ବାଳକ ପ୍ରାଏ ।
ନୀଳ ଶୃଙ୍ଗାର ତା ଦିଶଇ କାଏ ।୧୮୪।
କଣି ଅର୍ଦ୍ଧରେ ସେ ଦଗ ଭ୍ରମଇ ।
ଅମ୍ବିକାଠାରେ ସେ ଦଣ୍ଡେ ରହଇ ।୧୮୫।
ଦଣ୍ଡେ ରହି ଚଳେ ନିଜ ଆଶ୍ରମ ।
କଳଙ୍କି ରୂପକୁ କରଇ ଧ୍ୟାନ ।୧୮୬।

ପ୍ରାଚୀ କୂଳରେ ରାମେଶ୍ୱରଠାରେ ।
ଜଣେ ଅଛଇଂ ଗୁପତ ଭାବରେ ।୧୮୭।
ବ୍ରାହ୍ମଣ କୁଳେ ହୋଇଛୁ ଜନମ ।
ଗଙ୍ଗାଧର ବୋଲି ତାହାଙ୍କ ନାମ ।୧୮୮।
ଯେମନ୍ତା ପଣ ସେ ନଜେ କହୁଇଂ ।
ବାଇ ବୋଲି ଜନେ କରନ୍ତି ଟାହ୍ୟ ।୧୮୯।
ଗୁପତ ଭାବେ ସେହୁ ଖେଳୁଥିବ ।
ନଜ କଳାକୁ ଲୁଗ୍ୱଇଣ ଥିବ ।୧୯୦।
ମ୍ଳେଚ୍ଛ ଛେଦବ ସେ କଳାକୁ ଦେନ ।
ଆମ୍ଭ ସଙ୍ଗରେ ଥିବ ଗୋ ମିତଣୀ ।୧୯୧।
ମାଧବଠାରେ ଦୀନବନ୍ଧୁ ଦାସ ।
ମାଧବାନନ୍ଦଙ୍କୁ ବଡ଼ ବଶ୍ୱାସ ।୧୯୨।
ମହାଦେବ ବପ୍ର ଦେହୁ ଜନମ ।
କଳା ସ୍ୱରୂପ କରଣ ପ୍ରଚ୍ଛିନ ।୧୯୩।
ଗୁପତେ ଥିବ ସେ ନଜ କଳାରେ ।
ପୁଣି ଜନମ ହୋଇବ ସଂସାରେ ।୧୯୪।
ବରୁଣ ଭୁବନ କଣ୍ଠାରେ ଟାଇଂ ।
ଗୋପାଳ ମେଳ କରବେ ସେଠାଇଂ ।୧୯୫।
ତେବେ ଜାଣିମ ଦୀନବନ୍ଧୁ ଜନ୍ମ ।
ସିଙ୍ଘା ବଇଂଶୀ ବାଜବ ସେ ସ୍ଥାନ ।୧୯୬।
ସିଦ୍ଧେଶ୍ୱରଙ୍କ ପଶ୍ଚିମ ଭାଗରେ ।
ଅଚ୍ୟୁତ ବୋଲି ଅଛୁ ସେଠାରେ ।୧୯୭।
କପିଳେଶ୍ୱରଙ୍କ ଉତ୍ତର ଭାଗରେ ।
ଅଛଇଂ ଜଣେ ଯେ ଦାସ ଭାବରେ ।୧୯୮।
କୃଷ୍ଣଭଦ୍ରା କୂଳେ ତାର ଜନମ ।
ପ୍ରାଚୀ ତଟରେ କରଇ ଭ୍ରମଣ ।୧୯୯।
ବଶିଷ୍ଠ ଋଷି ସେ ସତ୍ୟ ଯୁଗରେ ।
ଗନ୍ଧମାର୍ଦ୍ଦନ ଜାଣ ତ୍ରେତୟାରେ ।୨୦୦।
ଦ୍ୱାପର ଯୁଗେ ମହାକାଳ ନାମ ।
ଶ୍ରୀକୃଷ୍ଣ ସଙ୍ଗେ ଥାଇ ଅନୁକ୍ଷଣ ।୨୦୧।

କାଳୀକି ଦକବା ପାଛିଂ ମାଧୋ ଛ ।
ଗୋଟିକା ଦାଟରେ ପ୍ରବେଶ ଯାଇଂ ।୨୦୨।

କାଳନ୍ଧୀ ହବେ ଘଗୃରଲେ ଯାଇଂ ।
ଏହି ମୋହ ଜଳ ଦେଲେ ବଡାଛିଂ ।୨୦୩।

ଦ୍ୱାଦଶ ସନ୍ଧାରେ ଜଣେ ସେ ଜାଣ ।
ହୃଦୟରେ ଥାଇ ଭ୍ରମର ଧରଣ ।୨୦୪।

ଦ୍ୱାପର ଯାଇଂ ସେ କଳି ହୋଇବ ।
କଳରେ ତିନ ଜନମ ଲଭିବ ।୨୦୫।

ପ୍ରଥମ ଜନମ ବ୍ରାହ୍ମଣ ଘରେ ।
ଦ୍ୱିତୀୟ ଜନମ ବ୍ରଜବାସୀରେ ।୨୦୬।

ଏଯାରେ କହୁ ଏନ ମଳାକର ।
ଯଷ୍ଠୀ ଅଙ୍ଗେ ଯେ ଗୋବିନ୍ଦେ ବହର ।୨୦୭।

ଏଜ କଳା ଏନ ଗୋଲେକେ ଥାଇଂ ।
ସର ଲବଣୀ ଗୋଟିକା ଭୁଞ୍ଜଇଂ ।୨୦୮।

ନଜ କଳାକୁ ଚୋଲେକେ ରଖିଣ ।
କଳରେ ପୁଣି ହୋଇଥିବେ ଜନ୍ମ ।୨୦୯।

କୃଷ୍ଣଭ୍ରା କୂଳେ ଗୋପାଳ ଘରେ ।
ଦେହଧର ଜନ୍ମ ହୋଇ ଏସାରେ ।୨୧୦।

ପ୍ରାଚୀ ତଟରେ ଯେ ନଚ୍ଚେ ଖେଳଇ ।
କପିଳେଶ୍ୱରଙ୍କ ଉତ୍ତରେ ଥାଇ ।୨୧୧।

କଳା ସ୍ୱରୂପ ସେ ଅଟେ ତାହାର ।
ବୀଜ ଅକ୍ଷର ନାମ ଗୋଟି ଯାର ।୨୧୨।

ଅଟ ଅକ୍ଷର ଯେ ଭଜନ କରେ ।
ସବୁ ଧନରେ ନରଦ୍ଧଂ ନଗରେ ।୨୧୩।

ଦଶେ ଦଗକୁ ଏତେ ଖେଳଇ ।
ସଙ୍ଗେ ଖେଳଣ ଚାହ୍ନା ନ ଦଥଇ ।୨୧୪।

ଅନ୍ୟ ଅନ୍ୟମାନ ସେହୁ ଫେରଇ ।
ସମସ୍ତଙ୍କଠାରେ ଭାବ ରଖଇ ।୨୧୫।

ଯେତେ ଦେଖେ ସେ କରେ ବନ୍ଧାମ ।
ସମତା ଭାଗରେ ଜନ ଉତ୍ତମ ।୨୧୬।

କାକୋସ୍ତ ଭାବରେ ବଚନ କହି ।
ସାଂସାରିକା ମତେ ହୋଇ ଦେଉଥିଲ ।୨୧୯।
ଗୁପତ ଭାବେ ଯେ ଖେଳୁଣ ଥିବ ।
ଗରୁଡ଼ ତାକୁ ଅପି ଜେଣିଥିବ ।୨୧୮।
କଳଙ୍କି ରୂପକୁ ଅଛଇ ଚିହ୍ନି ।
ଗୁପତେ ଅଛଇ ପ୍ରକାଶ ନୋହି ।୨୧୯।
ଅନେକ ଦାନେବ ପାଦେ ମର୍ଦ୍ଦିବ ।
ଶୁଣ ରୁକ୍ମଣୀ ଗୋ ଅଟଇ ଧ୍ରୁବ ।୨୨୦।
ଯେ ତାହାଙ୍କୁ ଦଣ୍ଡବତ କରଇ ।
ବହୁତ ଅପ୍ରାଧ ସେ ନର ପାଇ ।୨୨୧।
କଳ୍କୁ ଦନ ସେହି ଗୁପତ ହେବ ।
ଗୁପତେ ଅନେ୍ୟ ସେ ଉଦେ ହୋଇବ ।୨୨୨।
ହେମଚନ୍ଦ୍ର ଦାସ ପାଞ୍ଚ ସଙ୍ଗରେ ।
ଡୁ ମୋର ସାର କହିଲି ବସ୍ତୁରେ ।୨୨୩।
ପାତ୍ୱଦ୍ୱୀପରେ ବେଢ଼ଜନ ଜାଣ ।
ପାରେଶ୍ୱର ଲେକନାଥ ପ୍ରମାଣ ।୨୨୪।
ଯେ ପାତ୍ୱଦ୍ୱୀପରେ ଅଚ୍ୟୁତ ଧ୍ୟାଇ ।
ଗୁପତ ଭାବେ ସେ ଠାବେ ଅଛଇ ।୨୨୫।
ଶ୍ୱେତ ହସ୍ତୀଟି ସେହିଠାରୁ ଜାଣ ।
ଶୁଣ ରୁକ୍ମଣୀ କହିଲୁଂ ଫେଇଣ ।୨୨୬।
ସେ ଶ୍ୱେତ ହସ୍ତୀ ପିଠିରେଣ ସଙ୍ଖ ।
ସତ୍ୟାନନ୍ଦ ବଜେ ସେହିଟି ମୁହିଂ ।୨୨୭।
ଭକତମାନେ ମୋ ସଙ୍ଗତେ ଥିବେ ।
ହଜ କଲା ଯେନ ଦେଢ଼େ ହୋଇବେ ।୨୨୮।
ବଟଲେ ମଲ୍ଲିକା କଳଙ୍କୀ ତନ ।
ତନ ପଦ୍ମ ଏ ଜୋଡ଼ିବେ ମେଦନୀ ।୨୨୯।
ହଣି ଅର୍ଦ୍ଧରେ ଶବଦ ଶୁଭିବ ।
ଭକତମାନଙ୍କୁ ଚେତା ହୋଇବ ।୨୩୦।
ଛାଡ଼ିବେ ଯେ ଯାହା ଆସନମାନ ।
ଯଦେ୍ ଭଗତ ମୋ ସଙ୍ଗେ ପ୍ରମାଣ ।୨୩୧।

ବଟ ଛେଦନ ଗୋ ହୋଇବ ସହି ।
ଜାଲଗିର କ୍ଷେତେ ନଥିବେ କେହି ।୨୩୨।

ଶ୍ୱେତ ଅଶ୍ୱ ହସ୍ତୀ ଥିବେ ମଣ୍ଡାଇଂ ।
ଶୁଣ ରୁକ୍ମଣୀ ଗୋ କହିଲୁଂ ଫେଇ ।୨୩୩।

ଶୁଣ ସନ୍ଥଜନ ମନ ଲଗାଇ ।
ଅଚ୍ୟୁତ ଦାସ ପଦ ସେବୁ ଥାଇ ।୨୩୪।

ଶୁଣ ସୁଦାମ ସଖା ନିରନ୍ତରେ ।
ଶ୍ରୀମୁଖୁଂ ଶୁଣିଛୁ କର୍ଣ୍ଣ ପଥରେ ।୨୩୫।

ଶୁଣିଲକୁ ପିନା ଲେଖିଲ ମୁହିଂ ।
ଅଚ୍ୟୁତେ ଯାହା ପ୍ରେମ ପଞ୍ଜରଇଂ ।୨୩୬।

## ॥ ଷଷ୍ଠ ପଟଳ ॥

ଶୁଣ ରୁକ୍ମଣୀ ମନଚିତ୍ତ ଦେଇ ।
ବସ୍ତୁ କ୍ଷେତ୍ର ବାହାର ହେବ ମୁହିଂ ।୧।

ଶ୍ୱେତ ପୀତ କୃଷ୍ଣ ଲୋହିତ ଜାଣ ।
ପ୍ରକାଶ ହୋଇବୁ ଆତ୍ମ ଆରେଣ ।୨।

ଅନନ୍ତ ବାସୁଦେବ ବୋଲି କହି ।
ନିଷ୍କଳ ବସ୍ତୁ ଗୋ ଜାଣିମ ସେହି ।୩।

ସେହି ଠାବରୁ କଳର୍ଣ୍ଣି ବାହାର ।
ନିଷ୍କଳ ବସ୍ତୁ ଯେ ବ୍ରହ୍ମସ୍ଥଳର ।୪।

ସେହି ସ୍ଥାନରୁ ବ୍ରହ୍ମ ଉତ୍ପତ୍ତି ।
ଗୃପତେ ଖଣ୍ଡଗିରିରେ ଯେ ଥିତି ।୫।

କର ମୋଡ଼ଣ ଯେ ଖେଳ ହୋଇବ ।
ଯୋଗ ଟଳନ୍ତେ ମୋ ଅଳସ ଅଙ୍ଗ ।୬।

ଅନେକେ ଜନ୍ତୁଂ ହେବୁଂ ବାହାର ।
ସ୍ନାନ କରନ୍ତୁଂ ଯେ ବିନ୍ଦୁ ସାଗର ।୭।

ସେ ସ୍ଥାନ ବିନୁଂ ଆନ ସ୍ଥାନ ନାହିଂ ।
ଶୁଣି ରୁକ୍ମଣୀ ପ୍ରସନ୍ନଚିତ୍ତ ହୋଇ ।୮।

ରୁକ୍ମଣୀ ବୋଇଲେ ଶୁଣ ଗୋସାଇଂ ।
ସଙ୍କେତ କେମନ୍ତେ ଜାଣିମି ମୁହିଂ ।୯।
ଶୁଣ ରୁକ୍ମଣୀ ଦେଇ ମନଚିତ୍ତ ।
ଛଡ଼ ରାଜା ହେଲେ ହେବ ଅନର୍ଥ ।୧୦।
ରାମଚନ୍ଦ୍ର ଠାରୁ ସେ କୁଳ କ୍ଷୟେ ।
ତାହାର ନନ୍ଦନ ହୋଉ ଉଦୟେ ।୧୧।
ଶିର କେଶଗ୍ରି ଥିବ ରାଜା ହୋଇ ।
ଦୋଷରୁ ବନ୍ଧନ ହୋଇବ ସେହି ।୧୨।
ନୃପତ ଥାଇ ମେ ଆନ ନୃପତ ।
ଗୋଲକୁଣ୍ଡା ହୋଇଥିବେ ସ୍ୱେ ଜାତ ।୧୩।
ଯେ ରାଜା ଥାଉଂ ପୁଣି ହେବେ ରାଜା ।
ଦେବତାମାନେ ହୋଇବେ ଅପୂଜା ।୧୪।
ବ୍ରାହ୍ମଣ ଜଣେ ପୁଣି ରାଜା ହେବ ।
ତେର ଦନ ସେ ପାଟରେ ବସିବ ।୧୫।
ଉତ୍ତରୁଂ ହୁଡ଼ମ୍ବା ଆସିବେ ବାହି ।
କେଶଗ୍ରି ମୁକୁଳା ହୋଇବେ ସଖି ।୧୬।
ପୁଣି ପାଳଟି ସେ ରାଜା ହୋଇବେ ।
ଅଣତରଣ ଅଙ୍କ କଟାଇବେ ।୧୭।
ଦୁର୍ଭିକ୍ଷ ପଡ଼ିବ ରାଜ୍ୟେ ରାଜ୍ୟେଣ ।
ଖାଇବାକୁଟି ନ ମିଳିବ ଅନ୍ନ ।୧୮।
ଅନେକ ହୋଇ କଥାଏ ହେବ ।
ସତ୍ୟରେ ଆଇଂ ରାଜା ଏକ ହେବ ।୧୯।
ଅଣତରଣ ଅଙ୍କ ସେ କଟାଇ ।
ହାବ୍ସିମ ସଖୀ ଆସିବଟି ବାହି ।୨୦।
ଶିର କେଶଗ୍ରି ସେ ହେବ ଗୋପ୍ୟାନ ।
କୁଟରେ ରାଜା ହେବ ଆନ ଜନ ।୨୧।
ରାଜା କରିବାକୁ ତାକୁ ସାକ୍ଷାତ୍ ।
ଏହା ରାନୁସିରେ ହେବ ଅନର୍ଥ ।୨୨।
ଏ ରାଜା ଅଣସିଶ ଅଙ୍କ ଠାଇଂ ।
କବୁଲ ମଲିକା ଆସିବେ ବାହି ।୨୩।

ହେଠାବେ ହେବେ ଶୂନବନ୍ଧ ଥିବ ।
ପୁଣି ହିଂ ନବବଂଶ ବଢ଼ିବ ।୨୪।

ନବବଂଶଠାରେ ନାହିଂଟି ପାଠ ।
ଏଥି ଭିତରେ ହେବ ହତ୍ତ୍ଵ ଦେହ ।୨୫।

ଛତ୍ର ରାଜା ସତୀ ଏରୂପେ ହେବେ ।
ସତ୍ୟ ବଚନ କହିଲୁଂ ଯେ ଏବେ ।୨୬।

ତରକ ବଚନ ନୁହଇ ଏହି ।
ଏ ବଚନ ପଦେ ଛୁଡ଼ିବୁ ନାହିଂ ।୨୭।

ସେଠାବେ ପୁଣ ଶୂନବନ୍ଧ ହେବ ।
ପୁଣି ହିଂ ନବବଂଶ ବଢ଼ିବ ।୨୮।

ଦାରୁ ସ୍ଵରୂପ ଯେ ହୋଇବ ଭଗ୍ନ ।
ନୀଳଗିରି କ୍ଷେତ୍ରେ ନଥିବ ବ୍ରହ୍ମ ।୨୯।

ନୀଳାଦ୍ରି ଛାଡ଼ି ପଳାଇବ ମୁହିଂ ।
ଏ ଭେଦ ମୋର କେ ଜାଣିମ ନାହିଂ ।୩୦।

ସନ୍ଧ୍ୟା କାଳରେ ନିଜରୂପ ଧରି ।
ଗମନ କରଇ ଭୁବନେଶ୍ଵରୀ ।୩୧।

ଦ୍ଵାରରେ ଲିଙ୍ଗ ଦରଶନ କରେ ।
ଯାଇଂଣ ପ୍ରବେଶ ନୃସିଂହ ଠାରେ ।୩୨।

ପଞ୍ଚଭୂତ ମଧ୍ୟେ ବସିବ ଗୁହି ।
ରୁକ୍ମଣୀ କୋଇଲେ ବୁଝା ଗୋସାଇଂ ।୩୩।

ରାମଚନ୍ଦ୍ର ଦାସ ସୁମନ ଶିଷ୍ୟ ।
ପୁଣି ପଟ୍ଟରେ ଆଗତ ଭବିଷ୍ୟ ।୩୪।

ଶୁଣ ରାମଚନ୍ଦ୍ର ସୁମନ ଦେଇ ।
ଯାହା କହୁଛୁ ସଙ୍ଗେ ଥିବୁ ଦେହି ।୩୫।

ମୋହ ସଙ୍ଗତେ ମୁହିଂ ପଞ୍ଚଜନ ।
ଅନନ୍ତ ଯୁଗୁଂ ଏମନ୍ତ ବିଧାନ ।୩୬।

ମୋହ ସଙ୍ଗାରେ ଯେ ମୋକ୍ଷଟି ଗୁହି ।
ଯଶୋବନ୍ତ ଜଣେ ମୋର ଅଛଇଂ ।୩୭।

କଳାରଣ୍ଠରେଟି ବେନି ଅଚ୍ଛନ୍ତି ।
ଦେଉଳ ପଛରେ ଲଦି ଆଅନ୍ତି ।୩୮।

ଅର୍କ ବଟରେ ଖୃଣ ଜଣ ଚନ୍ଦ୍ର ।
ଟେଲୁ ଅଛନ୍ତି ସେହୁ ବଗେ ଜାଣ ।୩୯।
ଏରବଟଠାରେ ଅଛନ୍ତି ବୁଦ୍ଧ ।
ଗୁପତେ ଅ.ଅନ୍ତି ଚନ୍ଦ୍ରା ନ ଦେଇ ।୪୦।
କଳଙ୍କି ରୂପକୁ ଚନ୍ଦ୍ରନ୍ତି ନଡ ।
ସମସ୍ୟା ବନ୍ଧରେ ସେହୁ ସେ ମାଡ ।୪୧।
ଢନ ଫର୍ଥରେ ନେନ ବେନ ଜଣ ।
ବଟ ମୂ..ରେ ତାହାଙ୍କ ଆଶ୍ରମ ।୪୨।
ଗୁପତ ହୋଇ ଅଛନ୍ତି ସେଠାରେ ।
ଗୌଣ୍ଡ ଶତଦଳ ଚନ୍ଦ୍ର ତାଠାରେ ।୪୩।
ଶୁଣ ରୁକୁଣୀ ମନଚଉ ଦେଇ ।
ଆଗତ ଭବିଷ୍ୟ କହୁଲୁଂ ଫେଇ ।୪୪।
ଷଷ୍ଠ ପଟଳ ହୋଇଲକ ଶେଷ ।
ଗୀତରେ ଭଣିଲେ ଅଚ୍ୟୁତ ଦାସ ।୪୫।

## ॥ ସପ୍ତମ ପଟଳ ॥

ରୁକ୍ମିଣୀ ବୋଇଲେ ଶୁଣ ଗୋସାଇଂ ।
ଶ୍ରୀମୁଖ ଆଜ୍ଞା କହ କହୁ ଫେଇଂ ।୧।
ଅ.ହୁର କଥାଏ ଶୁଣୁ ମିତଣୀ ।
ମନ ହେତୁକର ବୁଝ ହେ ପୁଣି ।୨।
କୁଣଭଦ୍ରାର ଉ୍ତର ଭାଗରେ ।
ବଳମୁଖ କାଳଂଜନ ବେହାରେ ।୩।
ଭଂଂରଣଖ ଢ଼ଉର ଭାଗରେ ।
ଘୁକାଣ ଗୋପ୍ୟାନେ ଅଛୁ ସେଠାରେ ।୪।
ଦଧିମୁଙ୍କ କଞ୍ଚଣ ସୁଶୋଦନ ।
ବାଲ୍ଅନ୍ତା ଶଙ୍ଖେଶ୍ୱର ଠାବେଣ ।୫।
ଗୋପାଳ ମାହାନ୍ତି ବ୍ରାହ୍ମଣ ଘର ।
ଏ ଚ୍ୟେର ଜନ୍ମ ଗୃହ ପାଟକର ।୬।
ଧରମ ବୋଲଛି ନାମ ଯାହାର ।
ମ୍ଲେଚ୍ଛମାନଙ୍କୁ କରବ ସଂହାର ।୭।

ବସନ୍ତ ତାଳନ୍ତୁ ମହାନ୍ତ ସଙ୍ଗେ ।
ଖଣ୍ଡଗିରିରେ ଏ ଅଛନ୍ତି ରହି ।।୮।
ଭାର୍ଗବୀ ନଦୀ ପଶ୍ଚିମ ଭାଗେଣ ।
ନଳ ନୀଳ ଜାମ୍ବେବ ହନୁମାନ ।୯।
ପଞ୍ଚସଖା ଜନ୍ମ ପଞ୍ଚ ସ୍ଥାନରେ ।
ଜନମୁ ଥିବେ ଉତ୍ତମ କୂଳରେ ।୧୦।
କାଙ୍ଗର ସେହୁ ହନୁମନ୍ତ ସେହି ।
ବହ୍ମାଣି ରୂପରେ ନଳନ୍ତି ଥାଇ ।୧୧।
ଚଇତନ ନାମ ତୁମ୍ଭେ ଥିବ ବହି ।
ପାଦ୍ମନ୍ତରା ପଦ ଥିବ ଯୋଗହୋଇ ।୧୨।
ଏମନ୍ତେ ପଞ୍ଚସ୍ଥାନେ ଥିବ ତୁମ୍ଭେ ।
ତୁମ୍ଭଙ୍କ ସଙ୍ଗେ ପେନଥିବୁ ଅମ୍ଭେ ।୧୩।
ବ୍ରାହ୍ମଣ ଜଣେକି କ୍ଷେତ୍ର ପଦାରେ ।
କୁମୁଦ ରହିଛି ଅଛୁ ସେଠାରେ ।୧୪।
ଧାମ ନଗ୍ରେ ଜନ୍ମ ହେବ ନୃପତି ।
ପଦ୍ମେ ଭଗତଟି ହେବେ ଉତ୍ପତ୍ତି ।୧୫।
କପି ଶାସନେ ଦୁର୍ଗା ଜନମିବେ ।
ହନୁମନ୍ତ ରହିଥିବ ସେ ଠାବେ ।୧୬।
ଏକାବର୍ତ୍ତୀ ଚକଡ଼ାରେ ସେ ଦୁଇ ।
ତାରକ ବ.ଲୀ ଜନମନ୍ତି ସେହି ।୧୭।
ଭୈରବନାଶ୍ୱର ଦକ୍ଷିଣ ଭାଗରେ ।
ରହି ଅଛନ୍ତି ବଟବୃକ୍ଷ ମୂଳେ ।୧୮।
ଗ୍ରାମରେ ବାହା'ର ହୋଅନ୍ତି ସେହୁ ।
ଦେଖିଲେ ଲୋକ ନ ଦେଖନ୍ତି କେହୁ ।୧୯।
ଜଣେକ ଅଛୁ ଉତ୍ତରଠାରେ ।
ଧୁମାକ୍ଷ ରହିଛି ଅଛୁ ସେଠାରେ ।୨୦।
ଭୈରବନାଶ୍ୱର ଶ୍ୟାମକୁଣ୍ଡଠାରେ ।
ପବନ ନନ୍ଦନ ଭଗତ ମେଳେ ।୨୧।
ଗଙ୍ଗା କୂଳ ଦେଇ ଉତ୍ତର ଭାଗରେ ।
ସପ୍ତବାଳ-ଧାର-ମାନ୍ତି ବହନେ ।୨୨।

ଶ୍ରୀରାମପୁର ନଅରକଣ୍ଠାରେ ।
ସବଚେଯ୍ୟୁ ବୋଲି ଜଣେ ବହୁରେ ।୨୩।
ଶ୍ରୀକୃଷ୍ଣ କହନ୍ତି ଶୁଣ ଗୋ ସଖା ।
ସଣସ୍ତ ଚେଫ୍ରୀତ ଦେଉଛୁ କହୁ ।୨୪।
ପୂର୍ବେ ହେଡେଡେକଥା କହୁଛୁ ମୁହିଂ ।
ମନରେ ହେତୁକର ବୁଝି ତୁହି ।୨୫।
ଦ ଇଗ୍ଭୀ ଅଙ୍ଗରେ କହଲ ଜାତ ।
ଶୁଣ ଚୁକୁଟୀ କହୁଅଛୁ ସତ ।୨୬।
ଏଥିରୁ ଯେବେ ଶୂନବନ୍ଧ ଥିବ ।
ସନ ଡେରଣ ଡେର ହାଲ ହେବ ।୨୭।
ମନ ଡେରଣରୁ ନାହିଁଟି ଘାଠ ।
ସବୁ ଅନେଷ୍ଟ ହୋଇଯିବ ଘାଟ ।୨୮।
ଶ୍ରୀମୁଖ ବଚନ ଅନ୍ୟଥା ନୋହି ।
ପଦ ପଦ କରି ଦେଲି ବତାଇ ।୨୯।
ଶୁଣ ଚୁକୁଟୀ ହେତୁ ଚନ୍ଧ ଦେଇ ।
ସପ୍ତମ ପଟଳ କହିଲି ଫେଇ ।୩୦।
ରାମଚନ୍ଦ୍ର ଦାସ ଭଲପ୍ସେ କର ।
ଗୀତରେ କହିଲି ଅଚ୍ୟୁତ ଗୁରୁ ।୩୧।

## ।। ଅଷ୍ଟମ ପଟଳ ।।

କହନ୍ତି ଶ୍ରୀକୃଷ୍ଣ ଶୁଣ ଗୋ ସଖା ।
ଅଚ୍ୟୁତ ବଚନ ଧର୍ମ ଶୁଣଇ ।୧।
ଶ୍ୱେତ ଅରଖ ପୂର୍ବଭାଗୁଂ ଯାଇ ।
ମୂଳ ଖଣ୍ଡିଏ ଉପାଡ଼ିବୁ ତୁହି ।୨।
ଶ୍ୱେତ ଅଙ୍ଗସାନ୍ତ ଗୋର୍ଚନା ଆଣି ।
କୁଙ୍କୁମ କର୍ପୁର ଅଣିମୁଂ ପୁଣି ।୩।
ସମଭାଗ କରି ଦଳିବୁ ସବୁ ।
ଆଗଣା କପୋଲେ ଚଡ଼ା ଦେଜନ୍ମୁ ।୪।
ଆବର କଥାଏ କହୁଛୁ ଧର୍ମ ।
ହେତୁ କରଥାଅ ଆମ୍ଭ ବଚନ ।୫।

ଅମ୍ବିଳଢ କେଶ୍ୱ ଓପାଡ଼ି ଆଣି ।
ବସ୍ତୁ ଦେଇଣ ଚପୁଡ଼ିବ ପାଣି ।୬।
ତମ୍ବା ପାଦ୍ଦିକ ଅଥବା ଲୁହାରେ ।
ମରଚ ପେଜ ଦଳବ ସଧୀରେ ।୭।
ଉଜ୍ଜଳ ଦଶିଲେ ନୟନେ ପେଜ ।
ଅନ୍ଧାର ଆଲୁଅ ଦଶିବ ପୁଣି ।୮।
ଆବର ମନ୍ତ୍ରେକ ଅଛଇ ପୁଣ ।
ତୋତେ କହୁଚ ହେତୁକର ସ୍ୱମ ।୯।
ସୂର୍ଯ୍ୟ ଘରରେ ଦେବଙ୍କୁ ଖୋଜିବ ।
ମନ ସୂତ୍ରରେ ଲକ୍ଷ୍ୟେ ଲଗାଇବ ।୧୦।
ମନ ମନ୍ତ୍ରରେ ହେତୁକୁ ସୁମର ।
ଆସ୍ୱାଦନରେ ଥିବ ଦୃଷ୍ଟି କରି ।୧୧।
ସୂର୍ଯ୍ୟ ସୁମର ବାମ ପାଦ ଧୂଳି ।
ସୂର୍ଯ୍ୟଙ୍କୁ ଗୃହଂସେ ଧୂଳିକ ତୋଳି ।୧୨।
ସୂର୍ଯ୍ୟଙ୍କୁ ସୁମର ମାଗିବୁ ଉଦ୍ଧ ।
ନିଜ ମଣ୍ଡଳରେ ପେଜମୁ ନେଇଂ ।୧୩।
ଲକ୍ଷେ ଯୋଜନେ ବାରଣ ଜାଣିମୁ ।
ଗୁପତ ପ୍ରଘଟ ସବୁ ଶୁଣିମୁ ।୧୪।
ମଦାଗ୍ନି ଠାବରୁ ପୁରୁଷୋତ୍ତମ ।
ଗୁପତ ପ୍ରଘଟ ସବୁ ଚହ୍ଲିମ ।୧୫।
ଭଗତମାନଙ୍କ ଗମନ ଭୁଇଂ ।
ଏଥିମଧ୍ୟରେ ଭକ୍ତ ଥିବେ ରହି ।୧୬।
ଜନମ ହୋଇଣ ଥିବେ ଗୁପତେ ।
ପ୍ରଘଟ ନୋହୁଣ ଥିବେ ନିଶ୍ଚିନ୍ତେ ।୧୭।
ମନ ମନ୍ତ୍ରରେ ସେ ଧୂଳି ବୋଲିଲେ ।
ପ୍ରତକ୍ଷେ ସବେ ଦେଖିବ ନଗ୍ରେଲେ ।୧୮।
କେ କେଉଂ ରୁପେଣ ଖେଳୁଅଛନ୍ତି ।
ସ୍ୱେ ସ୍ୱମ ଦାସ ଦେଖି ପ୍ରଢ ପ୍ରଢ ।୧୯।
ଏମନ୍ତ ହୋଇବ ଶୁଣ ବଚନ ।
ଭଗତ ଜନମି ଥିବେ ଗୋପ୍ୟାନ ।୨୦।

ଘୋର ଅନୀତ ଯେ ହୋଇବ ମହୀ ।
ସବୁ ଲୁଚିବ ମହାଭୟ ପାଇ ।୧୨।
ଅଧର୍ମ ପଥ ଆବୋରିବେ ନର ।
ଅତ ପ୍ରବଳ ହୋଇବେ ଅପାର ।୨୨।
ରାମଚନ୍ଦ୍ରଠାରୁ ଏ ବଂଶ କ୍ଷୟେ ।
ବୀର କେଶରୀ ହୋଇବେ ଉଦୟେ ।୨୩।
ସେହୁଠାରୁ ହୋଇ ବଂଶ ନପାତ ।
ରୁକୁଣୀ ଆଗେ କହୁଛନ୍ତି ସତ ।୨୪।
ଅତ ଅନୀତ କରିବେ ନୃପତ ।
ଗର୍ଭିଣୀ ସ୍ତ୍ରୀଙ୍କ ଛେଦବେ ଘାତ ।୨୫।
ବେଦ ବେତାଳ ଯେ ତର୍କ ହୋଇବେ ।
ଅଭକ୍ଷ ଜନଙ୍କ ହାଥୁଂ ଭକ୍ଷିବେ ।୨୬।
ଗାରେଡ଼ି ମନ୍ତ୍ର ବହୁତ ସାଧିବେ ।
ଅପ୍ରାଧ କରି ଅକର୍ମ ଭୁଞ୍ଜିବେ ।୨୭।
ଦୋଷକୁ ଦଣ୍ଡ ପାଇବେ ରାଜନ ।
ଆପଣା ଦୋଷୁଂ ପାଇବେ ବନ୍ଧନ ।୨୮।
ପାତ୍ରଗଣମାନେ ମେଳ କରିବେ ।
କୁଚକ୍ର କରିଣ ଧରାଇ ଦେବେ ।୨୯।
ଧରାପଡ଼ିବେ ଓଡ଼ିଶା ନୃପତ ।
ବେଲକୁ ବେଳ ହୋଇବ ଅନୀତ ।୩୦।
ସତ ଧର୍ମ କଥା ମିଛ କରିବେ ।
ଅଧର୍ମେ ପଡ଼ି ମିଥ୍ୟା ଆଚରିବେ ।୩୧।
ନୀଚ ଲୋକେକି ହେବେ ବଳଅାର ।
ଖଚ କହୁଣ ବୁହାଇବେ ଘର ।୩୨।
ରାଜା ବନ୍ଧନେ ପଡ଼ିଥିବେ ସହୀ ।
ଶ୍ରୀବତ୍ସ ବନ୍ଧମ କେଶରୀ କହୁଂ ।୩୩।
ରାଜନୀତମାନ କିଛୁ ନଥିବ ।
ଧରାହୋଇଣ ଦୁଃଖ ପାଉଥିବ ।୩୪।
ଅନ୍ୟନକ ହୋଇ କଥାସ୍ତେ ହେବ ।
ଶୁଣ ରୁକୁଣୀ କହୁଅଛୁ ଧ୍ରୁବ ।୩୫।

ସେଠାରେ ଯେବେ ଶୁନବନ୍ଧ ଥିବ ।
ନଷ୍ଟେ ଫଳାଫଳ କାର୍ଯ୍ୟ ଲଭିବ ।୩୬।
ବାରମାତ୍ରା ମଧ୍ୟେ ବୁଝିବ ଏହା ।
ଯନ୍ତ୍ର ମଧ୍ୟେ ହର ଗୁଣିମ ଏହା ।୩୭।
ଯେବେ ସେ ଶୂନବନ୍ଧ ନୋହୁଥିବ ।
ନୋହିବ ବୋଲି ସ୍ୱେ ଶୂନ୍ୟେ କହିବ ।୩୮।
ଶୁଣ ରୁକ୍ମଣୀ ହେତୁ ମନ ଦେଇ ।
ଅଷ୍ଟମ ପଟଳ କହିଲି ଫେଇଂ ।୩୯।
ଶୁଣ ରାମ ଅତି ଗୋପ୍ୟାନ ଏହା ।
ଗୁରୁ ପାଠ କହେ ଅଚ୍ୟୁତ ଯାହା ।୪୦।

## ॥ ନବମ ପଟଳ ॥

ଶୁଣ ରୁକ୍ମଣୀ ଏକ ମନହୋଇ ।
କଥାସ୍ୱେ ମନରେ ପଢ଼ିଲି ତହିଂ ।୧।
ପଣ୍ଡିତେ ବଣା ନୋହି ଭଲେ ଚହ୍ନି ।
ନାମକୁ ଥାପିବ ଯନ୍ତ୍ର କରଣ ।୨।
ଯନ୍ତ୍ର ଭିତରେ ଅକ୍ଷର ସ୍ଥାପିବ ।
ଦ୍ୱାଦଶ ମାତ୍ରାମାନ ବସାଇବ ।୩।
ଅଙ୍କ ଥାପି ଶୂନ ବାମେ ବଢାଇଂ ।
ହେଲି ନୋହିଲି ସେ ବୁଝ ସେଠାଇଂ ।୪।
ହଡ଼ମ୍ବି ଶୂନେ ଯେ ଆସିବେ ବନ୍ଧୁ ।
ତୁରୁକ ବରଗି ଯିବେ ପଳାଇ ।୫।
ଶୋଇଲି ଶେଯ ଗୁଡ଼ ପଳାଇବେ ।
ଅଚ୍ଛନକ ସେ ଯେ ମାଡ଼ି ବସିବେ ।୬।
ଉଦୟ ବେଳେ ଯେ ପୋଟିଆସିବେ ।
ତୁରୁକ ବରଗି ପଳାଇ ଯିବେ ।୭।
ରାଜା ବନ୍ଧନ ଫିଟିଯିବ ସଖି ।
ଗୁପତ ହେବେ ଯେ ରାଉତ ଯାଇଂ ।୮।
ମୋହର ଅଙ୍କୁଟି ନଥିବା ଯାସ୍ୱେ ।
କେବେହେଂ ସେହୁ ରାଜୁତ ନ ହୋସ୍ୱେ ।୯।

ବେଲ କାଳକୁ ରଖିଅଛୁ ମୁହିଂ ।
ମୁହିଂ ତାହାକୁ ରାଜା କରବଇଂ ।୧୦।
ରାଜାର ମରନ ସର୍ବେ ଜାଣିମେ ।
ଗୁପତ ହୋଇ ରାଜା ରହୁଥିବେ ।୧୧।
ହୁଡ଼ମ୍ବି ମାଡ଼ ବସିବେ ରାଜୁତ ।
କୂଟେ ରାଜା ନକରବେ ସାକ୍ଷାତ ।୧୨।
ପରଜା ବହୁତ କଷ୍ଟ ପାଇବେ ।
ଆପଣା ଦୋଷୁଂ ଘାଣ୍ଟି ହେଉଥିବେ ।୧୩।
ହାରାମ ବୋଲ ଯେ ମାଡ଼ ଆସିବେ ।
ଗୋରୁ ମନସ କାଟି ଖାଉଂଥିବେ ।୧୪।
ଯେବେ କହୁବେ ହୁଡ଼ମ୍ବିକ ଆସି ।
ଗ୍ରାମାନକେ ଲଗାଇବେ ଫାଶି ।୧୫।
ଏକାକାର ସବୁ ଲଗିବ ସଙ୍ଗ ।
ଜାତ କୂଳ କଛୁ ରହୁବ ନାହିଂ ।୧୬।
ଗୋରୁ ବ୍ରାହ୍ମଣ ଖାଇବେ ସିଝାଇଂ ।
ବ୍ରାହ୍ମଣ ଗୃଣ୍ଡାକୁଂ ବାରଣ ନାହିଂ ।୧୭।
ଏକା ପଙ୍ଗତେ ଯେ ଅନ୍ନ ଭୁଞ୍ଜିବେ ।
ମଦ ମାଉଂସେ ପୁଣ ଭୋଳ ହେବେ ।୧୮।
ବେଲକୁ ବେଲ ଯେ ହେବ ଅନୀତ ।
କାହାର ଆଉ ନ ରହୁବ ଜାତ ।୧୯।
କେ ନଣ ମୋଡ଼ ବସିଥିବେ ସଙ୍ଗ ।
କରୁଲ ପୁଣି ଅସିବେଟି ବାହୁ ।୨୦।
ଦୁଇ ପ୍ରହରେ ହୋଇବ ପ୍ରବେଶ ।
ପୃଥ୍ୱୀ କମ୍ପିବ ନାଶିବ ଅବଶ୍ୟ ।୨୧।
ପର୍ବେତକ ସନ୍ୟ ଯେ ମାଡ଼ ଅସିବେ ।
ମହାନଦୀ ପାଣି ଦେଖି ଶୁଖିବେ ।୨୨।
ଗୋରୁ ମନଷ୍ୟକୁ କାଟି ଖାଇବେ ।
ଅସିଝା କଞ୍ଚା ମାଏଂସ ଭକ୍ଷିବେ ।୨୩।
ରାଜ୍ୟରେ ରାଜା ନଥିବେଟି କେହୁ ।
ନୀଳାଦ୍ରି ଛାଡ଼ ପଳାଇବ ମୁହିଂ ।୨୪।

ଦେବତାମାନେ ଗୋପ୍ୟାନ ହୋଇବେ ।
ହାରାମ ରାଜ୍ୟ ଛାଡ଼ି ପଳାଇବେ ।୨୫।
ଇନ୍ଦ୍ର ନ ପାଳବେ ଶସ୍ୟ ନୋହିବ ।
ନିର୍ଘାତ ପ୍ରାଏ ପବନ ବହିବ ।୨୬।
ଦୁର୍ଭିକ୍ଷ ପଡ଼ିବ ରାଜ୍ୟେ ରାଜ୍ୟେଣ ।
ପାପକୁ ହେବ ଅକାଳ ମରଣ ।୨୭।
ଆମ୍ଭେ ଲୁଚିଥିବୁ ଖଣ୍ଡଗିରିରେ ।
ଭକତ ଥିବେ ଯେ ଯାହା ଠାବରେ ।୨୮।
ହାରାମ ଯେ କରୁ କରୁଥିବ ।
କଳି ଅସିଲେ ସବୁ ବୁଡ଼ିବ ।୨୯।
ଧାଡ଼ି ଲଗିବ ଦେବତାମାନଙ୍କୁ ।
ବଡ଼ ଘଞ୍ଚ ହୋଇଥିବ ଆମ୍ଭଙ୍କୁ ।୩୦।
କତଲ କଳଙ୍ଗା ମଲ୍ଲକା ଧନ ।
ମେଲନ କଲଙ୍ଗେ ହେବ ମିତଣି ।୩୧।
ସବ ଭେଦକୁ ପ୍ରାସ୍ତେକ କରିବୁଁ ।
ନିଜ ମୂର୍ତ୍ତିକୁ ପ୍ରକାଶ କରିବୁଁ ।୩୨।
ଦିବସେ ଘୋଟିବ ଘୋର ଅନ୍ଧାର ।
ଖଡ଼ଗ ବୁଲାଇ ପୃଥ୍ୱୀ ଭିତର ।୩୩।
ତବଦ ହୋଇବେ ସଚରାଚର ।
ବସିଲ ଠାବରେ ଭେଳକ ନର ।୩୪।
ରାଜ୍ୟରେ ରାଜା ନଥିବ ମିତଣି ।
ଶୁଣ ରାମଚନ୍ଦ୍ର ଅଚ୍ୟୁତ ବାଣୀ ।୩୫।

## ॥ ଦଶମ ପଟଳ ॥

ଶୁଣ ରୁକ୍ମଣୀ ଶୁଣ ମନ ଦେଇ ।
ବିଶେଷ କଥା କହିବା ଫିଟାଇ ।୧।
ଭୋଗ୍ୟ କରିବେକ ଯେ କେତେ ମଣ୍ଡି ।
ଶୁଣ ରୁକ୍ମଣୀ ମନଚିତ୍ତ ଦେଇଂ ।୨।
ବରଗି ଯନ୍ତୁଂ ପଳାଇବେ ଛାଡ଼ି ।
ହିନ୍ଦୁର୍ମ୍ମି ଶାସନ ବସିବେ ମାଡ଼ି ।୩।

ରାଜା କରିଥିବ କପଟ ମତ ।
ହିନ୍ଦୁମାନ୍ଙ୍କ ଅଛନ୍ତି ବୁଡ଼ିବ ଯତ ।୪।
ସାତ ବରଷ ଛମାସ ପ୍ରମାଣ ।
ଓଡ଼ିଶା ଭୋଗ୍ୟ କରିବ ରାଜନ ।୫।
ସାତ ବରଷ ଛମାସ ପୂରିଲେ ।
ହାବ୍ସିମ ପୃଥ୍ୱୀକି ନେବ ବଳରେ ।୬।
ଗୋଲକୁଣ୍ଡାଜାତ ହୋଇବେ ମହୀ ।
କାହାର ଜାତି ସେ ରହିବ ନାହିଁ ।୭।
ତିନ ବରଷ ତିନ ପକ୍ଷ ଜାଣ ।
ଓଡ଼ିଶା ରାଜ୍ୟକୁ ନେବ ରାଜନ ।୮।
ଏହାଙ୍କ ଭୋଗ୍ୟ ଯେ ସରିବ ମହୀ ।
କତଲ ପୁଣି ଆସିବଟି ବାହି ।୯।
କତଲ ଆସିଣ ମାଡ଼ ବଦିବ ।
ଅଢ଼ାଇ ବରଷ ଭୋଗ କରିବ ।୧୦।
ଅଢ଼ାଇ ବରଷ ସମ୍ପୂର୍ଣ୍ଣ ଦିନ ।
କଳିଙ୍ଗା ମାଡ଼ି ଆସିବଟି ପୁଣ ।୧୧।
ତେର ଦିନ ଭୋଗ କରିବ ମହୀ ।
ମଲ୍ଲିକା ପୁଣି ଆସିବଟି ବାହି ।୧୨।
ଅଇଲକ୍ଷଣି ଯେ ପୃଥ୍ୱୀ ଦେଖିମ ।
ବସିଲ୍ ଠାବ କେହି ନ ଜାଣିମ ।୧୩।
ସାତ ଦିନ ପୃଥ୍ୱୀ ଭୋଗ କରିବେ ।
ଦେବତା ପୃଥ୍ୱୀ ଛାଡ଼ି ପଳାଇବେ ।୧୪।
ଲଗିବ ରଣ ମାହା ଗରୁ ଝାଣ ।
ଅନେକ କବନ୍ଧ ନାଚିବେ ପୁଣ ।୧୫।
କଳପ ବଟ ଯେ ଛେଦନ ହେବ ।
ନୀଳଗିରି କ୍ଷେତ୍ର ଭଗ୍ନ ହୋଇବ ।୧୬।
ରୁକୁଣୀ ବୋଇଲ ଶୁଣ ଗୋସାଇଁ ।
କେମନ୍ତେ ଚକ୍ଷା ପଡ଼ିବଟି ଏହି ।୧୭।
ଗୁପ୍ତ ମାଣିକାରେ ଯେବଣ ଧନ ।
ଦୁଗ୍ଧ ଧାରକ ବୋଲିବ ପ୍ରଛନ୍ନ ।୧୮।

ପୂର୍ଣ୍ଣିମୀ ଦିନ ଯେ ବୃନ୍ଦ ଦେଖିବ ।
ନଷ୍ଟେ ଯୁଗ ଶେଷ ବୋଲି ଜାଣିମ ।୧୯।
ଗୋରୁ ମନୁଷ୍ୟ ଜନ୍ତୁ ମରିଯିବେ ।
ଏ ସଂକେତମାନ ଜାଣିମୁ ତେବେ ।୨୦।
ପାତାଳେ ବାସୁକୀ ଟେକିବ ଶିର ।
ଦିନ ବେଳ ଯେ ହେବ ଝଲମଲ ।୨୧।
ଦିଶାରେ ଶୂନ୍ୟ ଗର୍ଜ୍ଜନ ଶୁଭିବ ।
ଅଦଭୁତେ ହୋଇ ରଡ଼ି ଗୁଡ଼ିବ ।୨୨।
ଏ ରଡ଼ି ଶୁଣି ମନୁଷ୍ୟ ମରିବେ ।
ଯୋକାଏ ଶୁଣି କାଳ ହୋଇଯିବେ ।୨୩।
ଅଳ୍ପ ବୟସେ ହେବ ମହୀପାଳ ।
ଅଣତରିଶରେ ହୋଇବ ଗୋଳ ।୨୪।
ବୀରକେଶରୀ ଗୁପତରେ ଥିବ ।
ନୂଆ ଜଗତ ନବ ଦ୍ୱୀପେ ହେବ ।୨୫।
ଆମ୍ଭେ ଜନମ ହେବୁ ଯେତେବେଳେ ।
ସପତ ଋଷି ଥିବେ ସଙ୍ଗତରେ ।୨୬।
ଏମାନେ ସଂସାର ଭୋଗ କରିବେ ।
ମୋହର ନାମ ଯେ କହୁଅଛୁ ଏବେ ।୨୭।
ଉତ୍ତରଷାଢ଼ାରେ ଥିବେଟି ରହିଂ ।
ମଘାରେ ଧ୍ରୁବ ଥିବଟିକ ରହିଂ ।୨୮।
ଅଗସ୍ତି ହିଂ ଥିବ ଯେ ବିଶାଖାରେ ।
ସୂର୍ଯ୍ୟ ଥିବେଟି ଯାଇଂ କୃତ୍ତିକାରେ ।୨୯।
ଆଦିତ୍ୟ ଭୋଗ ଚନ୍ଦ୍ରମାରେ ଥିବ ।
ରୋହିଣୀରେ ରହିଥିବଟି ଧ୍ରୁବ ।୩୦।
ଗୁରୁ ଥିବେ ପୂର୍ବାଷାଢ଼ାରେ ଯାଇଂ ।
ଶୁକ୍ର ଯେ ଥିବେ ଅଶ୍ଳେଷାରେ ରହି । ୩୧ ।
ଚିତ୍ରାରେ ଜାଣ ଶନିଶ୍ଚର ଥିବ ।
ରାହୁ ଯେ ହସ୍ତାରେ ଯାଇଂ ରହିବ । ୩୨ ।
ଏମନ୍ତ କାଳରେ ଦିଶାର ଅର୍ଦ୍ଧେ ।
ଜନମ ହୋଇବୁ ଏ ବେଳ ବାଦେ । ୩୩ ।

ମାଘ ଶୁକ୍ଳ ଏକାଦଶୀ ଦିନ ।
କଳଙ୍କି ରୂପେ ହୋଇବୁ ଜନମ । ୩୪ ।
ନଦିଆ ଠାରୁ ଜାଣ କୁଣ ଦିନ ।
ଜନମ ମାନେବ ଦେହକୁ ଘେନ । ୩୫ ।
ଜନମ ହେବୁ ଯେ ଯାଜ ନଗ୍ରରେ ।
ପଞ୍ଚ ପ୍ରହାର ଦିଶା ଅର୍ଦ୍ଧରେ । ୩୬ ।
ନଦିଆ କୂଳରେ ହୋଇବୁଁ ଜନ୍ମ ।
ଅନନ୍ତ ମିଶ୍ର ମୋ ପିତାର ନାମ । ୩୭ ।
ପଦ୍ମିନୀ ଗର୍ଭରୁ ହୋଇବୁଁ ଜାତ ।
ଏକଥା ସତଟି ଶୁଣ ସଙ୍ଗାତ । ୩୮ ।
ଦକ୍ଷିଣେ ବଳଭଦ୍ର ଜନମିବେ ।
ଧନୁ ମାସରେ ଜନ୍ମଟି ଲଭିବେ । ୩୯ ।
କଉଂ କଙ୍କାଳ ଗ୍ରାମେଶ୍ୱରଠାରେ ।
ଜନମ ହେବେ ନର କଳେବରେ । ୪୦ ।
ସପତଫେଣୀ ଯେ ଶୋହେ ଶିରତ ।
ଧବଳ ଦେହ ଯେ ଅଙ୍ଗ ସୁନ୍ଦର । ୪୧ ।
କୌମୋଦକୀ ଧରଣ ଥିବେ କରେ ।
କଳଙ୍କି ରୂପ ଯେ ଏହୁ ପ୍ରକାରେ । ୪୨ ।
କଳଙ୍କି ଦେବ ହୋଇବେ ବାହାର ।
ଅନକୂଳ ଖୋଜ ଶୁଭ ମଙ୍ଗଳ । ୪୩ ।
ଶ୍ୱେତ ଅଶ୍ୱ ଆମ୍ଭେ ସଜ କରିବୁ ।
ଶ୍ୱେତ ହସ୍ତୀକ ଯେ ଚହ୍ନି ଆଣିମୁ । ୪୪ ।
ଶ୍ୱେତ ଘୋଡ଼ ଯେ ଯେ ଶ୍ୱେତ ପଲାଣ ।
ଶ୍ୱେତ ବାଟର ଯେ ଜାଣ ତର୍ଜନ । ୪୫ ।
ଶ୍ୱେତ ଘୁଙ୍ଗୁର ଯେ ଶ୍ୱେତ ଲଗାମ ।
ଶ୍ୱେତ ଡୋର ଶ୍ୱେତ ଚବୁକ ଜାଣ । ୪୬ ।
ଶ୍ୱେତ ଛନ୍ଦ ଯେ ଯେ ମେଘାଡ଼ମ୍ବର ।
ଶ୍ୱେତ ଛୁରୀ ଶୋହେ ଖାପ ହସ୍ତର । ୪୭ ।
ପାଟଦ୍ୱୀପରୁ ହୋଇବୁ ବାହାର ।
ସତ୍ୟବନ୍ତ ରାଜା ଅଛୁ ସେଠାର । ୪୮ ।

ଶିର କମଳ ଯେ କାଟିଣ ଦେଇଂ ।
କରପଦ ଯୋଡ଼ି ଅଛଇଂ ରହି । ୪୯ ।
ଶ୍ୱେତହସ୍ତୀ ସେଠାରୁ ବାହାର ।
ଲୋକନାଥ ପାରେଶ୍ୱର ନକର । ୫୦ ।
ସହଜାନନ୍ଦ ଲୋକନାଥ ଜାଣ ।
ଆପେ ନିରଞ୍ଜନ ପରମବ୍ରହ୍ମ । ୫୧ ।
ଦକ୍ଷିଣ କୁଇଂ ମତ ଚଳାଇବେ ।
ନୈଋତ କୋଣେ ଭେଟ ସେ ହୋଇବେ । ୫୨ ।
ଦେବତାମାନେ ଦେଖୁଥିବେ ସ୍ୱର୍ଗେ ।
କପିଳାସରେ ଯଜ୍ଞ ଆରମ୍ଭିବେ । ୫୩ ।
ପ୍ରଧାନ ଅଙ୍କ ମୂଳ ବଂଶଠାରେ ।
ଅମର ଦାଢ଼ି ଅଲେଖ କପୋଳେ । ୫୪ ।
ନବ ବଂଶ ଥିବ ତାଙ୍କ ପାଶରେ ।
ଶୁଭ୍ର ରୁକ୍ମଣୀ ଚନ୍ଦ୍ର ହେତୁକରେ । ୫୫ ।
ସ୍ୱାମ୍ଭିକ ନନ୍ଦନୀ ବୋଲେ ବାସୁଦେବ ।
ଭକ୍ତକୁ ଅନେକ କଷ୍ଟେ ରଖିବ । ୫୬ ।
ଭକ୍ତ ଯେମନ୍ତେ ସେ ହେବେ ବାହାର ।
ଏକଥା ସଖୀ ଗୋ ଶୁଣ ନକର । ୫୭ ।
ବ୍ରହ୍ମଗିରି ଉତ୍ତର ଦିଗେ ପୁଣି ।
ଚଉଦଜଣ ବସିଥିବେ ମିଳଣି । ୫୮ ।
ସରସ୍ୱତୀ ଯେ ନୋହିବ ଲେଖାରେ ।
ଭସ୍ମେ ନକର ଖାଇବ ରଥରେ । ୫୯ ।
ଜସ୍ତ ବଜସ୍ତ ବାହାର ହୋଇବେ ।
ଗୋଦାବରୀ କୂଳେ ଯାଇଂ ରହିବେ । ୬୦ ।
ଜନାର୍ଦ୍ଦନ ହାଦେ ଆଗ୍ୟାଂ ମାଗଇ ।
ଦମନ ଶୋଷିବେ ଜାହ୍ନବୀ ନଈ । ୬୧ ।
ଏ ରଙ୍ଗ ପତନ ଅନ୍ତେ ପିନ୍ଧିବୁ ।
ରମ୍ୟେକ ଦ୍ୱୀପରେ ଯାଇ ବସିବୁ । ୬୨ ।
ସେଠାବେ ରାଜା ହୋଇବେ କଣୋଶ୍ୱ ।
ବିଦ୍ୟାଧର ପାଦ ରସ୍ମେ ବଗ୍ୱର । ୬୩ ।

ସେ ପୁଣ ତାହାଙ୍କ ଅଛୁ ଅଟକ ।
ନେଉଛାଣି ବେଳେ ମୋଡ଼ିବେ ବେକ । ୬୪ ।
ଶ୍ରୀରାମ ପାଟେ ଯେ ଧାତ ଅନ୍ୱେଣ ।
ଗୋଲକୁ ଆରମ୍ଭ ହୋଇବ ପୁଣ । ୬୫ ।
ଉତ୍ତରେ ଜାଗିବୁ ଦକ୍ଷିଣେ ସାଜ ।
ଭଗତମାନଙ୍କୁ ଆଣିବୁ ଖୋଜି । ୬୬ ।
ବିପତ୍ତି ମାନ ଜାତ ହୋଇବ ।
ନୀଳଗିରି କ୍ଷେତ୍ରେ ଏକତ୍ର ହେବ । ୬୭ ।
ଶୂନ୍ୟରେ ଶବଦ ହୋଇବ ସଙ୍ଘ ।
ପ୍ରାଣୀମାନେ ଯେ ଥିବେ ଭୟ ପାଇ । ୬୮ ।
ହୁଂକାର ଶବଦେ ହନୁ ଡାକବ ।
ଭଗତମାନଙ୍କ ଚେତା ହୋଇବ । ୬୯ ।
ଷୋଳ କଳାମାନ ପ୍ରକାଶ ହେବ ।
ବସିଲ ଠାବୁଂ ଅନ୍ତର୍ଧାନ ହେବ । ୭୦ ।
ଖଣ୍ଡଗିରି ଠାବେ ମୋତେ ଭେଟିବେ ।
ଏକା ଘରକେ ସର୍ବେ ରୁଣ୍ଡହେବେ । ୭୧ ।
ସ୍ୱରୂପ ଦେଖିବେ ନୟନେ ସର୍ବେ ।
ମୋ ରୂପ ଦେଖି ନମସ୍କାର ହେବେ । ୭୨ ।
କଳଙ୍କି ରୂପ ଦେଖିବେ ମୋହୋର ।
ସାନନ୍ଦ ହେବେ ଯେ ଦେଖି ସକଳ । ୭୩ ।
ସବେ ଭଗତ ରୁଣ୍ଡେ ହେବେ ଯାଇଂ ।
ଜଣେ ନଥିବେ ସଂସାରରେ କେହି । ୭୪ ।
ଅମଣା କୃଦ ଯେ ପ୍ରାଚୀ ତଟରେ ।
କପିଳେଶ୍ୱର ଉତ୍ତର ଭାଗରେ । ୭୫ ।
ବ୍ରଜ ବଂଶରେ ହୋଇଥିବ ଜନ୍ମ ।
କଳା ସ୍ୱରୂପେକ ଅକ୍ଷର ନାମ । ୭୬ ।
ତାଙ୍କୁ ଖୋଜିବୁ ସେ ଆସି ନଥିବେ ।
ଦେହକୁ ଛାଡ଼ି ସେ ଗୁପତେ ଥିବେ । ୭୭ ।
ଗରୁଡ଼କୁ ସୁମରଣା କରିବୁଂ ।
ବିନତା ସୁତକୁ ପଠାଇ ଦେବୁଂ । ୭୮ ।

ଅଂଶ୍ୟାଂ ପ୍ରମାଣରେ ଗରୁଡ଼ ଯିବ ।
ପକ୍ଷୀ ନାଦରେ ସୁଷେଣ ଡାକିବ । ୭୯ ।
ପୃଥ୍ୱୀ ଫାଟିଯିବ ହେବ ବାହାର ।
ଗରୁଡ଼େ ସବୁ କଣବେ ବିସ୍ତର । ୮୦ ।
ଶୂନ୍ୟେଣ ଆସି ମିଳବେ ଗ୍ରାମରେ ।
ମୋର ପାଦରେ କରି ନମସ୍କାରେ । ୮୧ ।
ଗରୁଡ଼ ସଙ୍ଗତେ ଥିବଟି ରହି ।
ସେ ଦାସ ମୋର ବିଶ୍ୱାସ ଅଟଇ । ୮୨ ।
ପଦ୍ମେ ଭଗତ ଯେ ହେବେ ଗଣିତ ।
ସର୍ବେ ହୋଇଥିବେ ନାମରେ ରତ । ୮୩ ।
ଚନ୍ଦ୍ରୋପୂଳ କୂଳେ ଉଦସ୍ତ ବେଳେ ।
ନଛନ ସହି ହେବ ତେତେବେଳେ । ୮୪ ।
ଚନ୍ଦ୍ରାଙ୍ଗୀ କୂଳରେ ରହିବୁ ଯାଇଂ ।
ଷୋଳ ପାନ ରୁଣ୍ଡ ହୋଇବେ ତହିଂ । ୮୫ ।
ଗ୍ରନ୍ଥଅର୍ଥେ ଯେଝା ଶାଢ଼ୀ ପାଇବେ ।
ବେନ ଗୁଳାରେ ଯେ ବାନ୍ଧି ହୋଇବେ । ୮୬ ।
ସତ୍ତ୍ୱଂ ବାରସିଂଘା ଫୁଙ୍କିଲି ସ୍ୱାମ ।
ପାତାଳ କମ୍ପିଲି ମହାନାଦ ସ୍ୱନ । ୮୭ ।
ସେ ସିଂଘା ଅଛଇ ଖଣ୍ଡଗିରିରେ ।
ଅଛଇ କଳଙ୍କି ଗୁମ୍ଫା ମଧ୍ୟରେ । ୮୮ ।
ଯମଦଗ୍ନି ଯେ ବେଗେ ଚଳିଯିବ ।
ଖଣ୍ଡଗିରିରୁ ସେ ସିଂଘା ଆଣିବ । ୮୯ ।
ଲଲାଟ କେଶରୀ ଅନନ୍ତ କେଶରୀ ।
ଯମଦଗ୍ନି ସହି ଆସିବେ ଧରି । ୯୦ ।
ଚନ୍ଦ୍ରାଙ୍ଗୀ କୂଳରେ ହୋଇବେ ଭେଟ ।
ସବୁ ରାଜ୍ୟରୁ ଶୁଭିବ ମୁରଟ । ୯୧ ।
ଯମଦଗ୍ନି ସମର୍ପିବେ ସେ ନେଇ ।
ସାନନ୍ଦ ହେବେ ଅନେକ ଗୋସାଇଂ । ୯୨ ।
ପ୍ରାଚୀତଟୁ ଯାଇ ଗରୁଡ଼ ନେବ ।
ସେହି ଦାସ ବାରସିଙ୍ଘା ଫୁଙ୍କିବ ।୯୩ ।

ଆପଣା ହାଥେ ପ୍ରଭୁ ଜଗନ୍ନାଥ ।
ପତଙ୍ଗ ବାନ୍ଧବେ ନେଇ ତା ମାଥ । ୯୪ ।
ସପତରଥ ଯେ ସଙ୍ଗତେ ଥିବେ ।
ସାର ସିଦ୍ଧାଙ୍କୁ ଯେ ଆପଣେ ଦେବେ । ୯୫ ।
ଜର୍ଜନ କାଳରେ ପାଳଟି ଯାଇଂ ।
ଖଣ୍ଡଗିରିରେ ସବେ ଥିବେ ରହିଂ । ୯୬ ।
ଶଙ୍ଖଧ୍ୱର ଜାଣ ଭୂମିରେ ଥିବେ ।
କୋଡ଼ିଲେ ମୀନରେ ବନ୍ଧ ହୋଇବେ । ୯୭ ।
ଚୈତ୍ର ମାସରେ ଯେ ଘୋର ସମର ।
ଚନ୍ଦ ପଦ୍ମ ସୈନ୍ୟ ଘୋଟି ତସ୍କର । ୯୮ ।
ପୃଥ୍ୱୀ କମ୍ପୁ ଥିବ ପାଦଘାତରେ ।
ପ୍ରବେଶ ହୋଇବେ ଖଲଗିଣ୍ଡରେ । ୯୯ ।
ଦକ୍ଷିଣୁଂ ମଳିକା ଆସିବ ବାହୁ ।
ସମୋଦ୍ର ଲଙ୍ଘଣ ଯେହ୍ନେ ଦଶଇ । ୧୦୦ ।
ବଟ ପୁଟଙ୍କୁ ଛେଦନ କରିବେ ।
ଠାବେ ଠାବେ ଯେ ଦମନ ମିଳିବେ । ୧୦୧ ।
ଉତ୍ତରୁ କଳଙ୍ଗା ଦକ୍ଷିଣୁଂ ଆସି ।
ସମୋଦ୍ର ଲଙ୍ଘଣ ଯେସନେ ଦଶି । ୧୦୨ ।
ନୃହ୍ମା ଶୁଭଙ୍କୁ ପୋଡନ୍ତୁ ସହୁଂ ।
ଜନ ଅନ୍ତମ୍ଭ ହୋଇବଟି ତହୁଂ । ୧୦୩ ।
ପୂର୍ବରେ ସଂଘୀ ରହିବେ ଦମନ ।
ପଶ୍ଚିମ ଦଗରେ ଥିବ ଆପଣ । ୧୦୪ ।
ଦସ୍ୟୁଙ୍କ ଦାସମାନେ ତହୁଂ ଥିବେ ।
ତାଙ୍କାଙ୍କୁ ପବନସୁତ ରଖିବେ । ୧୦୫ ।
ପଶ୍ଚିମେ ରହିବେ ଭଗତ ଯାଇଂ ।
କୂଳ କୂଳ ଏକା ରହିବ ସଙ୍ଗ । ୧୦୬ ।
ଉଦସ୍ତ ବଟମୂଳେ ପ୍ରାଚୀକୂଳ ।
ଏ ବେନ ସ୍ଥାନ ରହିବ ନିଶ୍ଚଳ । ୧୦୭ ।
କଳଙ୍କ ତେଲଙ୍ଗା ଆସିବେ ବାହୁ ।
ପଶ୍ଚିମ ଦଗେ ସମ୍ଭାଇବେ ଯାଇଂ । ୧୦୮ ।

ସପତ ଦନ ଘୋଟିବ ଅନ୍ଧାର ।
ଘୋଟିବ ପଚ୍ଛୀରେ ଚନ୍ଦ୍ରଦପୁର । ୧୦୯ ।
ଅଶ୍ୱ ସଙ୍ଗତେ ଥିବେ ତେରଶତ ।
ବଳକେ ଦାଶବ କର ଉଦନ୍ତ । ୧୧୦ ।
ପୁଣ ରହିବେ ବନଗିର ଦେଶ ।
ତାକହାକରେ ପୂଣବ ଆକାଶ । ୧୧୧ ।
ଅଠର ନଳାଟିରେ ଜାଣ ସଖା ।
ପାଞ୍ଚ ଯେ ଅଶ୍ୱ ଥିବେ ତହିଂ ରହୁ । ୧୧୨ ।
ସିଂହ ଦୁଆରେ ଥିବେ ସାତ ଅଶ୍ୱ ।
କଲପବୃକ୍ଷୁଂ ଜାତ ହେବେ ଅଶ୍ୱ । ୧୧୩ ।
ବାଲକୁନ୍ଦରେ କଦମ୍ବ ଠାବରେ ।
ଶତେକ ଅଶ୍ୱଟି ଥିବେ ସେଠାରେ । ୧୧୪ ।
କଲପବୃକ୍ଷୁଂ ଅଶ୍ୱ ହେବେ ଜାତ ।
ସେହୁ ଶ୍ୱେତଅର୍କ ଜାଣ ଯଥାର୍ଥ । ୧୧୫ ।
ବଢଣ ହାତ ଶୁଣ୍ଢରୁ ବାହାର ।
ବାଉଣି ହାତ ପୃଷ୍ଠ ସଙ୍ଗତର । ୧୧୬ ।
ଅଠର ହାଥ ଖଡ଼୍ଗ ହାଥେ ଥିବ ।
ନବଧାର ଛୁରୀ ବାହାର ହେବ । ୧୧୭ ।
ଛତ୍ରୀମାନଙ୍କ ସ୍ୱଭାବ କମ୍ପିବ ।
ଯୁଦ୍ଧକୁ ବାର ଯେ ହଡ଼ପଡ଼ିବ । ୧୧୮ ।
ଶତେସିଂହର ଯେ ପ୍ରାକର୍ମ ହେବ ।
ଏକ ବେଳରେଟି ସିଦ୍ଧା ବାଜିବ । ୧୧୯ ।
ସେହୁକ୍ଷଣି ସଖୀ ଲଗିବ ହାଣ ।
ଘୋଡ଼ାଇ ଅମ୍ଭେ ମାରବୁ ଦମନ । ୧୨୦ ।
କ୍ଷେତ୍ରରେ ବହିବ ରକତ ଧାର ।
ଅନର୍ଦ୍ଧୀପ ସୈନ୍ୟ ହେବେ ସଂହାର । ୧୨୧ ।
ଅନର୍ଦ୍ଧୀପ ସୈନ୍ୟ କଲତ ଦାହିଂ ।
ଘାବକ୍ଷେତ୍ରେ ବହିବ ରକତ ନଈ । ୧୨୨ ।
ଅମହତପୁର ଠାବରେ ପୁଣ ।
ସେଠାରେ ହୋଇବ ସହସ୍ରେ ହାଣ । ୧୨୩ ।

ସେଠାରୁ ସଖୀ ଗୋ ଭୁବନେଶ୍ୱର ।
ସେଠାରେ ହତ ହେବେ ଶତେବାର । ୧୨୪ ।
ସେଠାରୁ ପୁଣି କୃଶଭଦ୍ରା ନଈ ।
ହାଣ ହେବେ ତହିଂ ସହସ୍ର ଦୁଇ । ୧୨୫ ।
ଶ୍ରୀହସ୍ତେ ତାକୁ ପକାଇବୁ ମାର ।
ଶୁଣ ରୁକ୍ମଣୀ ମନ ସ୍ଥିର କର । ୧୨୬ ।
ତେରଶତ କାଠ ମାଳଆ ଜାଣ ।
ପାଞ୍ଚାଳୀ ଖର୍ପରେ ପଡ଼ିବେ ପୁଣ । ୧୨୭ ।
ଭେଖ ବନ୍ଧୁଣ ଖଡ଼ଗ ଧରନ୍ତି ।
ଧରନ୍ତି ଖମାନଙ୍କୁ ଯେ ହରନ୍ତି । ୧୨୮ ।
ମାଛ ମାଉଂସ ଖାଇ ବୋଲେ ଦାସ ।
ତାହାଙ୍କ କଣ୍ଠେ ମାଳ କାଳଫାଶ । ୧୨୯ ।
ଙ୍ଗବନ୍ଧା ବୋଦାଟି ଅଟନ୍ତି ସେହ ।
ଦେବୀ ଖପରେ ପଡ଼ିବେଟି ଯାଇଂ । ୧୩୦ ।
ଡାକେଣିମାନେ ମାହାଘୋର ଡାକେ ।
ଅକାଶ ଖସିପଡ଼ିବ ଚମକେ । ୧୩୧ ।
କାଳ ଗୃଧ୍ରପକ୍ଷୀ କରବେ କ୍ରୀଡ଼ା ।
ଅସଂଖ୍ୟ ହୋଇ ପଡ଼ୁଥିବ ମଡ଼ା । ୧୩୨ ।
ଅମ୍ବିକା କାଳିକା ଧରବେ ଚଣ୍ଡା ।
ସଙ୍ଗତେ ଥିବେଟି ଚଣ୍ଡୀଗୃମୁଣ୍ଡା । ୧୩୩ ।
ମ୍ଳେଛ ଜନଙ୍କ ତଣ୍ଡିରେ ବସିବେ ।
ଶ୍ରୋଣିତ ସଖୀ ଗୋ ଶୋଷି ପିଇବେ । ୧୩୪ ।
ମ୍ଳେଛ ଦମନ ହୋଇବେ ବିନାଶ ।
ପୃଥିବୀ ସଖୀ ହୋଇବ ଉଶ୍ୱାସ । ୧୩୫ ।
ବସନ୍ତ ସଖୀ ବହିବ ସଧୀର ।
ସହୁଂ ନାଶହିବ ଅବନୀ ଭାର । ୧୩୬ ।
ଅମ୍ଭେ ଯେ ବାହୁଡ଼ି ଆସିବୁ ପୁଣ ।
ସଙ୍ଗତେ ଥିବେ ମୋ ଭଗତଗଣ । ୧୩୭ ।
ଗଙ୍ଗାରେ ସ୍ନାହାନ କରିବୁ ସଖୀ ।
ଚଣ୍ଡୀ ପଟାଳକୁ ରକତ ନଈ । ୧୩୮ ।

ସେଠାରୁ ନରେନ୍ଦ୍ର ଶଙ୍କର ଠାଇଁ ।
ଅଶ୍ୱ ରଖିବୁ ଆମ୍ଭେ ବେନଭାଇ । ୧୩୯ ।
ଜଳ ଖାଇବୁ ହୋଇବୁ ସନ୍ତୋଷ ।
ସିଂହ ଦ୍ୱାରେଣ ହୋଇବୁଂ ପ୍ରବେଶ । ୧୪୦ ।
ରୁକ୍ମଣୀ ଦେବୀ ହୋଇ ସ୍ତମ୍ଭୀଭୁତ ।
ଶ୍ରୀମୁଖ ଆଗ୍ୟାଂ କହନ୍ତି ଅଚ୍ୟୁତ । ୧୪୧ ।
ଶୁଣ ରାମଚନ୍ଦ୍ର ସୁମନ ଦେଇ ।
ରୁକ୍ମଣୀ କହନ୍ତି ଶୁଣ ଗୋସାଇଁ । ୧୪୨ ।
ଶୁଣୁ ରୁକ୍ମଣୀ ହେତୁ ଚିତ୍ତ ଦେଇ ।
ସତ୍ୟରେ ଯେମନ୍ତ ହେବରେ ସହି । ୧୪୩ ।
ଗୁପତେ ଥିବୁ ସିଂହଦ୍ୱାରଠାରୁ ।
ଏମନ୍ତେ ସଖୀ ଘୋର କଳିକାଳୁ । ୧୪୪ ।
ଚହଲ ହେବ ରାଜା ହେବ ହତ ।
କେଶରୀ ରାଜା ହୋଇବ ଗୁପତ । ୧୪୫ ।
କେଶରୀ ରାଜା ଯିବଟିରେ ସହି ।
ଖଣ୍ଡଗିରିରେ ଗୁପତରେ ରହିଂ । ୧୪୬ ।
ଆକାଶୁ ଶୁଭିବ ଘୋର ଶବଦ ।
ଜନମ ହେବ ସେ ସଂସାର ମଧ । ୧୪୭ ।
ହାଥୀର କନ୍ଧରେ ଥିବ କଳସ ।
ଘେନ ବୁଲିବ ସଖୀ ଦେଶ ଦେଶ । ୧୪୮ ।
ଇନ୍ଦ୍ର ସୁଖରେ ସେ ହାଥୀ ଯେ ଯିବ ।
ଯାହାର ଶିରେ କଳସ ଢାଳିବ । ୧୪୯ ।
ଆମ୍ଭେ ଗୁପତେ ସଖୀ ଥିବୁ ରହିଂ ।
କାହ୍ନା ପ୍ରକାଶ ଯେ ହୋଇବ ଯାଇଂ । ୧୫୦ ।
ଦିବ୍ୟ ବାଳେକ ରୂପ ଥିବୁ ହୋଇଂ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହଇଂ । ୧୫୧ ।
ଥିବ ସଙ୍ଗତେ ବାଳକ ସୋଦର ।
ଖେଳୁ ଯେ ଥିବୁ ବଳଭଦ୍ର ଠାର । ୧୫୨ ।
କୁମ୍ଭ ସପତମୀ ଦିନ ଗୋ ଜାଣ ।
ଆଦିତ୍ୟ ରୋହିଣୀରେ ଥିବେ ଲଗ୍ନ । ୧୫୩ ।

ଖେଡ଼ ରହସ୍ୟେ ଥିବୁ ଅମ୍ଭେ ମାତ ।
ଏମନ୍ତ ବେଳେ ମିଳବ ସେ ହାଥୀ । ୧୫୪ ।
ସକଳ ଦେବ ଆଣି ମୋର ମାଥ ।
ବେଗେ ଢାଳିବେ ଗଜମତେ ମତ । ୧୫୫ ।
ସ୍ୱର୍ଗରୁ ସଖୀ ଗୋ ଶୁଭିବ ଧୁନ ।
ଅଷ୍ଟାଅଶୋଷ୍ଠି ପାଇବ ମେଦନୀ । ୧୫୬ ।
ଗନ୍ଧର୍ବେ ଭଗତେ କରିବେ ନୃତ୍ୟ ।
ସୁସ୍ୱରେ ଗାଇବେ ମଙ୍ଗଳ ଗୀତ । ୧୫୮ ।
ନାରଦ ବଜାଇବେ ବୀଣାଯନ୍ତ୍ର ।
ଦେବେ କରିବେ ଯେ ତାଣ୍ଡବ ନୃତ୍ୟ । ୧୫୮ ।
କୁସୁମ ବରଷିବେ ମୋହ ଶିରେ ।
ଦେବ ଗନ୍ଧର୍ବେ ବୋଲି ହରେ ହରେ । ୧୬୯ ।
ସଙ୍ଗତେ ଥିବେ ମୋ ସକଳ ଭକ୍ତ ।
ଆନନ୍ଦେ କରିବେ ଯେ ନୃତ୍ୟ ଗୀତ । ୧୬୦ ।
ବେଳେ କରାଇବେ ଚଢି ମତ୍ତ ଗଜ ।
ହୋଇବୁ ଅମ୍ଭେ ଯେ ଦେବାଧିରାଜ । ୧୬୧ ।
ତଦନ୍ତେ ସଖୀ ଅନନ୍ତ କେଶରୀ ।
ସମସ୍ତେ ବୋଲନ୍ତି ସେ ହରି ହରି । ୧୬୨ ।
ବଂଶ ନବ ଅଙ୍କେ ହୋଇବେ ହତ ।
ସେହି ଅଙ୍କକୁ ଦେଇଥିବ ଚତ୍ତ । ୧୬୩ ।
ଧଉଳଠାରୁ ଯେ ହେବୁ ବାହାର ।
ଚଢ଼ି ଥିବୁ ମତ୍ତଗଜ ଉପର । ୧୬୪ ।
ଲକ୍ଷେ କୋଟି ବଳ ଥିବେଟି ସଙ୍ଗେ ।
ଦୁନ୍ଦୁଭିମାନ ବାଜୁଥିବ ରଙ୍ଗେ । ୧୬୫ ।
ବୀର କାହାଳୀ ବାଜେ ଜଏ ଶଙ୍ଖ ।
ଟିର ଧରାଇଥିବେ ଦଣ୍ଡଛତ୍ର । ୧୬୬ ।
ଗଙ୍ଗଶିବ ରାଜା ଗୋବନ୍ଦ ଚନ୍ଦ୍ର ।
ନାମ ବହିଥିବ ସେହି ନରେନ୍ଦ୍ର । ୧୬୭ ।
ଅସତ୍ୟ ଦେଖି ଯେ ଛାଡ଼ିଲି ସଖା ।
ସତ୍ୟରେ ରଜା କରିବେଇଂ ମୁହିଂ । ୧୬୮ ।

ପାଞ୍ଚ ମନ୍ତ୍ରୀମାନେ ଯେତ୍ତୁ ହୋଇବେ ।
ତାହା କହୁଛୁ ଶୁଣ ସଖୀ ଏବେ । ୧୬୯ ।

ଆମ୍ଭେ ପରଜା ପାଳିବୁ ମିତଣୀ ।
ପଞ୍ଚୁ ପାଣ୍ଡବଙ୍କୁ ସଙ୍ଗତେ ଘେନି । ୧୭୦ ।

ପୂଜା ପାଇବୁ ଯେ ପୂର୍ବ କୋଣରେ ।
ପ୍ରଜାକୁ ପାଳିବୁ ଆମ୍ଭେ ସତ୍ୟରେ ।୧୭୧।

ବିଦ୍ୟାଧର ନାମ ଆମ୍ଭେ ବହିବୁଂ ।
ନକୁଲେ ଝୁଲିସୁଣି ବୁହାଇବୁ ।୧୭୨।

ଭୀମ ଯେ ଭଣ୍ଡାର ଘର ରଖିବେ ।
ସହଦେବ ଦ୍ୱାରପାଳ ଯେ ହେବେ ।୧୭୩।

ଯୁଧିଷ୍ଠିର ଯେ ପୁରୋହିତ ବ୍ରାହ୍ମଣ ।
ବଳିଛି ଇନ୍ଦ୍ର ହୋଇବାକ ପୁଣ ।୧୭୪।

ହନୁ ହେବ ବ୍ରହ୍ମାପଣେ ବିଧାତା ।
ଶୁକ ହୋଇବେଟି ଚନ୍ଦ୍ର ଦେବତା ।୧୭୫।

ମଙ୍ଗରାଜ ପଣ ଉଦ୍ଧବ ହେବେ ।
ନଳଛି ଜାଣ ଶ୍ରୀଚନ୍ଦ୍ର କରିବେ ।୧୭୬।

ଲକ୍ଷ୍ମଣ କୁମର ହରିଚନ୍ଦନ ।
କୃଷ୍ଣର ସୁତ ଯେ ସେ ବଡ଼ ନାମ ।୧୭୭।

ପ୍ରହ୍ଲାଦକୁ ପାଇକରି କରିବୁ ।
ପାଇକରି ପଦ ଆମ୍ଭେ ଯେ ଦେବୁ ।୧୭୮।

ପୀତାମ୍ବର ରାଏ ତ୍ରିବଣ ଜାଣ ।
ଧ୍ରୁବ ସାଏନ୍ତରି ବୋଲି ପ୍ରମାଣ ।୧୭୯।

ଶଶିଧରକୁ ଶ୍ରେଷ୍ଟରି କରିବୁ ।
ଇନ୍ଦ୍ରଙ୍କୁ ନରେନ୍ଦ୍ର ପଦେ ବାହିବୁଂ ।୧୮୦।

ବ୍ରହ୍ମା ପାଇବେ ମତ୍ତଗଜ ନାମ ।
ଯାର ଭଗତ ମୋ ମଧୁସୂଦନ ।୧୮୧।

ଇନ୍ଦ୍ର ଦ୍ୟୁମନ ମୋ ବଡ଼ ବିଶ୍ୱାସ ।
ସେହି ଦିନୁଂ ସତ୍ୟ ହେବ ପ୍ରବେଶ ।୧୮୨।

ଗରୁଡ଼ ବାହନେ ସମସ୍ତ ଋଷି ।
ମୋହ ସଙ୍ଗତେ ଥିବେ ଅହର୍ନିଶି ।୧୮୩।

ଅନ୍ତର ମୋହୋର ବଡ଼ ବିଶ୍ୱାସ ।
ଅହର୍ନିଶ ଥିବେ ସେ ମୋର ପାଶ ।୧୮୪।
ଧୋଇ ମରୁଡ଼ି କିଛିହିଂ ନଥିବ ।
ଚତୁଃପାଦେ ଲକ୍ଷ୍ମୀ କୃଷି ହୋଇବ ।୧୮୫।
ଫଳରେ ତରୁ ଭୂମିରେ ଲେଟିବେ ।
ଜନପରଜା ସୁଖେ ବିହରିବେ ।୧୮୬।
ନାସ୍ତି ପୂର୍ବବର୍ଣ୍ଣ ପଥରେ ମନ ।
ସଭିଏଂ ଭାଷିବେ ସତ୍ୟ ବଚନ ।୧୮୭।
ସତ୍ୟ ଧର୍ମରେ ଆତଜାତ ହେବେ ।
ଈଶ୍ୱରଠାରେ ବିଶ୍ୱାସ କରିବେ ।୧୮୮।
ଯୋଗ ସଂଯୋଗଟି ଇନ୍ଦ୍ର ପାଳିବ ।
ଭୂମି ମାଣ କାଟିଣ ନ ସରିବ ।୧୮୯।
ଜନ୍ମ ମରଣ କିଛିହିଂ ନଥିବ ।
ଏହି ଦେହକୁ ଘେନି ସ୍ୱର୍ଗ ଯିବ ।୧୯୦।
ରୁକ୍ମଣୀ ଶୁଣି ହୋଇଲେ ସନ୍ତୋଷ ।
ତୋତେ କହିଲି ରାମଚନ୍ଦ୍ର ଶିଷ ।୧୯୧।
ସେବାରେ ରୁକ୍ମଣୀ ରହିଲେ ଯାଇଂ ।
ଭାବେ ଭୋଳ ସେ ବ୍ରହ୍ମାଣ୍ଡ ଗୋସାଇଂ ।୧୯୨।
ଦଶମ ପଟଳ ହୋଇଲା ଶେଷ ।
ଗୀତରେ ଭଣିଲେ ଅଚ୍ୟୁତ ଦାସ ।୧୯୩।

ଇତଶ୍ରୀ ପରମ ଗୁପତ ଗୀତା ସଦାଜଗ୍ରନ୍ଥେ ସମ୍ପୂର୍ଣ୍ଣ ।
ଶ୍ରୀ ସିଦ୍ଧମସ୍ତୁ ।



# ପ୍ରଥମ ଅଧ୍ୟାୟ

॥ ଶ୍ରୀ ଗଣେଶାୟ ନମଃ ॥

ଜୟ ନାରାୟଣ ଅନନ୍ତ ଶୟନ ଜୟ କମଳା ବିଳାସ ।
ଜୟ ନରହରି ଜୟ ଆଦିମୂଳ ଶଙ୍ଖ ଚକ୍ର ବହିଅଛ । ୧ ।

ଆହେ ମହାବାହୁ ଲକ୍ଷ୍ମୀର ବଲ୍ଲଭ ପତିତ ପାବନ ହରି ।
ତୁମ୍ଭ ଚରଣରେ ଭରସା କରୁଛି ବାରେ ଶୁଣ ମୋ ଗୁହାରି । ୨ ।

ଶ୍ରୀନୀଳ କନ୍ଦରେ ବିଜେ କରିଅଛ ବହୁବିଧ ରୂପ ଭିଆଣ ।
ତୁମ୍ଭ ପରି ପ୍ରଭୁ ଏମାନ ଅଟଇ ନାହିଁ ପ୍ରଭୁ ଭିନ୍ନାଭିନ୍ନ । ୩ ।

ଥାନେ ଥାନେ ନାଥ ତୋହୋର ଭିଆଣ ହୋଇଅଛି ଗୋବିନ୍ଦମେଳ ।
ତୋହୋର ମହିମା କେ ଅନ୍ତ କରିବ ବ୍ରହ୍ମାଂ ନ ପାରିଲେ କଳି । ୪ ।

ଓଂକାର ମକାର ଋଗବେଦ ସାର ଋଗ ଯଜୁ ସାମ ଅଥର୍ବ ।
ଆପେ ଋଗବେଦ ଶ୍ରୀମୁଖୁଂ ଯେ ଜାତ କରିଅଛୁ ବାସୁଦେବ । ୫ ।

ନାଭିରୁ ଯେ ବ୍ରହ୍ମଂ ବୃକ୍ଷେ ଉପୁଜିଲ ତହୁଂ ବ୍ରହ୍ମା ଜାତହେଲ ।
ଆଗମ ପାଇଣ ସେହୁ ବେଦପଢ ପ୍ରଚାର ଭିଆଣ କଲ । ୬ ।

ସ୍ଥାବର କୀଟ ପତଙ୍ଗ ଋଗଖାନ ଲୋକାଲୋକ ଗିରି ଆଦି ।
ତୋହର ଆଜ୍ଞାଂରେ ସକଳ ଭିଆଣ କଲେ ପରମ ସୁବେଦୀ । ୭ ।

ମହିମା ଅନନ୍ତ କେ କରିବ ଅନ୍ତ ଅନନ୍ତ ନାମହିଂ ତୋର ।
ଅନ୍ତର୍ଯାମୀ ନାଥ ଅନ୍ତ ନ ପାଇଣ ସ୍ତୁତି କଲେ ବେଦବର । ୮ ।

କମଳନୟନ ଚନ୍ଦ୍ରମା ବଦନ କୋଟି ସୂର୍ଯ୍ୟ ଜିଣି ତେଜ ।
ପୃଥ୍ୱୀ ଆପ ତେଜ ବାଇବ ଆକାଶ ସବୁଠାରେ ତୁମ୍ଭ ତେଜ । ୯ ।

ଆହୋ ମହାବାହୁ ବାଞ୍ଛା କଳ୍ପତରୁ କମଳାବିଳାସ ହରି ।
ସବୁଠାରେ ତୋହୋ ମହିମା ପୂରିଛି କହୁଅଛି ଦୃଢ଼କରି । ୧୦ ।

ଜ୍ୟୋତି ବ୍ରହ୍ମାନନ୍ଦ ଜ୍ୟୋତିରେ ଆନନ୍ଦ ଜ୍ୟୋତିରେ ଜ୍ୟୋତି ପ୍ରକାଶ ।
ଜ୍ୟୋତି ପେନ ଜ୍ୟୋତି ଉଦେ ହୋଇଅଛି ଜ୍ୟୋତି ସବୁଠାରେ ବାସ । ୧୧ ।

ଯୋଗ ଲଏକରି ମୁନି ବସିଛନ୍ତି ଯୁଗ ଯୁଗାନ୍ତରେ ଜାଣ ।
ଯୁଗକୁ ଯୁଗ ଏହି ମତ ଲୀଳା କରିଛନ୍ତି ଭଗବାନ । ୧୨ ।

ମୁହିଂ ମୂଢ଼ଜନ କିଛି ନଜାଣଇ ତୋ ଭକ୍ତ ପାଦେ ଶରଣ ।
ପତିତ ପାବନ ଆହେ ନାରାୟଣ ଶ୍ରୀକରେ ଚକ୍ର ଧରଣ । ୧୩ ।

ଚନ୍ଦ୍ରର ଯେ ତେଜ ପୃଥିବୀ ଦହିଯାଏ କରି ପାରଇ ଗୋସାଇଁ ।
ତୋହୋଠାରୁ ଆଜ୍ଞା ନୋହିଲେ ଗୋସାଇଁ ତରଣ ଯେ ନ ହୁଲଇ । ୧୪ ।

ତୁହି ନାରାୟଣ ତୁହି ଚକ୍ରଧାରୀ ତୁହି ସଂସାର ଧାରଣ ।
ତୋହୋର ଲୀଳା କଳ୍ପତରୁ କଲିଛି ସବୁ ତୋହୋର ଭିଆଣ । ୧୫ ।

ତୋହର ବିଭୂତି କେ ପାରିବ ଭେଦି ତୋ ଆଜ୍ଞା ଯାହାକୁ ନାହିଁ ।
ତୋହୋ ଆଜ୍ଞା ଯାକୁ ହୋଇବ ଗୋସାଇଁ ସେହି ଜନ ପାରେ କହି । ୧୬ ।

ଛତ୍ରଚକ୍ର ଭେଦି ପଞ୍ଚାଶ ଅକ୍ଷର ଅକ୍ଷରରୁ କ୍ଷରାକ୍ଷର ।
କ୍ଷଣକ ଭିତରେ ଚଉଦଶପୁର କରିପାରୁ ଦାମୋଦର । ୧୭ ।

ପାଦ ଯାଜପୁର କଟି ଯେ କଟକ ନାଭି ତୋ ଭୁବନେଶ୍ୱର ।
ତୁଳସୀ ଚଉରା ଅଠର ଯେ ନଳା ବଡ ଦେଉଳେ ବେହାର । ୧୮ ।

ଶରଧାବାଲି ଯେ ବୋଲିଣ ଯାହାକୁ ସୌବର୍ଣ୍ଣ ରେଣୁହିଁ ସେହି ।
ଗୁଣ୍ଡିଚାଘର ବୋଲିଣ ଯଉଂସ୍ଥାନ ଯୋଗମାୟା ଛନ୍ତି ରହି । ୧୯ ।

ଯୋଗ ଲକ୍ଷ୍ମୀକର ବସିଛନ୍ତି ମୂନ ଗୁଣ୍ଡିଚା ନବର ଯହିଁ ।
ଇନ୍ଦ୍ରଦ୍ୟୁମନ ବୋଲିଣ ସରୋବର ଶୂନ୍ୟଜଳ ସେ ଅଟଇଁ । ୨୦ ।

ଯେମନ୍ତ ମହିଂମା ବିଳାସ କରିଛୁ ଆହେ ପ୍ରଭୁ ସବୁଠାରେ ।
କ୍ଷଣକ ଭିତରେ ଆନ କରିପାରୁ ତୁହି ସିନା ଦାମୋଦର । ୨୧ ।

ମୁହିଂ ସେ ଅଜ୍ଞାଂନ ପ୍ରାଣୀ ହୀନ ଜନ ତୁମ୍ଭ ଭକ୍ତଙ୍କ କୋଟର ।
ମୁଂ କାହିଂ ଜାଣିମି ଏ ତୁମ୍ଭ ମହିଂମା କୃପା ନାହିଂ ଯେବେ ତୋର । ୨୨ ।

କୃପାସିନ୍ଧୁ ବୋଲି ଦୁଃଖ ଜଣାଉଛି କୃପା ହୋଇବ ଗୋସାଇଁ ।
ତୋହ କୃପା ଯେବେ ମୋଠାରେ ହୋଇବ କିଛୁ ବଖାଣିବ ମୁହିଂ । ୨୩ ।

ଏତେକ ସୁଦୟା ହୋଇବ ମୋଠାରେ ତୋର ସହିଲ ଗୋସାଇଁ ।
ଏତେ ଯେବେ ମୋତେ ଜନ୍ମ କରିଅଛ ତେଣୁ କହୁଅଛି ମୁହିଂ । ୨୪ ।

ମୋହୋରେ ସୁଦୟା କର ଚକାଡ଼ୋଳା ତୋ ବିନୁ କେହି ସେ ନାହିଂ ।
ତୋହୋ ଶ୍ରୀଚରଣେ ଶରଣ ପଶୁଛି ରକ୍ଷା କରିବା ଗୋସାଇଁ । ୨୫ ।

ଗରୁଡ଼ଙ୍କୁ ଯାହା କହିଲ ଗୋସାଇଁ ସେହି କଥାରେ ମୋ ମନ ।
ତେଣୁ ତୁମ୍ଭପାଦେ ଜଣାଣ କରୁଛି ସୁଦୟା କର ବହନ । ୨୬ ।

ଅଚ୍ୟୁତ ନାମ ଅଟଇ ମୋହୋର ମୋହୋ ତହୁଂ ଦୁଃଖୀ ନାହିଂ ।
ଚନ୍ଦ୍ରଭାଗା ନଦୀକୂଳରେ ଆଶ୍ରମ ନାମ ନେମାଳ ଅଟଇଂ । ୨୭ ।

ଏହିଠାରେ ନାଥ ମୁହିଂ ଡାକୁଅଛି ରହିକରି ଘନ ଘନ ।
ଯେବେ ମୋହୋଠାରେ ସୁଦୟା ହୋଇବ ତେବେ କରିବି ବଖାଣ । ୨୮ ।

ବିନନ୍ତା ସୁତକୁ ଯାହା ବୁଝାଇଲ ଏକାନ୍ତେ ରମ୍ୟକେ ଥାଇଂ ।
ଗୁପତ ବଚନ ଯାହା କହିଅଛ ସବୁ ନିର୍ଣ୍ଣୟ ବୁଝାଇ । ୨୯ ।

ତୋହ ପଞ୍ଚ ସଖା ମଧ୍ୟରେ ମୋ ଲେଖା ତୁମ୍ଭ ସହିଲଟି ମୁହିଂ ।
ମୋହୋରେ ନିର୍ଗୁଣ ହୋଇଛ କି ପ୍ରଭୁ କୃପା କଟାକ୍ଷ ଗୋପାଇଂ । ୩୦ ।

ତୁମ୍ଭେ ଯେ ସାହେବ ମୁହିଂ ତୁମ୍ଭ ଭୃତ୍ୟ ଭୃତ୍ୟଙ୍କ ସେ ପରିଜନ ।
ଅତି କଠୋରେ ମୁଂ ଭରସା କରିଛୁ କୃପା କରସି ବନ୍ଧନ । ୩୧ ।

ଚନ୍ଦ୍ରବର୍ଗ ଦାନୀ ଆଗ୍ରେ ମୁଂ କଲଇଂ କର୍ମା ସେ ଭିକ୍ଷାକରିବା ।
ଦିବ୍ୟ ଗଙ୍ଗା ଥାଉଂ କଂପା ସେହୁ ଜନ କୂପଜଳକୁ ଖାଇବା । ୩୨ ।

ସୌବର୍ଣ୍ଣ ଗରିଆ ହସ୍ତରେ ଯେ ଥିଲେ ଦରିଦ୍ର କଂପା ହୋଇବ ।
ମାତା ସରସ୍ୱତୀ ଯା କଣ୍ଠେ ବସନ୍ତି ସେକି ପଣ୍ଡିତ ନୋହିବ । ୩୩ ।

ସାହେବଙ୍କୁ ସେବା କରିଥିଲେ ଭୃତ୍ୟ ସେକି ବର୍ତ୍ତନ ନପାଇ ।
ମାପକର ସେବା କଲେ ବର୍ଷେ ଅବା ସେକି ବରତନ ପାଇ । ୩୪ ।

ତୁମ୍ଭେ ମୋ ସାହେବ ମୁହିଂ ତୋର ଭୃତ୍ୟ ମୋତେ ନକର ନିର୍ଗୁଣ ।
କୃପାସାଗର ହେ ଗୁହାରି କରୁଛୁ ଆହେ କମଳା ବିଳାସ । ୩୫ ।

ଗରୁଡ଼କୁ ଯାହା ଆଗ୍ୟାଂ ହୋଇଥିଲା ଆଗତ ଭବିଷ୍ୟ ବାଣୀ ।
ସେ ସ୍ଥାନ ମହିମା ବିଶେଷ କହିଛୁ ଗରୁଡ଼କୁ ଚକ୍ରପାଣି । ୩୬ ।

ସୁଦଷ୍ଟା ହୋଇଲେ ତାହା ବଖାଣିମି ସହିତ ହେବ ସଂସାରେ ।
ସୁଜନ ଜନେ ଶୁଣିଣ ଏହା ଯେ ଗ୍ୟାଂନ ହୋଇବ ହୃଦରେ । ୩୭ ।

ଗୁପତ ହୋଇଛୁ ପ୍ରକଟ ନୋହିଛୁ ଶ୍ରୀମୁଖ ବଚନ ତୋର ।
ମୁହିଂ ଯେ ଅଚ୍ୟୁତ ଭରସା କରିଛୁ ଜନ୍ମେ ଜନ୍ମେ ତୋ ପୟର । ୩୮ ।

ସ୍ୱେତାରେ ଆଶ୍ରମ ତୋ ପାଦରେ ଧ୍ୟାନ କରୁଅଛୁ ନାଥ ମୁହିଂ ।
ଜନ୍ମରୁ ମୂରୁଖ ପାଠ ପଢ଼ି ନାହିଂ ଅତି ଅଯୋଗ୍ୟ ଅଟଇ । ୩୯ ।

ରଖିଲେ ରଖ ନ ରଖିଲେ ଭସିଲଇଂ ଶୁଣିମା ଗୁହାରି ମୋର ।
ଦୀନ ଅଚ୍ୟୁତ ଚରଣେ ଜଣାଉଛୁ ରଖିବ ସାରଙ୍ଗଧର । ୪୦ ।

କୃପା ଅକୃପାର କୃପା ମୋହଠାରେ କଲେ କରୁଣାନିଧାନ ।
ସୁଜନ ଜନେ ଶ୍ରବଣ ଦେଇ ଶୁଣ ପାପ ହୋଇବ ଦହନ । ୪୧ ।

କାଲ ପୂଣ୍ଣିଡିବ ଗ୍ୟାଂନ ହିଂ ହୋଇବ ହେତୁ କରିଥିବ ଚତ୍ତେ ।
ଆଗତ ଭବିଷ୍ୟ ମହିମା ଯେତେକ ସୁଜନେ ଶୁଣ ଏକାନ୍ତେ । ୪୨ ।

ଶ୍ରୀକୃଷ୍ଣ ଚରଣେ ଶରଣ ପଶିଲି ମୁହିଂ ଅଟଇ ଅଗ୍ୟାଂନ ।
କହଇ ଅଚ୍ୟୁତ ଆହେ ଗୋପୀନାଥ ଆଗ୍ୟାଂ କରିବା ବନ୍ଧନ । ୪୩ ।

ଇତିଶ୍ରୀ ମହିମା ଶାସ୍ତ୍ରେ ଆଗତ ଭବିଷ୍ୟେ ଶ୍ରୀହରି ଗରୁଡ଼ ସମ୍ବାଦେ ଶ୍ରୀକୃଷ୍ଣ
ମହିମା ବିଭୂତି କଥନେ ନାମ ପ୍ରଥମ ଅଧ୍ୟାୟଃ । ୧ ।

# ଦ୍ୱିତୀୟ ଅଧ୍ୟାୟ

ଅବକାଶ ବେଳେ ବଟ ମଣ୍ଡାଇଲେ କଲପ ବଟରେ ଆଇ ।
ତେତିଶ କୋଟି ଦେବତା ରୁଣ୍ଡହୋଇ ଦ୍ରଶନ କରିବାପାଇଁ । ୧ ।

ଇନ୍ଦ୍ର ରୁଦ୍ର ଆଦି ବରୁଣ ପବନ ଅଗ୍ନିଶ ମୂର୍ତ୍ତିଧର ।
ତେତିଶ କୋଟି ଦେବତା ଗହଳରେ ରହିଛନ୍ତି ପଟୁଆର । ୨ ।

ଦେବ ଦେବୀଗଣ ସହିତେଣ ଜାଣ ଅଷ୍ଟନାୟିକା ସଙ୍ଗତେ ।
କଲପବଟ ପାଖରୁ ପୂରିଛନ୍ତି ସମୁଦ୍ରକୂଳ ପରିଯନ୍ତେ । ୩ ।

ଭୃତ୍ୟଗଣମାନେ ପାଶେ ଖଟିଛନ୍ତି ଯେ ଯାହା ସେବା ଯେତିଣ ।
ଧ୍ରୁବ ପ୍ରହ୍ଲାଦ ସନେକ ଜନେକ ନାରଦ ଗୋରେଖ ପୁଣ । ୪ ।

ଅପୂର୍ବ ମହିମା କ ଅବା ଢ଼ପାମା ସହିଂ ଏକାକ୍ଷର ଟୁଳ ।
ଋଗବେଦ ସହିଂ ବୃଛରୂପ ହୋଇ ରହିଅଛନ୍ତି ଦୁଆର । ୫ ।

ବ୍ରହ୍ମ ଗାୟତ୍ରୀ ସହିଂସେ ପାବଛ ବେଦ ରୁହିନ୍ତି ଦୁଆରେ ।
ହରେ ରାମକୃଷ୍ଣ ସହିଂ ସେ ଆଳଟ କ ଉପାମା ଦେବା ତାରେ । ୬ ।

ଏମନ୍ତେ ସେସ୍ଥାନ ନାମ ମିଳଗିଣ ଗୋଲୋକ ବୈକୁଣ୍ଠ ସେହି ।
ଗୁପତ ଗଙ୍ଗା ଯେ ତ୍ରିବେଣୀ ଯମୁନା ବହୁଅଛି ସଙ୍ଗଠାଇଂ । ୭ ।

କାଶୀ ବିଶ୍ୱନାଥ ବସି ଧାଉଛନ୍ତି ଝର ବହୁଛି ତହିଂର ।
ଆଦି ବିମଳା ସେ ସହିଂରେ ବସନ୍ତି ସିଦ୍ଧିରସ୍ତୁ ଗୃଣକ୍ଷର । ୮ ।

ରହାସ ଲଗିଛି କୃଷ୍ଣ ସେ ହୋଇଛି ଷୋଳସହସ୍ର ଗୋପୀ ସହିଂ ।
ରାଧାକୃଷ୍ଣଙ୍କର ନିତ୍ୟ ଯେ ପୀରତି କ୍ଷଣେ ହେଂ ବିଶ୍ରାମ ନାହିଂ । ୯ ।

ଲକ୍ଷ୍ମୀ ସରସ୍ୱତୀ ପାଦ ମର୍ଦ୍ଦାଳନ୍ତି କ ଦେବ ଉପାମା ମୁହିଂ ।
ଉଦେ ଅସ୍ତ ସହିଂ ଯୋଡିଣ ଅଛନ୍ତି ଆଦିମାତା ଛନ୍ତି ରହି । ୧୦ ।

ବଟର ମୂଳରେ ହର ବିନେକଲେ ଦ୍ରଶନ ସାଜିବା ପାଇଂ ।
ବ୍ରହ୍ମା ଇନ୍ଦ୍ର ଆଦି ଗୁହାରି କରନ୍ତି କୃପା କରିବା ଗୋସାଇଂ । ୧୧ ।

ସେହିମତ ସବେଁ ଜଣାଣ କରନ୍ତି ଗଉପାଖରେ ବେଢ଼ିଣ ।
ସମସ୍ତ ଦେବଙ୍କୁ ମେଲଣି କରନ୍ତି ଯାଅ ରୁମ୍ଭର ଭୁବନ । ୧୨ ।

ସମସ୍ତେ ଗ୍ରୁମୁରୁ ମେଲଣି ହୋଇଣ ଯେଝା ଆଶ୍ରମକୁ ଗଲେ ।
ବନଲାର ସୁତ କରପଦ ଯୋଡ଼ି ଦୃରୁଂ ଆଗେ ଜଣାଇଲେ । ୧୩ ।

ଶୁଣିମା ହେ ନାଥ ମୋହୋର ଗୁହାରି କହୁ ଜଣାଇବି ମୁହିଂ ।
ରୁମ୍ଭ ଚରଣରେ ଜଣାଣ କରୁଛି କହି ଦେବନା ଫିଟାଇ । ୧୪ ।

କ୍ଷେତ୍ରର ମହିମା ପଞ୍ଚକୋଶ ସୀମା ସତ୍ୟବାଦୀଙ୍କର ଯାଏ ।
ଜଣାଣ କରୁଛି ଆହେ ଯଦୁନାଥ ମୋତେ କହିବା ଥୋକାଏ । ୧୫ ।

କଳଣା ତ ନାହିଁ ଅକଳଣା ଭୁଇଁ ବସ୍ତୁ ଗରୁଡ଼ ଯେ ତୋର ।
ସୁଦୟା ନାଥ ମୋହଠାରେ ହୋଇଲେ ଶୁଣି ହୋଇବ ମୁଁ ପାର । ୧୬ ।

ଆହେ ଆଦମୂଳ ଯଶୋଦାକୁମର ଆହେ ଭଗତ ପାଳଣ ।
କଇବଲ୍ୟ ଦାତା ଆହେ ଚକ୍ରପାଣି ବନନ୍ତ ମୋହର ଧେନ । ୧୭ ।

ସକଳ ଫିଟାଇ କହିବା ଗୋସାଇଂ ଜନ୍ମେ ଜନ୍ମେ ଭୃତ୍ୟ ତୋର ।
ଭୃତ୍ୟଠାରେ ଦୟା ଯେବେ ତୁ ହୋଇବୁ ଶୁଣି ହୋଇବ ଉଦ୍ଧାର । ୧୮ ।

ଏମନ୍ତ କହି ସେ ଚରଣେ ପଡ଼ିଲା ଗୁହାରି ଶୁଣ ଗୋସାଇଂ ।
ଗରୁଡ଼ ବିକଳ ଶୁଣି ଆଦମୂଳ ଦୟାକଲେ ଭବଗ୍ରାହୀ । ୧୯ ।

ଗୁପତ କରି ରଖିବୁ ହୋ ଗରୁଡ଼ କାହାରେ କହିବୁ ନାହିଁ ।
କହିଲେ ଗରୁଡ଼ ଅପ୍ରାଧ ପାଇବୁ କହିଲୁଁ ତୋତେ ବୁଝାଇ । ୨୦ ।

ମୋହୋର ବଭୂତ ମୁହିଂଯେ କହିଇ ଅନ୍ୟ କେବା କହିପାରି ।
ମୋହର ଭଗତ କହି ସେ ପାରନ୍ତି ମୋହର ସେ ଆଜ୍ଞାଂଧରି । ୨୧ ।

ପାର୍ଥ ଧନୁର୍ଦ୍ଧର ପଣ୍ଡୁଙ୍କ କୁମର ପଚାରିଲା ବୀର ମୋତେ ।
ମୁହିଂ ତାହାକୁ ରଣମଧେ କହିଲି ମୋହୋର ବିଭୋଗ ଯେତେ । ୨୨ ।

ତୋହଠାରେ ଦୟା କରିଣ କହୁଛି ଶୁଣ ତୁ ଆଗତବାଣୀ ।
ଗୁପତ ବଚନ କହୁଅଛି ପୁଣ ବିନତା ନନ୍ଦନ ଜାଣି । ୨୩ ।

ଯାଜପୁରଠାରୁ କ୍ଷେତ୍ର ପରିଯନ୍ତେ ପୃଥ୍ୱୀମଧେ ଏହି ସାର ।
ବିରାଟର ଅଂଗ ଅଟଇ ଗରୁଡ଼ ମୁହିଂ ସାକ୍ଷାତଟି ବୀର । ୨୪ ।

ମୋହୋ ଜ୍ୟେଷ୍ଠ ଭାଇ ନାମ ସଂକର୍ଷଣ ଲକ୍ଷ୍ମୀ ଘରଣୀ ମୋହର ।
ତାହାଙ୍କୁ କେବେହେଂ ମୁହିଂ ନକହିଇ ଶୁଣ ବିନତା କୁମର । ୨୫ ।

ମୋହର ମହିଂମା ମୋ ଭକ୍ତ ଜାଣନ୍ତି ତୋଆଗେ କହିବା ଫେଇ ।
ଭକ୍ତ ତୁ ମୋହୋର ତେଣୁ ମୁଁ କହିବ ସବୁ ସଂଶୟ ଫିଟାଇ । ୨୬ ।

ଶୁଣ ହୋ ଗରୁଡ଼ ଦୃଢ଼କରି ମନ ମୋହର ବିଭୂତିଂ ଯେତେ ।
ପାଦଠାରୁ ଶିରଯାଏ ମୁଁ କହିବ ସବୁ ମହିଂମା ଭକତେ । ୨୭ ।

ଦଶାଶ୍ୱମେଧ ଘାଟ ବଇତରଣୀ ତଟ ବାରାହନାଥର ନାଥ ।
ଗୁପତେ ସକଳେ ରହିଛନ୍ତି ତହିଂ ଶୁଣ ବିନତାର ସୁତ । ୨୮ ।

କୋଟି କୋଟି ସାଧୁ ଯହିଂ ବସିଛନ୍ତି ବୈକୁଣ୍ଠର ଠାବ ଯହିଂ ।
ସ୍ୱର୍ଗରୁ ଯେ ବ୍ରହ୍ମା ଆସିଣ ଗରୁଡ଼ ଯଜ୍ଞାଂକଲେ ସେହିଠାଇଂ । ୨୯ ।

ଶୁଣ ହୋ ଗରୁଡ଼ ବିନତା କୁମର ତୁ ଯେଣୁ ଭଗତ ମୋର ।
ତେଣୁ ତୋହଠାରେ ଫିଟାଇ କହୁଛୁ ମାୟା ନାହିଂ ତୋହଠାର । ୩୦ ।

ଦେବୀ ବିରଜାଈ ବିଜେ କରିଛଇ ଜଗତ ଜନନୀ ସେହି ।
ଯୋଗୀ ସଙ୍ଗେ ଯେନ ବାଟ ଜଗିଛନ୍ତି କେହି ପଶି ନପାରଇ । ୩୧ ।

ଯାଉଂଲ ବନ୍ଧ ଯାହାକୁ ବୋଲି କହି ଯାଉଂଲ କବାଟ ସେହି ।
ସେ ଯେ ଛଡ଼ଚନ୍ଦ ପଂଗ୍ତିଣ ଅକ୍ଷର ଅର୍ଦ୍ଧମାତ୍ରା ବିଜେ ତହିଂ । ୩୨ ।

ଶୁଭଖମ୍ଭ ବ୍ରହ୍ମା ପୋତିଲେ ସେଠାରେ ପୃଥ୍ୱୀ ଧାରଣଟି ସେହି ।
ଯୋଗ ଲଏକର ଉଂକାରକୁ ସ୍ମର ବସିଛନ୍ତି ମହାମାଈ । ୩୩ ।

ସେ ସ୍ଥାନ ମହିମା ନାହିଂନା ଉପାମା ଶୁଣ ବିନତା ନନ୍ଦନ ।
ପିତୃଗଣ ଯମ ଭୟରୁ ତରନ୍ତି ଯହିଂ କଲେ ପିଣ୍ଡଦାନ । ୩୪ ।

ଭୁବନେଶ୍ୱରରେ ଭୈରବୀ ଡାକବ ବହୁତ ଲୋକ ମରିବେ ।
କହିବା ଗରୁଡ଼ ଆଗକୁ ଶୁଣିମୁ ଯେମନ୍ତେ ସେ ନାଶଯିବେ । ୩୫ ।

ଏମନ୍ତ ଶୁଣିଣ ବିନତା ନନ୍ଦନ ପଦ୍ମ ଚରଣେ ପଡ଼ିଲେ ।
ନମସ୍କରି ବୋଲି କରପଦ୍ମ ଯୋଡ଼ି ଶୋକ ଭରେଣ କହିଲେ । ୩୬ ।

ଗରୁଡ଼ ବିନତି ଦେଖି ଯଦୁପତି ଗରୁଡ଼ଙ୍କୁ ଉଠାଇଲେ ।
କହିଇ ଅଚ୍ୟୁତ କରପଦ୍ମ ଯୋଡ଼ି ଗରୁଡ଼ ଆନନ୍ଦ ହୋଇଲେ । ୩୭ ।

ଇତିଶ୍ରୀ ମହିମା ଶାସ୍ତ୍ରେ ଆଗତ କଥନେ ଶ୍ରୀକୃଷ୍ଣ ଗରୁଡ଼ ସମ୍ବାଦେ ନାମ ଦ୍ୱିତୀୟ ଅଧ୍ୟାୟଃ ।

## ତୃତୀୟ ଅଧ୍ୟାୟ

କରପଦ୍ମ ଯୋଡ଼ି କହଇ ଗରୁଡ଼ ପଦ୍ମ ପାଦରେ ପଡ଼ିଣ ।
ଶୁଣିମା ଗୋସାଇଂ ମୋହର ବିନନ୍ତି ଗୁହାରି ମୋ ଶ୍ରୀଚରଣ । ୧ ।

ପାଦ ଯାଜପୁର ଯେତେକ ଠାବର ସବୁ କହିଲ ହେ ମୋତେ ।
ସେଠାବରୁ ପୁଣ କହିବା ଏଣିକି ହେବ କୃତାର୍ଥ ଯେମନ୍ତେ । ୨ ।

ଶୁଣିଣ ଗରୁଡ଼ ମୁଖରୁ ଏମନ୍ତ କହୁଛନ୍ତି କମ୍ବୁପାଣି ।
ଧନ୍ୟ ହୋ ଗରୁଡ଼ ତୋହ୍ଲୋର ଜୀବନ ଏହା ପଗ୍ଟରିଲୁ ପୁଣି । ୩ ।

କହିଇ ଗରୁଡ଼ ଶୁଣହୋ ଏଣିକି ଯେତେ ସ୍ଥାନର ମହିମା ।
ଯଉଂ ପ୍ରାଣୀମାନେ କର୍ଣ୍ଣରେ ଶୁଣିବେ ତହିଂକ ନାହିଂ ଉପମା । ୪

ଏବେ ଶୁଣ ଯେତେ କହୁଅଛୁ ତୋତେ ମୋର ଗୁପତ ବଚନ ।
ଗଲଖଲ ଘାଟ ବୋଲନ୍ତି ଯାହାକୁ ଗୁପତ ଗୁଂଫା ସେ ସ୍ଥାନ । ୫ ।

ଆଦିମାତା ତହିଂ କବାଟ ହୋଇଣ ଘାଟ ଜଗିଛନ୍ତି ଶୁଣ ।
ନିରଂଜନ ଜ୍ୟୋତି ଜ୍ୱାଲା ଯହିଂଛନ୍ତି ଓଲଟ ଜଳ ପ୍ରସ୍ରାଣ । ୬ ।

ସେଠାବରେ ବୀର ଏକ ବୃକ୍ଷ ଅଛି ସାଧୁଙ୍କ ଆହାର ଯେହି ।
ସିଦ୍ଧବଟ ବୋଲି ତାହାର ଯେ ନାମ ଶୁଣ ବିନତା ତନୟୀ । ୭ ।

ତୁ ଯେଣୁ ଭଗତ ଅଟୁରେ ମୋହର କହିବା ବୁଝାଇ ତୋତେ ।
ଗୁପତେ ରଖିବୁ କାହିଂ ନକହିବୁ ଏକଥାକୁ କଦାଚତେ । ୮ ।

ଦେଖ ମହାନଦୀ ଏକ ଦିବ୍ୟ ନଦୀ ପଶ୍ଚିମୁଂ ଆସଇ ବହି ।
ତହିଂରୁ ଧାରେକ ଫିଟିଛି ଗରୁଡ଼ ଯାହାକୁ ବିରୂପା କହି । ୯ ।

ସେ ନଦୀ କୂଳରେ ଜଳୌକା ନାମେଣ ଅଛି ସ୍ୱେକ ଗିରିବର ।
କଳଣା ସେ ନୋହେ ଅକଳଣା ସ୍ଥାନ ଅଟେ ସିଦ୍ଧ ସାଧୁଙ୍କର । ୧୦ ।

ନଦୀର ମହିମା କହିବା ଗରୁଡ଼ ସାବଧାନ ହୋଇ ଶୁଣ ।
ଦ୍ୱାପର ଯୁଗରେ ପାଣ୍ଡବ ସେଠାରେ ପାରି ହୋଇଥିଲେ ପୁଣ । ୧୧ ।

ଭୀମକୁ କୁମ୍ଭୀରି ସେ ନଦୀରେ ଧରିଥିଲା ବିନତା କୁମର ।
କୁମ୍ଭୀରିକି ମାରି ପାର ହୋଇଗଲେ ଭୀମସେନ ମହାବୀର । ୧୨ ।

କଳ୍ପଦିନ ତହିଂ ଯୁଝେନ୍ତି ରହିଲେ ଶୁଣିଥା ଭକତ ତୁହିଂ ।
ସେହି ପରବତେ ଅଛନ୍ତି ଭଗତେ ଅନେକ ଗୁଂଫାରେ ରହି । ୧୩ ।

ଅହର୍ନିଶି ନାମ ଭଜନ କରନ୍ତି କେହୁ ଅବା ବେଦପାରି ।
ଉଲଟ ଶରୀର ସାଧନ କରନ୍ତି ଆପଣକୁ ଦୃଢ଼କରି । ୧୪ ।

ଗିରିବର କୂଟେ ବିନନ୍ତା ନନ୍ଦନ ଏକଇ ସର୍ପେକ ଅଛି ।
ସେ ସର୍ପ ଆଗ୍ରିତେ ସ୍ୱେକ ବୃକ୍ଷ ଅଛି ଶୁଣ ତୁ ବିନନ୍ତା ବଛ । ୧୫ ।

ସେ ବୃକ୍ଷ ବାସରେ ସର୍ପ ନଚଳଇ ରହିଛି ତହିଂକ ଗୃହିଂ ।
ସେ ବୃକ୍ଷ ନଥିଲେ ଶୁଣହୋ ଗରୁଡ଼ ସଂସାର ପାରଇ ଦହି । ୧୬ ।

ଏମନ୍ତ ମହିମା ସେ ଗିରି ଉପମା କହିଲୁଂ ଫିଟାଇ ତୋତେ ।
ଆଦିହିଂ ଗୁପତ ସ୍ଥାନ ଅଛି ଯେତେ ଯେସବୁ କହିବା ସ୍ୱେକାନ୍ତେ । ୧୭ ।

କହିବା ଯେମନ୍ତେ ଶୁଣହୋ ଗରୁଡ଼ ଗୁପତ ଝଲାଚ୍ଛି ତହିଂ ।
ଅବାରଣ ଭୂଇଂ ବାରଣ ନଥାଇଂ ଜାଣ ନିତ୍ୟସ୍ଥଳୀ ସେହି । ୧୮ ।

ଅମରାବତୀ ଯେ ବୋଲିଣ କଟକେ ଅମରଭୂମିଟି ସେହି ।
ଅମରନିଧି ବୋଲିଣ ଏକ ଦ୍ରବ୍ୟ ଅଛି ଗରୁଡ଼ ସେଠାଇଂ । ୧୯ ।

ସେଠାବର ଗୁଣ କହିବା ହୋ ଶୁଣ ଅପୂର୍ବ ସ୍ଥାନଟି ସେହି ।
ସେଠାରେ ଯୁଦ୍ଧିଷ୍ଠି ବନ୍ଧ ହୋଇଥିଲେ ଦ୍ୱାପର ଯୁଗରେ ଯାଇଂ । ୨୦ । ✻

ସାଧୁମାନ ଯାଇଂ ମେଳ ସେହିଠାଇଂ ହେଉଥାନ୍ତି ସୁରବନ ।
ମୋହୋପାଦେ ଚିତ୍ତ ଦେଇ ମୋ ଭଗତ ନାମ କରନ୍ତି ଭଜନ । ୨୧ ।

ସେ ଥାନକୁ କାଳ କେଭେଂ ନଗ୍ରାସିବ କହୁଅଛୁ ବୀର ତୋତେ ।
ସିଦ୍ଧ ଗିରି ବୋଲି ଯାଉଂ ଗିରି କହି ତହିଂର ମହିମା ଯେତେ ।୨୨।

ସିଦ୍ଧମାନଙ୍କର ସ୍ଥାନ ସେ ଅଟଇଂ ଅହର୍ନିଶି କୀର୍ତନ ।
ଗୁପତ ଭଜନ ଲଗିଅଛୁ ତହିଂ ଶୁଣ ବିନତା ନନ୍ଦନ । ୨୩ ।

ସେହିଠାରେ ଯେତେ ଭକ୍ତଛନ୍ତି ଯୋକେ କହିବା ଫିଟାଇ ତୋତେ ।
ଅଗ୍ରଥ ଗହନ ଏଣିକ କହିବା ଶୁଣ ଗରୁଡ଼ ଏକାନ୍ତେ । ୨୪ ।

ଯୁଗ ଯୁଗାନ୍ତରେ ସେହି ସେ ସ୍ଥାନରେ କେଭେଂ କାଳ ନ ପଶଇଂ ।
ପରାପର ଯହିଂ କେବେହେଁ ନାହିଂ ଅବାରଣଟି ସେ ଭୂଇଂ । ୨୫ ।

ତୁ ଯେଣୁ ଭଗତ କହିଲ ହୋ ତତ୍ତ୍ୱ ହୃଦେଥିରେ ସଂଶୟ ନାହିଂ ।
ଗୁପତେ ରଖି କାହାକୁ ନକହିବୁ କହିଲେ ଅପ୍ରାଧ ହୋଇ । ୨୬ ।

ଶ୍ରୀହରି ମୁଖରୁ ଏମନ୍ତ ଶୁଣିଣ ପଗ୍ଭରଇଂ ପକ୍ଷୀବର ।
ଅଉ କେଉଂ କଥା ଅଛୁ ଯଦୁନାଥ ଫେଡ଼ି କହ ମୋ ଆଗର । ୨୭ ।

ଗରୁଡ଼ ମୁଖରୁ ଏମନ୍ତ ଶୁଣିଣ କହନ୍ତି ବ୍ରହ୍ମାଣ୍ଡ ପତି ।
ଧନ୍ୟ ହୋ ଗରୁଡ଼ ଧନ୍ୟ ତୋ ଜୀବନ ଧନ୍ୟ ତୁ ବିନତା ବଛୁ । ୨୮ ।

ଘୋର ଦୁସ୍ତରଟି ଗ୍ରାମେ ଯିବ ଘୋଟି ହୋଇବ ଗରୁଡ଼ ଶୁଣ ।
ମହା ମହା ବୀର ଆସିବେଟି ଦୂର କରି ଓଡ଼ିଶା ଭୁବନ । ୨୯ ।

ଭଗତମାନେ ମୋ ଯେତେକ ଅଛନ୍ତି ଦୁଜନମାନଙ୍କୁ ଡରି ।
ଦୁଜନମାନେ ଯେ ଅଘୋରେ ମାଡ଼ିବେ ଯେସନେ ଅକାଳ ବଢ଼ି । ୩୦ ।

ହୀନ ଲୋକମାନେ ବଡ଼ଲୋକ ହେବେ ବଡ଼ଲୋକେ ହେବେ ହୀନ ।
ହଉନ ଭବ ହୋଇଣ ବଡଲୋକେ କଛି ନ କହିବେ ପୁଣ । ୩୧ ।

ଏହିମତ ଯୋଗ ହେବ କଳି ଘୋର କାହାର ନଥିବ ଭୟ ।
ସ୍ତ୍ରୀ ମାୟାରେଟି ସବହେଂ ମାତବେ ହୋଇବେ ଭର୍ତ୍ତାଙ୍କ ପ୍ରାୟ । ୩୨ ।

ସାନ ସାନମାନେ ବଡ଼କୁ ମାରିବେ ଶାଶୁଙ୍କୁ ମାରିବେ ବୋହୂ ।
ଗୃଅ.ପୁତମାନେ ଆମ୍ବିଳ ଲଗିବ କଷା ଯେ ଲଗିବ ମହୁ । ୩୩ ।

---

✻ ସାରଳା ମହାଭାରତରେ ବର୍ଣ୍ଣିତ ପ୍ରସଙ୍ଗ ଏଠାରେ ସେ ଉଲ୍ଲେଖ କରିଛନ୍ତି ।
ଏହା ସଂସ୍କୃତ ମହାଭାରତରେ ନାହିଁ ।

ସାତ ଗ୍ରାମ ଏକ ଗ୍ରାମ ଯେ ହୋଇବ ଶୁଣ ବିନତା ନନ୍ଦନ ।
ଅତଏବ ଅନ୍ୟାଏ କରିବେ ପ୍ରାଣୀଏ ତେଣୁ ବୋଲାଇବେ ହୀନ । ୩୪ ।

ବ୍ରାହ୍ମଣମାନେ ଯେ ଗାରଡ଼ ଶିଖିବେ ଗାୟତ୍ରୀ ମନ୍ତ୍ରକୁ ଛାଡ଼ ।
ଗହଡ଼ମାନେକି ବସ୍ତମ୍ଭ ହୋଇବେ ବୋଲାଇବେ ବ୍ରହ୍ମଗୃହ । ୩୫ ।

ପିତାକୁ ପୁତ୍ରେ ଯେବେ ନ ଡରିବେ ପତିମାନେ ହେବେ ବଶ ।
ଆପଣା ପତିକ ଛାଡ଼ ଯୁବାନାରୀ ଖୋଜିପେ କରିବେ ଆଶ । ୩୬ ।

ଗୃହସ୍ଥଙ୍କୁ ନାରୀ କେବେଂ ନ ମାନିବେ ସବୁଠିଂ ଉତ୍ତର ହେବେ ।
ଗୁରୁଙ୍କ ଶିଷ୍ୟ ବ୍ରହ୍ମଗ୍ୟାଂନ ପସ୍ପର ଅଲପେ ପ୍ରକାଶି ଦେବେ । ୩୭ ।

ଏମନ୍ତ ଶୁଣିଣ ବିନତା ନନ୍ଦନ କାଢ଼ ଉଠିଲ ବହନ ।
ଭଣଇ ଅଚ୍ୟୁତ ଶ୍ରୀହରିର ଭୃତ୍ୟ ଗୁପତ ଏ ବ୍ରହ୍ମଂଗ୍ୟାନ । ୩୮ ।

ଇତିଶ୍ରୀ ମହିମା ଶାସ୍ତ୍ର ଆଗତ ଭବିଷ୍ୟେ ଶ୍ରୀକୃଷ୍ଣ ଗରୁଡ଼ ସମ୍ବାଦେ ନାମ
ତୃତୀୟ ଅଧ୍ୟାୟଃ ।।

## ଚତୁର୍ଥ ଅଧ୍ୟାୟ

ଗରୁଡ଼ ବୋଇଲେ ଆହେ ଦେବ ହରି କଥାଏ ପଡ଼ିଲା ମନ ।
ଆଉ ଯେ କଥାଏ ଅଛି ଦେବ ହରି କହ ତୁ ମୋତେ ବହନ । ୧ ।

ଜନ୍ମେ ଜନ୍ମେ ମୁହିଂ ତୋହର ଭଗତ ଅଟଇ ହୋ ନାରାୟଣ ।
ସକଲ ସନ୍ଦେଶ ଫିଟାଇ କହିବ ଆହେ ଦେବକୀ ନନ୍ଦନ । ୨ ।

ସୁଦଶା ଯେବେ ହୋଇବ ମୋହଠାରେ କହିବା ନାଥ ଫିଟାଇ ।
ଶୁଣିଲେ ନାଥ ହେ ମୁକତ ହୋଇବି ସଂଶୟେ ଥିବ କିଂପାଇ । ୩ ।

ଗରୁଡ଼ ମୁଖରୁ ଏମନ୍ତ ଶୁଣିଣ ହସିଲେ କମଳାବର ।
ଧନ୍ୟ ହୋ ଗରୁଡ଼ ଧନ୍ୟ ପକ୍ଷୀବର ଭଲ ପଚାରିଲୁ ବୀର । ୪ ।

କହୁଛି ଗରୁଡ଼ ଶୁଣ ମନଦେଇ ସ୍ଥାନେ ସ୍ଥାନେ ଗୋଳ ହେବ ।
ଭଲମନ୍ଦ କିଛି ବାରଣ ନଯିବ ଏକାକାରକି ହୋଇବ । ୫ ।

ଯୁବା ସ୍ତ୍ରିରୀମାନେ ଉଲଗ୍ନ ହୋଇବେ କାହାର ନଥିବ ଭୟେ ।
ସ୍ତ୍ରିରୀମାନେ ଆଗ ରମଣ ଇଛିବେ ଏଣୁକି ହୋଇବେ କ୍ଷୟେ । ୬ ।

ମହତ ଜନେହିଂ ଅକର୍ମ କରିବେ କୃପଙ୍କ ଦୃଷ୍ଟିରେ ଜାଣ ।
ପରଜା ଗୁହାରି ରଜା ନ ଶୁଣିବେ ଧରିବେକି ଗଡ଼ପଣ । ୭ ।

ଅଧର୍ମ ହେବାରୁ ଇନ୍ଦ୍ର ନପାଳିବ କୁରୁଷି ହୋଇବ ନାହିଂ ।
ତେଣୁକରି ପିନା ଦୁର୍ଭିକ୍ଷ ପଡ଼ିବ ପ୍ରାଣୀମାନେ ହେବେ ଦହି । ୮ ।

ଧର୍ମ ଅଧର୍ମ ଯେ ବିଚାର ନଥିବ ଅବିଚାର ହେବ ଜାତ ।
ପର ଦ୍ରବ୍ୟକୁ ଯେ ବଳେ ନେଉଥିବେ ସବୁହେବେ ଗ୍ୟାଂନହତ । ୯ ।

ପ୍ରାଣୀମାନେ ମନେ ବଡ଼ ବୋଲାଇବେ ଦୁଷ୍ଟପଣରେ ପଶିବେ ।
ସାନବଡ଼ ସବୁ ଏକତୁଲ ହୋଇ ଘୋର ଅନ୍ୟାଏ କରିବେ । ୧୦ ।

ଯୁବାସ୍ତ୍ରିମାନେ ନିର୍ଲଜା ହୋଇଣ କୁଳ ଭସ୍ତକୁ ଛାଡ଼ିବେ ।
ଧନ ଲୋଭରେ ସେ ଚଣ୍ଡାଳ ସଂଗତେ ସୁରତ ରସ କରିବେ । ୧୧ ।

ଏହି ପରକାରେ ଶୁଣ ହେ ଗରୁଡ଼ ପ୍ରାଣୀମାନେ ହେବେ ନାଶ ।
ସ୍ୱଧର୍ମ ଜୀବିକା କେହି ନକରିବେ ଶୁଣ ବିନତାର ଶିଷ । ୧୨ ।

ବ୍ରାହ୍ମଣମାନେ ଯେ ବେପାର କରିବେ ଆପଣା କର୍ମକୁ ଛାଡ଼ି ।
ଯାବତ ଜୀବିକା କରିବେ ବ୍ରାହ୍ମଣେ ଘରେ ଘରେ ହେବ କଳି । ୧୩ ।

ଘରେ ଘରେ ସବୁ ଅନର୍ଥ ହୋଇବ ସ୍ତ୍ରିଏ ହେବେ ବାରୁଆଳ ।
ହାତ ଟେକକରି କାଖ ଦେଖାଇବେ ମିଛେ ଦେଉଥିବେ ଗାଳି । ୧୪ ।

ସୁଜନ ବଚନ କେହି ନମାନିବେ ନିନ୍ଦିବେ ଗୁରୁ ବ୍ରାହ୍ମଣ ।
ଜଉତିଷମାନେ ଯୋଗ ନଜାଣିବେ ମିଥ୍ୟା କହିବେ ବ୍ରାହ୍ମଣ । ୧୫ ।

ବ୍ରାହ୍ମଣେ ଦେବତା ପୂଜା ନକରିବେ ବେଶ୍ୟାଘରେ ଧନଦେବେ ।
ନିଜ ଭରିଯାକୁ ଛାଡ଼ିକରି ଯାଇ ଅନ୍ୟସ୍ତ୍ରିଙ୍କ ରମିବେ । ୧୬ ।

ମହନ୍ତମାନେ ଯେ ଅମହନ୍ତ ହେବେ ହୀନ ଲୋକ ସଙ୍ଗେ ସଜ ।
ଅଗ୍ୟାଂନମାନେ ଯେ ଗ୍ୟାଂନୀ ବୋଲାଇବେ ଶୁଣ ବିନତା ତନୁଜ । ୧୭ ।

ଅର୍ଥ ଲୋଭରେ ଯେ ଅକର୍ମ କରିବେ କାହାକୁ ମାନିବେ ନାହିଂ ।
ଏହି ପରିବାରେ ହୋଇବେଟି ଜନ କହିଲୁ ତୋତେ ବୁଝାଇ । ୧୮ ।

ବିନତାର ସୁତ ଶୁଣିଣ ଏମନ୍ତ ପଦ୍ମ ପାଦରେ ଲୋଟିଲା ।
ଧନ୍ୟ ମୋର ଭାଗ୍ୟ ଶୁଣିଲି ଗୋସାଇଂ ପୂର୍ବର ବାସନା ଥିଲା । ୧୯ ।

ତୁମ୍ଭେ ନାରାୟଣ ସବୁକଥା ଜାଣ ସବୁ ତୁମ୍ଭର ଭିଆଣ ।
ତୁମ୍ଭ ବିନୁ ଆଉ କେହି ନାହିଂ ପ୍ରଭୁ ତୁମ୍ଭେ ପତିତପାବନ । ୨୦ ।

ଆହେ ନାରାୟଣ କମଳା ରମଣ ଆହେ ଭଗତଙ୍କ ହିତ ।
ଅଃଗତ ବଚନ ଯେତେକ କହିଲ ଶୁଣି ହୋଇଲି ମୁକତ । ୨୧ ।

ଗରୁଡ଼ ମୁଖରୁ ଏମନ୍ତ ଶୁଣିଣ ହସନ୍ତି ବ୍ରହ୍ମାଣ୍ଡନାଥ ।
ଧନ୍ୟ ଗରୁଡ଼ ତୁ ଯାହା ପଚାରିଲୁ ଧନ୍ୟ ବିନତାର ସୁତ । ୨୨ ।

କହୁଅଛୁ ଯାହା ହେତୁ କରିଥିବୁ ଫେଡ଼ କାହିଁ ନକହିବୁ ।
ଅଗ୍ୟାଂନ ଜନକୁ ଦେଖିଲେ ଗରୁଡ଼ ତାଳୁ କଉନ ଧୋଇବୁ । ୨୩ ।

ତନୁଂ ଦନ ରାଜା ଅନ୍ୟାୟେ କରିବେ ଘରେ ଘରେ କଳି ହେବ ।
କହୁଅଛୁ ତୋତେ ଶୁଣ ରୁ ସେକାଳେ ଘୋର ଦୁର୍ଦ୍ଦିନ ପଡ଼ିବ । ୨୪ ।

ଠାବେ ଠାବେ ଗୋଲ ଉପୁଜିବ ଜଳ ଇନ୍ଦ୍ର ସେ ଊଣା କରିବ ।
ମାଣରେ କୋଡ଼ିଏ ଗଉଣି ହୋଇବ ଅଧିକ ଆଉ ନୋହିବ । ୨୫ ।

✳ ଅକଳଙ୍କରେ ଯେ କଳଙ୍କ ଲଗିବ ଆମ୍ଭେତ ନଥିବା କାହିଁ ।
ପରଜା ଗୁହାରି ରାଜା ନଶୁଣିବେ ସବ ମଣିବେଟି ସେହି । ୨୬ ।

ଲଗିବ ସାଂଗ୍ରାମ ପଚ୍ଛିମ ଦଗରେ ଘୋର ରୁଧିର ବହିବ ।
କାଞ୍ଚି କାବେରୀ ଯେ କର୍ଣ୍ଣାଟ ଦେଶରୁ ସନ୍ୟ ମାଡ଼ିଣ ଆସିବ । ୨୭ ।

ଚଇତ ଅଷ୍ଟମୀ ଶନିବାର ଦନ ଶୂନ୍ୟ ନିର୍ଘାତ ପଡ଼ିବ ।
ସେହିଦନଠାରୁ ଚହ୍ନିବୁ ଗରୁଡ଼ ଏଣିକି ଯାହା ରହିବ । ୨୮ ।

ତୁରୁକ ଆସିବ ପଚ୍ଛିମ ଦଗରୁ ଏହି ଓଡ଼ିଶା ଭୁବନ ।
ଅଶ୍ୱଙ୍କ ପିଠିରେ ଚଢ଼ି ଧରିଥିବେ ମାରିବେ ଅନେକ ଜନ । ୨୯ ।

ଭଲ ଭଲ ଲୋକ ଘର ଛାଡ଼ିକରି ବନସ୍ତେ ଯାଇ ପଶିବେ ।
କନ୍ଧ ବକନ୍ଧରେ ବୁଲିଣ ତୁରୁକ ପ୍ରାଣୀକି ଯେ ଦୁଃଖଦେବେ । ୩୦ ।

ଖଣ୍ଡା ଖଣ୍ଡାଇତମାନଙ୍କ ସଙ୍ଗତେ କରିବେ ଦ୍ୱନ୍ଦ୍ୱ ଅପାର ।
ସବୁନ୍ତ ଜିଣିବେ ଏକାନ୍ତ କରିବେ କେହି ନଥିବେ ଆଗର । ୩୧ ।

ଦନାକାତେ ଯାଇ ଭେଟକରି ପୁଣ ପୁଣ କରିବେ ସାଂଗ୍ରାମ ।
ବାରବାଟୀ କଟକରେ ପଶିବେ ସେ ଶୁଣ ବନିତା ନନ୍ଦନ । ୩୨ ।

ଚଉକୁଣ୍ଡ ଦ୍ୱାରେ ଆପେ ଶୋଆଇବେ ଦାସପୁରରେ ରହିବେ ।
ପାଟ ଭେଦାଭେଦ କରିହେ ଗରୁଡ଼ ରାଜାକୁ କେଲେଶ ଦେବେ । ୩୩ ।

---

୨୫ (ଖ)— 'ଖ' ପୋଥିରେ ଅଧିକ ଅଛି—

ମାହାଘୋର କଳି ନକ୍ଷତ୍ର ପଡ଼ିବ ହରି ଆଗ୍ରେ ନରେ କର ।
ଶ୍ରୀକୃଷ୍ଣ ପାଦରେ ଚିତ୍ତ ଦେଇଥିଲେ ଘରେ ନ ପଶିବ ବୈର ॥

ଶ୍ରୀକୃଷ୍ଣ ଗରୁଡ଼ ସମ୍ବାଦ ଶୁଣିଲେ ସକଳ ଦୁରିତ ନାଶ ।
ସନ୍ଥଜନ ହିତେ ଶ୍ରୀକୃଷ୍ଣ କୃପାରେ କହିଇ ଅଚ୍ୟୁତ ଦାସ ॥

ଏଇଠି ଚତୁର୍ଥ ଅଧ୍ୟାୟ ସମାପ୍ତ ହୋଇଛି ।

✳ ୨୬-୩୩ ପଦ ଯାଏ 'ଖ' ପୋଥିରେ ନାହିଁ । ୩୪ ପଦରୁ ପଞ୍ଚମ ଅଧ୍ୟାୟ ଆରମ୍ଭ ହୋଇଛି ।

ଶୁଣିଣ ଗରୁଡ଼ କଥାଏ ବୋଲଇଂ ଶୁଣ ପ୍ରଭୁ ଜଗନ୍ନାଥ ।
ତୁମ୍ଭ ରାଜତକୁ ଭୁଲୁକ ଧରିବେ ଏହା ସହିବୁ କୋଷାଇଂ । ୩୪ ।

ଗରୁଡ଼ ମୁଖରୁ ଏମନ୍ତ ଶୁଣିଣ ବୋଲନ୍ତି କମଳାସାଇଂ ।
ଯାହା ପଚାରିଲୁ ବିନତାନନ୍ଦନ କହିବା ତୋତେ ଫଟାଇ । ୩୫ ।

ମୁହିଂ ସେ କରତା ଦଇବ ବିଧାତା ମୁହିଂ ସେ ସକଳ ଜାଣ ।
ମୋର ଆଜ୍ଞାଂବିନା ତରଣ ନହିଲେ ଶୁଣ ବିନନ୍ତା ନନ୍ଦନ । ୩୬ ।

କହୁଛୁ ଗରୁଡ଼ ହେତୁ କରୁଥିବୁ ଫେଡ଼ି କାହିଂ ନକହିବୁ ।
କହିଲେ ଗରୁଡ଼ ଅଗ୍ୟାଂନ ଜନକୁ ଅପ୍ରାଧ ଭୁଞ୍ଜି ପାଇବୁ । ୩୭ ।

ଖୁରୁଧା ଗଡ଼ରେ ଯେ ଯଉଂ ରାଜତ ମୋହର ଭିଆଣ ଜାଣ ।
ମୁହିଂ ଦଣ୍ଡଛଦ ଦେଇଥିଲି ତାକୁ ଶୁଣ ବିନନ୍ତା ନନ୍ଦନ । ୩୭ କ ।

ଗାଢ଼ ଅଭିଷେକ ହୋଇଲା ରାଜତ ଘୋର ଅନ୍ୟାଏ ଯେ କଲେ ।
ରାଜାର ଅଂଶରେ ଯେଉଂ ଲକ୍ଷଣଟି ତାହା କେବେ ନପାଳଲେ । ୩୭ ଖ ।

ପ୍ରାଣୀମାନଙ୍କୁ ସେ ଅଲପେ ଦଣ୍ଡିଲେ କଷ୍ଟ ଦେଲେକ ଅପାର ।
ତେଣୁକରି ତାଙ୍କ କୁଦ୍ଧଟି ହୋଇଲା ଶୁଣ ବଚନ ମୋହର । ୩୭ ଗ ।

ସକଳ ଘଟେ ମୁଂ ବାସ କରିଅଛୁ ପରାପର ମୋର ନାହିଂ ।
ଛପନା କୋଟି ଜୀବଜନ୍ତୁମାନଙ୍କୁ ମୁହିଂ ପଡ଼ ଦେଇଥାଇଂ । ୩୮ ।

ଯଉଂ ରାଜ୍ୟରେ ସେ ଯଉଂ ରାଜାମାନେ ଧର୍ମାଧର୍ମ ନରଖନ୍ତି ।
ମୋହ ଫାରେ ପଡ଼ି ବନ୍ଧା ହୋଇକରି ପୁଣି ଦଣ୍ଡ ପାଉଥାନ୍ତି । ୩୯ ।

ପୁତ୍ର ହୋଇ ଯେବେ ଅନ୍ୟାଏ ଆଚରିବ ପିତାକ ଦଣ୍ଡ ନଦେବ ।
ପରଜା ହୋଇ ରାଜନେ ନମାନିଲେ ସେକ ଦଣ୍ଡ ନପାଇବ । ୪୦ ।

ସତ୍ୟ ତ୍ରେତୟା ଯେ ଦ୍ୱାପର ଯୁଗରେ କେତେ କେତେ ରାଜା ଥିଲେ ।
ବଳି ବେଣୁ ମାନଧାତା ପ୍ରଶୁରାମ ଏମାନେ ମୋରେ ସେବିଲେ । ୪୧ ।

ସହସ୍ରା ଅର୍ଜୁନ ଆଦ ବାଣାସୁର କଂସ ରାବଣ ସହିତେ ।
ଏତେ ରଖିଥିଲେ ଅକୀର୍ତ୍ତି କରିଲେ ଗଲେ ମୋର ଚକ୍ରଘାତେ । ୪୨ ।

ମୋ ଭକ୍ତଠାରେ ଯେ ଲମ୍ଫେ କରିଥାଇ ମୋର ଦୟା ତାହାଠାରେ ।
ସେ ନୃପତ ଦନୁଂଦନ ବଢୁଥାଇ ଚକ୍ର ଉହାଡ଼େଣ ତାରେ । ୪୩ ।

ଏହିମତ ଲୀଳା ଯୁଗକୁ ଯୁଗ ସେ କରଇ ଗରୁଡ଼ ଶୁଣ ।
ଆଦ୍ୟ ପ୍ରାନ୍ତକରି ତୋତେ ବୁଝାଇବା ଶୁଣ ବିନନ୍ତା ନନ୍ଦନ । ୪୪ ।

---

* ୩୭ କ-ଖ-ଗ, ଏଗୁଡ଼ିକ ପ୍ରକ୍ଷିପ୍ତାଂଶ ଭଳି ମନେହୁଏ ।

ତେଲଙ୍ଗା ମୁକୁନ୍ଦ ବୋଲି ଏକ ରାଜା ଓଡ଼ିଶା ଦେଶରେ ଜାଣ ।
ବାରବାଟୀ କଲି ସେହୁ ତୋଳାଇବ ଗଙ୍ଗା କଟକାଇ ପୁଣ । ୪୫ ।

ଗଙ୍ଗାକୂଳେ ତ୍ରିବେଣୀ ଘାଟ ବାନ୍ଧି ନୃପତି ତହିଁ ରହିବ ।
ଏହି ସମୟରେ ଯବନ ଗୋଟାଏ ଉତ୍ତର ଦିଗୁଁ ଆସିବ । ୪୬ ।

ସେହି ଯବନ ଯେ ପ୍ରମାଦ କରିବ ଭ୍ରଷ୍ଟ ହୋଇବ ସଂସାର ।
ରାଉତ ରାଣୀମାନେ ଝାସଦେବେ ସେ ଆଇଣ କଲି ଭିତର । ୪୭ ।

ଦେବ ଦେବୀମାନେ କମ୍ପମାନ ହେବେ ଯବନ ଧାଡ଼ିର ଘାତେ ।
କେହି କାହାକୁ ସେ ବାରଣ ନୋହିବେ ସବୁହେବେ ଆଚମ୍ବିତେ । ୪୮ ।

ଏହି ପରକାରେ କହିଲେ ଗରୁଡ଼ ଅପାରୁଂ ଅପାର ହୋଇ ।
କହିଲେ ଶେଷ ସେ ରହିଲା ଅନେକ ଶୁଣ ବୀର ମନଦେଇ । ୪୯ ।

ଶ୍ରୀକୃଷ୍ଣ ମୁଖରୁଂ ଏମନ୍ତ ଶୁଣିଣ ଗରୁଡ଼ କହଇ ପୁଣ ।
ଏଣିକି କହିବା ଆହେ ଦୀନବନ୍ଧୁ ଶୁଣି ପାଇବି କାରଣ । ୫୦ ।

ପୂର୍ବର ଭାଗ୍ୟ ମୋ ଥିଲା ଦୀନବନ୍ଧୁ ଶୁଣିଲି ଶ୍ରୀମୁଖୁଂ ତୋର ।
ଶୁଣିଣ ମୁକତ ହୋଇଲି ହେ ନାଥ ବଡ଼ାଇ ଭାଗ୍ୟ ମୋହୋର । ୫୧ ।

ନମ୍ରରଲି ନମ୍ରରଲି ପଦ୍ମମୁଖ ଦୁରିତ ମୋ କ୍ଷୟେ ଗଲା ।
ଗୁପତ ଜ୍ଞାନ ତୋ ମୁଖରୁ ଶୁଣିଲି ପାତେକ ଦହନ ହେଲା । ୫୨ ।

ଶ୍ରୀକୃଷ୍ଣ-ଗରୁଡ଼ ସମ୍ବାଦ ଶୁଣିଣ ସୁଜନେ ତରିବ ପୁଣ ।
ଦୀନ ଅଚ୍ୟୁତ କହୁଛି କରଯୋଡ଼ି ଶ୍ରୀକୃଷ୍ଣ ପାଦେ ପଡ଼ିଣ । ୫୩ ।

ସୁଜନ ଜନେ ଯେ ପୁରାଣ ଶୁଣିମ ଅତି ଆନନ୍ଦ ହୋଇଣ ।
ବୈକୁଣ୍ଠପୁରରେ ବସିବ ସ୍ୱେ ଘୋର ପାପନାଶନ କରିଣ । ୫୪ ।

ଶ୍ରୀକୃଷ୍ଣ ଗରୁଡ଼ ସମ୍ବାଦ ଶୁଣିଣ କଲ୍ମଷ ହୋଇବ ନାଶ ।
ସନ୍ଥଜନ ହିତେ ଶ୍ରୀକୃଷ୍ଣ କୃପାରେ କହିଲେ ଅଚ୍ୟୁତ ଦାସ । ୫୫ ।

ଇତିଶ୍ରୀ ଗରୁଡ଼ ଗୀତାୟାଂ ମହିମା ଶାସ୍ତ୍ରେ ଆଗତ ଭବିଷ୍ୟ ବର୍ଣ୍ଣନେ କୃଷ୍ଣ ଗରୁଡ଼ ସମ୍ବାଦେ ନାମ ଚତୁର୍ଥ ଅଧ୍ୟାୟଃ ॥ ୪ ॥

## ପଞ୍ଚମ ଅଧ୍ୟାୟ

ଶୁଣ ହେ ଗରୁଡ଼ କହୁଅଛି ମୁହିଂ କଳିର ଲକ୍ଷଣ ପୁଣି ।
ଘୋର ଅନ୍ୟାୟର ସଂସାରେ କରିବେ ନାଶହେବେ ପ୍ରାଣୀ ପୁଣି । ୧ ।

ବ୍ରାହ୍ମଣମାନେ ବ୍ରହ୍ମକର୍ମ ଛାଡ଼ିବେ ହୀନକର୍ମରେ ମାତିବେ ।
ଶୂଦ୍ରର ଉଚ୍ଛିଷ୍ଟ ଆହାର କରିବେ ତେଣୁ ତେଜହୀନ ହେବେ । ୨ ।

ଗାରେଡ଼ି କୁହୁକ ମନ୍ତ୍ରହିଂ ଶିଖିବେ ଶୂଦ୍ରଯୋନିରେ ହରିବେ ।
ଏହି ପରକାର ଲୋଭରେ ପଡ଼ିଣ ଲକ୍ଷେ ପ୍ରାଣୀ ନାଶଯିବେ । ୩ ।

କହିବା କେତେକ ହୋଇବ ତରକ ନ ରହିବ ଥଳକୂଳ ।
ଯୋନି ବର୍ଣ୍ଣୀକର ପ୍ରାଣୀଏ ବଞ୍ଚିବେ ଏକାଗ୍ରର ହେବେ ନର । ୪ ।

ପ୍ରାଣୀମାନେ ପୁଣି ସୁଖ ନପାଇବେ ଦିନୁଦିନୁ ଦୁଃଖ ହେବ ।
ଦେବତାଙ୍କଠାରେ ଅପ୍ରାଧ କରିବେ ତେଣୁ କେହି ନ ରଖିବ । ୫ ।

ସାତ୍ତ୍ୱିକ ଭଗତ କାହାର ନୋହିବ ଅସାତ୍ତ୍ୱିକେ ହେବେ ମତ୍ତ ।
ଆଉ ଏଣିକ କ କହିବା ଗରୁଡ଼ ଏହିରୂପେ କଳି କଥା । ୬ ।

କୁଜନ ଲୋକଙ୍କୁ ସନ୍ଥେ ଯେ ଡରିବେ ହୀନଲୋକେ ବଡ଼ହେବେ ।
ମୂର୍ଖ ପାଷାଣ୍ଡ ଅଧର୍ମ ସମସ୍ତେ ବ୍ରହ୍ମଗ୍ୟାଂନୀ ବୋଲାଇବେ । ୭ ।

ପରଦ୍ରବ୍ୟ ଖାଇ ଦେବାକୁ ଗରୁଡ ଭୟେ ନଥିବ କାହାର ।
ପରଜା ଗୁହାର ରଜା ନଶୁଣିବେ ଦୁଃଖ ପାଇବେ ଅପାର । ୮ ।

ଧର୍ମ କଥାରେଟି କାହାର ସିନେହ ନଥିବ ବିନତାସୁତ ।
ଅଳପ ବୟସେ ଅଳ୍ପାୟୁଷ ହେବେ ହୋଇବେଟି ପ୍ରାଣେ ହତ । ୯ ।

ଠାବେ ଠାବେ କଳି ଲାଗିବ ଗରୁଡ଼ ମିଥ୍ୟା କଥାରେ ବହନ ।
ଶାସ୍ତ୍ର ଅର୍ଥ ନ ବୁଝିବେ ପ୍ରାଣୀମାନେ ଶୁଣ ବିନତାନନ୍ଦନ । ୧୦ ।

ଏ ରୂପେ ଯେ ଘୋର କଳିଟି ଜାଣିମ ଅସ୍ତବ୍ଧ ରହିବ ନାହିଂ ।
ଅତି ପାପରେ ସେ ସମସ୍ତେ ମାତିବେ କୁହୁକ ବଦ୍ୟାଟି ସେହି । ୧୧ ।

ଗ୍ରେର ଖଣ୍ଡ ଜାଣି ବହୁତ ମାତିବେ କହି ବକଦ୍ଧ ବୋଲିଣ ।
ବ୍ରହ୍ମଗ୍ୟାଂନ କହି ତଣ୍ଡି କାଟୁଥିବେ ଦୟା ନଥିବଟି ପୁଣ । ୧୨ ।

ମାଳା ପକାଇଣ ଦାସ ବୋଲାଇବେ ବୋଲିବେ ଅମ୍ଭେଟି ବଡ ।
ପରଧନ ପରନାରୀ ଯେ ହରିବେ ହୋଇବେ ଅଜ୍ଞାଅ ରୂଢ଼ । ୧୩ ।

ହୀନ ଲୋକଙ୍କୁ ଯେ ଶିଷ୍ୟ ସେ କରିବେ ଅର୍ଥ ଲୋଭରେଟି ପୁଣ ।
କୁଳ ଆଗ୍ଭର ବିଗ୍ଭର ନ ରଖିବେ ତହିଂ କରିବେ ଭୋଜନ । ୧୪ ।

ଗୋଷ୍ଠୀ କରିବେ ଯେ ହୀନଲୋକ ସଙ୍ଗେ ବିଗ୍ଭର ରଖିବେନାହିଂ ।
ଅବିଗ୍ଭର କରିବେଟି ବଇଷ୍ଣବ ତୁମ୍ଭେ ଶୁଣ ମନଦେଇ । ୧୫ ।

ହୋଇବେ ନିର୍ଧନ ଯେଉଂ ପ୍ରାଣୀମାନେ ତାଙ୍କୁ କେହି ନ ମାନିବେ ।
ସତ୍ୟ କହିଲେହେଂ ମିଥ୍ୟା ତାଙ୍କ ବଚନ ଏହା ବିଗ୍ଭର କରିବେ । ୧୬ ।

ଉତ୍ତମ କୁଳରେ ଜନ୍ମହୋଇକରି ନିର୍ଧନ ହୋଇବେ ସନ୍ତଂ ।
ତାହାଙ୍କୁ କେହି ପାଖକୁ ନ ଡାକିବେ ହୀନ ବୋଲିଇବେ ସେହୁ । ୧୭ ।

ଠାବେଠାବେ କେତେ ଅନୀତି ହୋଇବ କହିବା ତହିଁର ଭେଦ ।
ଅତି ଅନ୍ୟାୟେ ଯେ କରିବେ ସୁଜନେ ଶୁଣ ବିନତା ତନୁଜ । ୧୮ ।

ଅନେକ ପ୍ରକାରେ ତରକ ଖେଳିବେ ହୀନବୁଦ୍ଧି ଆଚରଣ ।
କେବଳ ସାତ୍ତ୍ୟକେ କେହି ନପୂଜିବେ ହୋଇବେ ବଡ଼ ଦାରୁଣ । ୧୯ ।

ଧର୍ମ କଥାରେ ସେ ବିଘ୍ନ କରୁଥିବେ ନଥିବ ତାଙ୍କର ଡର ।
ଅଗ୍ନି ମୁଖରେଟି ଘୃତକୁ ନଦେବେ ଏଣୁ ହେବେ ନାରଖାର । ୨୦ ।

ମୋହ ପାଦେ ଯେହୁ ଚିତ୍ତ ଦେଇଥିବ ତାକୁ ନ ଚିହ୍ନିବେ କେହି ।
ନିଉନ ହୋଇଣ ଗୁପତେ ରହିବେ ମୋହୋର ଭଗତ ସେହି । ୨୧ ।

ନ ଦେଖିଲା କଥା ମିଛେ ଘଟାଇବେ ବୋଲିବେ ଏ ସତ୍ୟ ଜାଣ ।
ସତ୍ୟ ପ୍ରାଣୀଙ୍କ ଯେ କଷଣ ସେ ଦେବେ ଶୁଣ ବିନତା ନନ୍ଦନ । ୨୨ ।

ପର ଦ୍ରବ୍ୟଖାଇ ଦମ୍ଭ ଦେଖାଇବେ ମାଗିଲେ ନ ଦେବେ ଧନ ।
ପର ବୃତ୍ତି ହରି ବିପ୍ରକୁ ଦଣ୍ଡିବେ ଅନ୍ୟାଏ କରିବେ ପୁଣ । ୨୩ ।

ସଭାରେ ବହୁତ ମିଥ୍ୟା ଯେ କହିବେ ଧର୍ମାଧର୍ମ ନ କହିବେ ।
ନିଉନ ଦେଖିବେ ଯେଉଁ ଜନଙ୍କୁ ସେ ଉପରେ ମାଡ଼ି ପଡ଼ିବେ । ୨୪ ।

ଏହିମତ ଖେଳ ହୀନଲୋକ ସଙ୍ଗେ ବିଗ୍ରହ ରଖିବେ ନାହିଁ ।
ଅବିଗ୍ରହ କରି ଏଣୁ ବଢ଼ିଥିବ ପରଦ୍ରବ୍ୟ ଯିବେଖାଇ । ୨୫ ।

ଏହିମତ ଖେଳ ହୋଇବ ଗରୁଡ଼ ସବୁ କହିବା ଫିଟାଇ ।
ତୁ ଯେଣୁ ବିଶ୍ୱାସ ଅଟୁ ଆରେ ଦାସ ତୋହଠାରେ ମାୟା ନାହିଁ । ୨୬ ।

ଶୁଣ ପକ୍ଷୀରାଜ ଭବିଷ୍ୟ ବଚନ କଳିର ଆଗତବାଣୀ ।
ଧନ୍ୟ ତୁ ଗରୁଡ଼ ଧନ୍ୟ ତୋ ଜୀବନ କର୍ଣ୍ଣରେ ଏମାନ ଶୁଣି । ୨୭ ।

ଏଣୁ ସେ ଅନ୍ୟାଏ ବହୁତ ହୋଇବ ଏହି ଓଡ଼ିଶାରେ ବୀର ।
ଠାବେ ଠାବେ ସବୁ ବିଗ୍ରହ ଲଗିବ କଳି ହୋଇବ ଯେ ଘୋର । ୨୮ ।

କୁଳର ଆଗ୍ରହ ନକରି ବିଗ୍ରହ ଅତି ଅନ୍ୟାୟୀ ହୋଇବେ ।
ପରଚିନ୍ତା ପର ଅପବାଦ ଘେନି ପରକୁ ସେ ଦୁଃଖ ଦେବେ । ୨୯ ।

ଦିନୁଦିନୁ ପ୍ରାଣୀ ଦୁଃଖ ପାଇବେଟି ସୁଖ ନଥିବ କାହାର ।
କାହାକୁ ନମାନି ଅମଡ଼ା ମାଡ଼ିବେ ପାପକୁ ନଥିବ ଡର । ୩୦ ।

ଘରେ ଘରେ ସବୁ ଗ୍ୟାଂନୀ ବୋଲାଇବେ ବ୍ରହ୍ମଂକୁଳକୁ ନିନ୍ଦିବେ ।
ଚଣ୍ଡାଳମାନେ ଯେ ବ୍ରହ୍ମଗ୍ୟାଂନୀ ହେବେ ସାଧୁସଭାରେ ବସିବେ । ୩୧ ।

ଜୀବେ ଦୟାଗ୍ରବ କାହାର ନଥିବ ଅର୍ଥ ଲୋଭରେଟି ଜାଣ ।
ଚଣ୍ଡାଳ ପାଶରେ ବ୍ରାହ୍ମଣେ ବସିବେ କ୍ଷତ୍ରୀ ଶୁଦ୍ର କ୍ଷତ୍ରୀଏଣ । ୩୨ ।

କାହାର ବଚ୍ଚର ନଥିବ ଗରୁଡ଼ କୁଳ ଜାତ ନ ରଖିବ ।
ତେଣୁକର ଇନ୍ଦ୍ର ଅନ୍ୟାୟେ କରିବ ବନ୍ଦ୍ୟ ବନ୍ଦ୍ୟ ବରଷିବ । ୩୩ ।

ଶ୍ରୀହରି ମୁଖରୁ ଏମନ୍ତେ ଶୁଣିଣ ଗରୁଡ଼ କର ଯୋଡ଼ିଣ ।
ମୋହୋ ଗୁରୁ ହୋଇ ଶୁଣିଲି ଗୋସାଇଂ ଧନ୍ୟ ମୋହର ଜୀବନ । ୩୪ ।

ତୁମ୍ଭ ଦୟା ଯାକୁ କି ଅବା ଅପୂର୍ବ ଚତୁର୍ବର୍ଗେ ଅଧିକାରୀ ।
ଭକ୍ତମାନଙ୍କ ହିତରେ ଅବତାର କରେ ଶଙ୍ଖ ଚକ୍ରଧାରୀ । ୩୫ ।

ପତିତ ତାରଣ ପତିତ ପାବନ ଆହେ ଆରତ ନାଶନ ।
ଆହେ ଦୀନବନ୍ଧୁ ଅହଲ୍ୟା ତାରିଛ ପାଷାଣରୁଟି ବହନ । ୩୬ ।

ଗଜ ଡାକଦେଲ ତାରିଲ ଗୋସାଇଂ ଅନ୍ଧକୁ ନୟନ ଦେଲ ।
ତୁମ୍ଭେ ନାଥ ଅଜାମିଳକୁ ତାରିଲ କୁମ୍ଭୀରକୁ ନବାରିଲ । ୩୭ ।

କୁରୁବଳ ନାଶି ପାଣ୍ଡବଙ୍କୁ ରଖି ଲକ୍ଷେ ରାଜା ଉଦ୍ଧାରିଲ ।
ଯୁଗକୁ ଯୁଗ ଲୀଳାକରି ତୁମ୍ଭେ ଆମ୍ଭଙ୍କୁ ଭିଆଣି କଲ । ୩୮ ।

ସତ୍ୟ ଯୁଗରେ ଯେ ତପୀଙ୍କ ଭଜନ ତ୍ରେତୟା କପିଙ୍କ ସାର ।
ଦ୍ୱାପରେ ଗୋପୀମାନଙ୍କ ଭଗତ କଳିରେ ବୌଦ୍ଧ ଅବତାର । ୩୯ ।

ନାମ ସଙ୍କୀର୍ତ୍ତନ ତୋ ନାମ ଭଜନ ତୋତେ ଆଶ୍ରେ କରିଥାନ୍ତି ।
ତୁମ୍ଭ ନାମ ଭଜି ସ୍ଥାନେ ସ୍ଥାନେ ରହି ତୋତେ ଧ୍ୟାନ କରିଛନ୍ତି । ୪୦ ।

ଏମନ୍ତେ ଗରୁଡ଼ ଜଣାଣ କରିଣ ପଦ୍ମପାଦରେ ପଡ଼ିଲ ।
କହଇ ଅଚ୍ୟୁତ ମୁହିଂ ତୁମ୍ଭ ଭୃତ୍ୟ ପାଶକର ଚକାଡ଼ୋଳା । ୪୧ ।

ଇତିଶ୍ରୀ ମହିମା ଶାସ୍ତ୍ରେ ଶ୍ରୀଗରୁଡ଼ ଗୀତାୟାଂ ଆଗତ ଭବିଷ୍ୟ କଥନେ ଶ୍ରୀକୃଷ୍ଣ
ଗରୁଡ଼ ସମ୍ବାଦେ କଳି ଲକ୍ଷଣଂ ନିର୍ଣ୍ଣୟେ ନାମ ପଞ୍ଚମୋଽଧ୍ୟାୟଃ ॥ ୫ ॥

## ଷଷ୍ଠ ଅଧ୍ୟାୟ

ଶୁଣ ହେ ସୁଜନେ ଶ୍ରୀକୃଷ୍ଣ ଧିଆନେ ଆଗତ ଭବିଷ୍ୟବାଣୀ ।
ଯେଉଂ ଜନମାନେ ଶ୍ରବଣେ ଶୁଣିବେ ମୁକତ ହୋଇବେ ପୁଣି । ୧ ।

ଶ୍ରୀକୃଷ୍ଣର ଦାସ ଦାସର ଯେ ଦାସ ଜନ୍ମେ ଜନ୍ମେ ମୁଂ ଅଟଇଂ ।
ତେଣୁକର ମୋର କଣ୍ଠରେ ଫୁଟିଲ ଦୟାକଲେ ଲକ୍ଷ୍ମୀସାଇଂ । ୨ ।

ଗରୁଡ଼ଙ୍କୁ ଯାହା କହିଲେ ଅଚ୍ୟୁତ ଗୁପତ ଭବିଷ୍ୟ ବାଣୀ ।
ଜାଣିଣ ପୁଣ୍ୟାଂଶୀ ଜନେ ନିସ୍ତରିବେ ଫଣସ୍ତ ନଥିବ ପୁଣି । ୩ ।

ମହା କଳିକାଳ ଘୋଟିବ ପ୍ରବଳ ହେବୁ ଚେତନା ବୁଡ଼ିବ ।
କାହାର ସେ କେଉଁ ଗୁଣ ନ ରହିବ ସବୁ ଏକାକାର ହେବ । ୪ ।

କହଇ ଗରୁଡ଼ ଆହେ ଆନନ୍ଦକନ୍ଦ ଅହେ ଭଗତ ପାଳଣ ।
କହିବା ସକଳ ବୁଝାଇଣ ହରି ଫଣସ୍ତ ଫିଟୁ ବନ୍ଧନ । ୫ ।

ଶ୍ରୀମୁଖ ବଚନ ଶୁଣିକରି ନାଥ କାରଣ ପାଇବି ମୁହିଂ ।
ଭୃତ୍ୟ ବୋଲିକରି ଦୟାକଲ ମୋତେ ଆହୋ ବ୍ରହ୍ମାଣ୍ଡ ଗୋସାଇଂ । ୬ ।

ଗରୁଡ଼ ମୁଖରୁ ଏମନ୍ତ ଶୁଣିଣ ହସନ୍ତ କମଳା ବର ।
ଶୁଣ ତୁ ଗରୁଡ଼ ସ୍ଥିରକରି ମନ କଲୁ ତୁ ଯେଉଂ ବିଗ୍ଭର । ୭ ।

ତୋହଠାରେ ମାୟା ନାହିଂ ଯେ ଗରୁଡ଼ କହୁଅଛୁ ଶୁଣ ଏବେ ।
ଯେତେ ସିଦ୍ଧପୀଠ ଥାନମାନ ଅଛୁ ରହିବ ଗୁପତ ଭାବେ । ୮ ।

କ୍ଷେତ୍ରବରଠାରୁ ଯାଜପୁରଯାଏ ଉତ୍ତମ ଭୂମି ଅଟଇଂ ।
ଠାବେ ଠାବେ ସାଧୁମାନଙ୍କର ମେଳା ଅହର୍ନିଶି ହୋଉଛଇଂ । ୯ ।

କେଉଂଠାରେ ମୋର ଭଗତଙ୍କ ମେଳ କେଉଂଠାରେ ମୋ ବିହାର ।
କେଉଂଠାରେ ମୁନିମାନଙ୍କର ମେଳା କାହିଂ ଯୋଗାଦ୍ଧି ପୁରୁଷ । ୧୦ ।

ସାଦ ଯାଜପୁର ଠାବରୁ ଗରୁଡ଼ କହୁଛୁ ଜଳୌକା ଯାଏ ।
ଅମରାବତୀ ସିଦ୍ଧଗିରି ସ୍ଥାନ ସେ କହୁଛୁ ତହୁଂ ଥୋକାଏ । ୧୧ ।

ହନୁ ମଙ୍କେଶ୍ୱର ବୋଲିଣ ଯେ ଦେବ ଅଛନ୍ତି ପାହାଡ଼େ ରହି ।
ଉଦ୍ଧରଙ୍ଗୀ ସେହି ଠାବରେ ବହୁଛୁ ସିଦ୍ଧଗିରି ଫୁଟି ଛୁଇଂ । ୧୨ ।

ସେ ସ୍ଥାନ ମହିମା ଅତି ଅଗୋଚର ଶୁଣ ବିନତାର ସୁତ ।
ରାମ ଅବତାରେ ସେହିଠାରେ ମୁହିଂ ପୂଜିଥିଲି ବିଶ୍ୱନାଥ । ୧୩ ।

କୁନ୍ତୀ କଟକଟି ଯାହାକୁ ବୋଲି କହି ନିଗମ ସ୍ଥାନଟି ସେହି ।
ଚନ୍ଦ୍ରୋତ୍ପଳା ନଦୀ କୂଳ ଠାବରୁଟି ସାର ନୀଳ ବଟ ସେହି । ୧୪ ।

ନେମାଳ ବୋଲିଣ ଯେଉଂସ୍ଥାନ ଙ୍କଣ୍ଡି କହିବା ତାହାର ଗୁଣ ।
ସିଦ୍ଧ ସାଧୁ ଯହିଂ ଅହର୍ନିଶି ଛନ୍ତି ମୋହର ଅଟଇ ଗ୍ରାମ । ୧୫ ।

ଚନ୍ଦ୍ରୋତ୍ପଳା ନଦୀ କୂଳେ ସେହି ବଟ ଜମ୍ବୁବନ ତାର ତଟ ।
ନିମଳ ବଟ ବୋଲିଣ ଏକ ଦାରୁ ଅଛୁ କଟକ ଅଗ୍ରତ । ୧୬ ।

ସେ ବୃକ୍ଷେ ଅନେକ ଦେବ ରହିଛନ୍ତି କଳଣା ନାହିଂଟି ତାର ।
ବ୍ରହ୍ମା ବିଶ୍ୱେଶ୍ୱର ଯେ ସ୍ଥାନେ ଅଛନ୍ତି କେ ଭେଦ ପାଇବ ତାର । ୧୭

ମାହାଲ ବଟ ବୋଲଣ ଯେଉଂ ସ୍ଥାନ ସାଧୁଙ୍କ ମେଳଟି ତହିଂ ।
ମାହାଳସ୍ମା ବୋଲି ଅଛେ ଯଉଂ ବଟ ରୁକ୍ମଣୀ ହରଣ ଭୂଇଂ । ୧୮ ।

ଦେବୀ ଭଗବତୀ ଯହିଂ ରହିଛନ୍ତି ତାଙ୍କ ମହିମା ଅପାର ।
ସେ ଦେବୀ ଅଗ୍ରତେ ପ୍ରଚ୍ଛନ୍ନ ହୋଇବ ଏକ ଅକ୍ଷର ମନ୍ତ୍ର । ୧୯ ।

ଗ୍ୟାଂନୀ ଜାଣି ସବୁ ସେବକ ମେଳହେବେ ଏକଇ ଦିବସେ ବୀର ।
ଦ୍ୱାଦଶ ଦିନ ଭାଗବତ ହୋଇବ ଶୁଣ ବିନତା କୁମର । ୨୦ ।

ବେଦ ମୁଣ୍ଡେ ବେଦ ଦେବୀ ଯେ ଅଛନ୍ତି ମଧ୍ୟରେ ଏକଇ ବଟ ।
ନୀଳକିଶୋର ନାମଯେ ବୋଲାଇବେ ବଟରେ ବାନ୍ଧିବେ ପାଟ । ୨୧ ।

ଗୁପତରେ କ୍ଷୀର ନଦୀ ତ ରହିଛି ଧାରେକ ବହିଇ ପୁଣ ।
ଅମୃତଯୋଗରେ ଧାରେକ ବହିଇଂ ବଟଯାସ୍ୱେ ବୋଲି ଜାଣ । ୨୨ ।

ନିଗମ ଥାନ ଗୁପତ ବୋଲି ଜାଣି ଭକ୍ତେଛନ୍ତି ମୋର ତହିଂ ।
ଆବର କହିବା ଶୁଣହୋ ଗରୁଡ଼ ଯେଉଂଥାନେ ଯାତ୍ରା ହୋଇ । ୨୩ ।

ଉତ୍ତର ପଟରୁ ମେଘ ଯେ ଫୋଟିବ ଅପ୍ରମିତ ମେଘ ଜାଣ ।
ଝାଡ଼ବାଡ଼ ସବୁ ସେବକାକାର ହେବ ତରସ୍ତ ସବୁଣ ପ୍ରାଣ । ୨୪ ।

ତୁରୁକ ଆସିବେ ପଶ୍ଚିମ ଦିଗରୁ ଓଡ଼ିଶା ଦେଶେ ହୋଇବେ ।
ଖୁରୁଧା ଗଡ଼ରେ ରାଉତକୁ ବାନ୍ଧି ରାଇଜ ଭୋଗ କରିବେ । ୨୫ ।

ଠାବେ ଠାବେ ସବୁ ଅନୀତ କରିବେ ଧନ ଲୋଭରେଟି ପୁଣ ।
ପର ବୋଲେ ଧନ ଦରବ ଲୁଟିବ କାହିଂବା ପାଇବେ ତ୍ରାଣ । ୨୬ ।

ଚିରମାଳ ବନ କଂପମାନ ହେବ କେହି ରହନ୍ତାଟି ନାହିଂ ।
ଝଣ୍ଟା ଝଣ୍ଟାଇତ ସବୁନ୍ତି ଜିଣିବେ ଶୁଣ ବିନତା ତନଇ । ୨୭ ।

ଅଶ୍ୱଙ୍କର ପରେ ଚଢ଼ିଣ ସେ ଥିବେ ଧୂଳି ଉଡ଼ୁଥିବ ପୁଣ ।
ଝଣ୍ଟାଖୋଲରେ ଯେ ପୃଥ୍ୱୀ ଭୋଗ କରିବେ ଏମନ୍ତ ଗରୁଡ଼ ଶୁଣ । ୨୮ ।

ଅଗ୍ନି ଲଗାଇଂ ସାଙ୍ଗ୍ରାମ କରିବେ ପ୍ରାଣୀଙ୍କି ଯେ ଦୁଃଖଦେବେ ।
ପ୍ରାଣୀଙ୍କ ଆରତ କହିଂ ନ ସରିବ ଘୋର ଅନ୍ୟାୟେ କରିବେ । ୨୯ ।

ରାଜକର୍ମମାନ ଭୁଂଜିଣ ଯେ ତହିଂ ଆନ କର୍ମରେ ମାତିବେ ।
ଏହିମତ କଳିଦିନ ହୋ ଗରୁଡ଼ ଓଡ଼ିଶା ଭୋଗ କରିବେ । ୩୦ ।

ଛତ୍ରରେ ସେ ତିନ ପାଞ୍ଚ ଅଙ୍କଯାଏ ଭୋଗତମାନ ହୋଇବେ ।
ନର୍ମାଳ୍ୟକୁ ବଟ ବୃକ୍ଷରେ ବାନ୍ଧିଣ ସକଳେ ତୃପ୍ତି କରିବେ । ୩୧ ।

ଶ୍ରୀକୃଷ୍ଣ ମୁଖରୁ ଶୁଣିଣ ଗରୁଡ଼ ପଦ୍ମପାଦରେ ପଡ଼ିଲା ।
କଥାସ୍ୱେ ସରସ୍ୱେ ଲାଗିଲା ଗୋସାଇଂ କରଯୋଡ଼ି ପୁଚ୍ଛାକଲା । ୩୨ ।

ତୁରୁକ ବୋଲିଣ କେବଣ ସେ ଜାତି କେଉଂ ଦେଶେ ତାଙ୍କ ଘର ।
ଓଡ଼ିଶା ପୃଥ୍ୱୀରେ ଭୋଗ ସେ କରିବେ କହ ମୋତେ ଦାମୋଦର । ୩୩ ।

ଗରୁଡ଼ ବଚନ ଶୁଣି ଭଗବାନ ବୋଲୁଛନ୍ତି ପକ୍ଷୀ ଶୁଣ ।
ଗୋଦାବରୀ କୂଳ ପଶ୍ଚିମ ଦିଗରେ କର୍ଣ୍ଣାଟ ଦେଶ ଭୁବନ । ୩୪ ।

ମୋହାଳିଆ ମୁକୁନ୍ଦ ବୋଲିକରି ଏକ ଓଡ଼ିଶାରେ ରଜା ହେବେ ।
ତାହାଙ୍କର ଆଦି ନବ ଯେ ଅଙ୍କରେ ଦମନ ମାଡ଼ି ଆସିବେ । ୩୫ ।

ଗଙ୍ଗାକୂଳ ମାଡ଼ି ପୃଥ୍ୱୀ ଭୋଗକରି ବଡ଼ ଅନାଚାରୀ ସେହି ।
ଯେହୁ ସେ ତୁରୁକ ସେହୁ ସେ ଦମନ ସ୍ୱେକ ବର୍ଣ୍ଣ ସେ ଅଟଇ । ୩୬ ।

ଦକ୍ଷିଣ ଦିଗରୁ ଆସିବେ ଦମନ ବରଷା ଋତୁରେ ଜାଣ ।
ମୋହୋର ଚକ୍ରରେ ରହି ନପାରିବେ ତୁରୁକ ଯିବେ ବହନ । ୩୭ ।

ଆପଣାର ଧନ ନେଇ ନପାରିବେ ଛାଡ଼ିକରି ପଳାଇବେ ।
ଘରଦ୍ୱାର ଛାଡ଼ି ବନସ୍ତେ ପଶିବେ ଜୀବନକୁ ହରାଇବେ । ୩୮ ।

ଯେଉଂ ବୃନ୍ଦାମୂଳେ ପଳାଇ ପଶିବେ ବାଘ ଧରିନେବ କେଣୁ ।
ଦିବସେ ମାତିବେ ଧ୍ରୁବ ଧ୍ରୁବ ବୋଲି ରାତ୍ରରେ ମାତିବେ ଖଣ୍ଡ । ୩୯ ।

ମାରି ବେନ ମଲ୍ଲ ପୃଥ୍ୱୀର ଶଲ୍ୟ ବୃହସ୍ତଂ ଗୃହସ୍ତଂ ନାଶଯିବେ ।
ନିର୍ମଳ ଭଗତ ଯେଉଂଠାରେ ଉଦେ ସେହି ସେ ପ୍ରାଣ ପାଇବେ । ୪୦ ।

ଉତ୍ତର ଦିଗରୁ ମେଘ ଯେ ଘୋଟିବ ବୃତା ମେଘ ସେହୁ ଜାଣ ।
ଝିରିଝିରି ପାଣି ବରଷା ହୋଇବ ଦୁର୍ଗା ଝର୍ପରେ ବହନ । ୪୧ ।

ରାତ୍ର ପାଞ୍ଚଘଡ଼ି ଠାବେ ହୋ ଗରୁଡ଼ ଘୋର ପବନ ବହିବ ।
ଠାବେ ଠାବେ ଘୋର ଅନ୍ଧକାର ହେବ ଘରଦ୍ୱାର ଭାଂଗିଯିବ । ୪୨ ।

ରାତ୍ର ଛଅଘଡ଼ି ଉତ୍ତରେ ପୁଣି ଯେ ଉଲଟ ହୋଇ ବହିବ ।
ଅଣଚୃଣ ମୂର୍ତ୍ତି ପ୍ରାପ୍ତେକ ହୋଇଣ ଦକ୍ଷିଣ ଦିଗୁଂ ଆସିବ । ୪୩ ।

ଅପ୍ରମେୟ ଜଳ ବରଷା ହୋଇବ ଥଳକୂଳ ନ ଦିଶିବ ।
ତହୁଂ ଆରଦିନ ଶୁଣ ହୋ ଗରୁଡ଼ ମାହାକମାଣ ପଡ଼ିବ । ୪୪ ।

ପଛକୁ ନଗୃହଂ ଛାଡ଼ି ପଳାଇବେ ଜନେ ନ ପାରିବେ ରହି ।
ଜଳରେ ଅନେକ ଦ୍ରବ୍ୟ ବୁଡ଼ିଯିବ କାହାକୁ ମିଳିବ ନାହିଂ । ୪୫ ।

କଟକରେ ଆସି ଦମନ ପଶିବେ ବାରବାଟୀ ଦ୍ୱାରେ ଜାଣ ।
ଦୁଇଘଡ଼ି ଯାଏ ସାଂଗ୍ରାମ ହୋଇବ ଦୁଷ୍ଟଙ୍କ ସଙ୍ଗତେ ପୁଣ । ୪୬ ।

ଦେଖିଣ ଦେବୀ କଟକ ଛାଡ଼ିଯିବେ ବହିବ ରୁଧିର ଧାର ।
ବାରବାଟୀରେ ଦମନ ପଶିକରି ବୋଲାଇବେ ଦଣ୍ଡଧର । ୪୭ ।

ମଦତ୍ୱ ସଙ୍ଗତେ ଅଭକ୍ଷ ଭକ୍ଷନ୍ତ ନରେ ମାତ ହୋଇଥାନ୍ତ ।
ଦୋଷକଲ୍ ଲୋକ ପାଇଲୋକ ପୁଣ ଅତ ଉଲ୍ଲୁସି ଉଠନ୍ତ । ୪୮ ।

ଠାନେ ଠାବେ ସବୁ ତରକ ଲଗିବ କହବା ଫିଟାଇ ତୋତେ ।
ଫେଡ଼ି କାହାକୁ ନ କହବୁ ଗରୁଡ଼ ରଖିଥିବୁ ହୃଦଗତେ । ୪୯ ।

ଖଣ୍ଡା ଖଣ୍ଡାଇତ ସମସ୍ତ ଗଡ଼ତ ବଟଲଣ ହରବେ ଜାଣ ।
ଘୋର ଯେ ସାଂଗ୍ରାମ ଉତ୍ପତ ହେବ କହବାକ ସେବେ ଶୁଣ । ୫୦ ।

ଖୁଦ୍ଧା କଟକେ ପଶିବେ ଛଟକେ ଗଡ଼ଜାତଙ୍କୁ ଧରନେବେ ।
କଟକରେ ନେଇ ରାଜାଙ୍କୁ ରଖିବେ ପୁଣି ସେକାନ୍ତ ହୋଇବେ । ୫୧ ।

ଢନାକାଡେ ରହ ପୁଣ ମେହ୍ନ ଅଁସି ଉତ୍ତର ଦରକୁ ଯିବେ ।
ମୋହୋର ମାଘାରେ ରାଜନ ମୁକ୍ତିଲା ମୋହ ଠାବକୁ ଆସିବେ । ୫୨ ।

ମୋହୋର ଗ୍ରାମୁରେ ରହ ସେ ରାଜାତ ନତ୍ୟ କରବେ ଦ୍ରଶନ ।
ମୋହୋର ଆଗ୍ୟାଂରେ ଏଠାରେ ରହବେ ଶୁଣ ବନନ୍ତା ନନ୍ଦନ । ୫୩ ।

ଚଉଦ ପଲ୍ଟ ଠାବରୁ ସେ ଜାଣ ହରନାଥଙ୍କର ଯାସ୍ତେ ।
ତାରଇ ସକଳେ ଗୁପତରେ ଗୋଲ ପଡ଼ଲେ ଶୁଣ ଥୋକାସ୍ତେ । ୫୪ ।

ବନ୍ଦର କବାଟ ଯଉଂପୁରେ ଡାଟ କାଳିଆ ଘୀଇଛି ସେହ ।
ଛସ୍ତାଣୋଇ ବଂଶ ଦମନ ହୋଇବେ ସେହଠାବେ ମେଳହୋଇ । ୫୫ ।

ରୁଧିର ବହବ ଆଣ୍ଠି ସ୍ତେ ବହଳ ନଦୀପାଣି ରଙ୍ଗ ହେବ ।
ଧବଳେଶ୍ୱର ମାହାଦେବଠୀରୁ ଚନ୍ଦେଶ୍ୱର ମାହାଦେବ । ୫୬ ।

ଚଉଦ୍ୱାର କଲ୍ ଠାବକେ ନର୍ମାଣ ଏକ ଜାଗାକେ ଘଟିବ ।
କମାଣ ବସାଇ ତୋପ ମାରକର କଲକୁ ଫୁଟାଇ ଦେବ । ୫୭ ।

ଅଠ ଅଙ୍କରେଟି ଦୁର୍ଭିକ୍ଷ ପଡ଼ବ ନବଅଙ୍କେ ମହରଗ ।
ଏଗାର ଅଙ୍କରେ ଘରଜା ପୀଡ଼ିତ ସେହମତ ଯିବ ଭୋଗ । ୫୮ ।

ବାର ଅଙ୍କରେଟି ଆଷଦ ପଡ଼ିବ ଲଂଜା ଷଚ୍ଛମେ ଷଡ଼ିବ ।
ଇନ୍ଦ୍ର ଅନ୍ୟାସ୍ତେ ଜଲଭଣା କରବ କୃଷିହାନ ଯେ ହୋଇବ । ୫୯ ।

ସହସ୍ର ସହସ୍ର ଚର ରଖୁଥିବେ ଦଣ୍ଡ ଦେଉଥିବେ ପୁଣ ।
କାହାକୁ ମାରବେ କାହାକୁ ତାରବେ କେହ ନ ବୋଲବେ ପୁଣ । ୬୦ ।

ଅଗ୍ୟାନୀମାନେ ଯେ ଗ୍ୟାଂନୀ ବୋଲଇବେ ଗୃହାର ଶୁଣାକୁ ନାହିଂ ।
ଅଲପକ ଜନ ପ୍ରଚଣ୍ଡ ହୋଇବେ କେହ ନ ମାନବେ କାହିଂ । ୬୧ ।

ମହା ମହା ବଳ ରାଉତମାନେ ଯେ ମାହାବଳୀ ସେହୁ ଜାଣ ।
ପରଦ୍ରବ୍ୟ ଖାଇ ପରକୁ ମାରବେ ଏହ ପ୍ରକାର ଭଆଣ । ୬୨ ।

ତେର ଅଙ୍କ ଯାଇ ଚଉଦ ଅଙ୍କରେ ଖଜ ମରୁଡ଼ି ହୋଇବ ।
ଘୋର ଜଳ ବୃଷ୍ଟି ଅକାଳ କରିବ କୃଷ କେବେହେଁ ନୋହିବ । ୭୩ ।

ବଡ଼ବଡ଼ ତରୁ ଉପୁଡ଼ି ପଡ଼ିବ ନ ରହିବ ଘର ସ୍ଥଳ ।
କୂଳକୁ ଲଂଘିଣ ଆସିବ ଯେ ମାଡ଼ି ଉଜାଣି ସାଗର ଜଳ । ୭୪ ।

ଦୁର୍ଭିକ୍ଷ ପଡ଼ିବ କୃଷିହିଁ ନୋହିବ ରଜା କର ନ ଛାଡ଼ିବ ।
ଗଣ୍ଡାକ କଡ଼ାକ ସହିତେ ଗରୁଡ଼ ମାଡ଼ମାର ଚାଲୁଥିବ । ୭୫ ।

ଅସୁରର ମାୟା ଅସୁର ପ୍ରକୃତ କେହି ନ ଜାଣିମେ ପୁଣ ।
ଏକର କଥା ଆରେକ ନ ଜାଣିବ ଘୋର ତରକ ପ୍ରାମାଣ । ୭୬ ।

ଅଭକ୍ଷ ଭକ୍ଷନ୍ତି ଗୋବଧ କରନ୍ତି ଅତି ହୀନ ଜାତି ସେହି ।
ଏକା ସତକଥା କେବେ ନ ଛାଡ଼ନ୍ତି ଲକ୍ଷ୍ମୀ ତାଙ୍କ କାନ୍ଧେ ଥାଇ । ୭୭ ।

ଯେସନେକେ ସେହୁ ଜଏ ଯେ ହୋଅନ୍ତି ଅସି ରଜ ଦଣ୍ଡଧର ।
ଚଉଦ ଅଙ୍କ ହିସାବରେ ଯେ ପୁଣ ପନ୍ଦର ଅଙ୍କ ମଧ୍ୟର । ୭୮ ।

ମନୁଷ୍ୟମାନଙ୍କ ବିପତ୍ତି ପଡ଼ିବ ଯେହି ଓଡ଼ିଶା ରାଜ୍ୟରେ ।
ପନ୍ଦର ଅଙ୍କରେ ମରୁଡ଼ି ପଡ଼ିବ କାଳ ଘୋଟିବ ସଂସାରେ । ୭୯ ।

ଏହି ଓଡ଼ିଶାରେ ପଡ଼ିବ ବିପତ୍ତି ଏକୁ ଏକ ଦିନ ଦିବ ।
ଭୂମିକମ୍ପ ବୋଲି ବିନତାନନ୍ଦନ ପୃଥ୍ୱୀରେ ହିର ପଡ଼ିବ । ୮୦ ।

ଠାବେ ଠାବେ ଭାଗବତ ସେ କରିବେ ଉତ୍ସୁକ ହୋଇବେ ପ୍ରାଣୀ ।
ଭୂମିକମ୍ପ ଖାର କେତେବେହେଁ ନୋହିବ କହିଲି ତୋ ଆଗେ ପୁଣି । ୮୧ ।

ଝିଣ୍ଟିକା ବୋଲିଣ ଏକ ବର୍ଣ୍ଣପୋକ ଆସିବେ ଶୂନ୍ୟରୁ ଉଡ଼ି ।
ଆକାଶ ସିନ୍ଦୂର ବରନ ଦିଶିବ ଲୋକରେ ପଡ଼ିବ ହୁରି । ୮୨ ।

ବୃକ୍ଷହିଁ ଗୃହହିଁ ଗଛପତ୍ର ଚରିଯିବେ ଶସ୍ୟ ହୋଇଯିବ ଊଣା ।
ଅପଥ ପଥରେ ମାଡ଼ି ଯାଉଥିବେ ଲୋକମାନେ ହୋଇ ବଣା । ୮୩ ।

ଅତି ନିରଣ ପ୍ରାଣୀମାନେ ହୋଇବେ ଦୟା ପଦ ନକହିବେ ।
ନରକ ଦୁଃଖୀଜନଙ୍କର ଗୁହାରି ଗୁହାରିଆ ନଶୁଣିବେ । ୮୪ ।

ଆକାଶରେ ଧ୍ୱଜା ଉଡ଼ିବ ଗରୁଡ଼ ପୂର୍ବ ପଶ୍ଚିମରେ ପୁଣ ।
ଦିନୁଂଦିନ ଜନେ କଷଣ ପାଇବେ ଜାଣ ବିନତା ନନ୍ଦନ । ୮୫ ।

ମୂହିଁ ମେଦନୀକି ଛାଡ଼ିବ ଗରୁଡ଼ ଘୋର କଳିକାଳ ଦେଖି ।
ଗ୍ରାମ ଦେବତାଏ ଛାଡ଼ି ପଳାଇବେ ଗଙ୍ଗା ହେବ ନିରମାଖି । ୮୬ ।

ଚଣ୍ଡୀ ଚାମୁଣ୍ଡାଏ ମାତିବେ ଗରୁଡ଼ ଯୋଗିନୀଗଣଙ୍କୁ ଘେନ ।
ଚୂପତ ରଖିବୁ କାହିଁ ନକହିବୁ ଏହି କଥାଗୋଟି ପୁଣି । ୮୭ ।

ବରୂପା ବୋଲିଣ ଏକ ନଦୀ ଅଛୁ ସିଦ୍ଧ ଥାନ ସେ ଅଟଇ ।
ପର୍ବତ ଶିଖରେ ଜଳ ରହିଅଛୁ ପଦ୍ମେକ ଫୁଟିବ ତହିଁ । ୭୮ ।

ପଦ୍ମ ଏକ ଫୁଟିଅଛୁ ହୋ ଗରୁଡ଼ କେହି ଦେଖି ନ ପାରନ୍ତି ।
ଅନେକ ସିଦ୍ଧ ସାଧୁମାନେ ବେଢ଼ିଣ ନାମ କୀର୍ତ୍ତନ କରନ୍ତି । ୭୯ ।

ମଙ୍କେଶ୍ୱର ବୋଲି ଯଉଂ ଶିବର ଉତ୍ତରାଙ୍ଗୀ ବହେ ଯହିଁ ।
ସେହିଠାରୁଂ ବନ୍ଧ ଭାଙ୍ଗିଣ ସିବଟି ତ୍ରିବେଣୀଶ୍ୱରଙ୍କ ଯହିଁ । ୮୦ ।

ନଇବଟି ସିବ ସେଠାରେ ଗରୁଡ଼ ତ୍ରିବେଣୀଧାର ହୋଇବ ।
ମହାନଦୀରୁ ସେ ଧାରେକ ଫିଟିବ କୃଷ୍ଣଭଦ୍ରା ନାମ ହେବ । ୮୧ ।

ତେଲଙ୍ଗା ମୁକୁନ୍ଦ ବୋଲି ଏକ ରାଜା ଓଡ଼ିଶା ଦେଶରେ ହେବ ।
ବାରବାଟୀ କଲ୍ପ ସୁମୁରତ କର କାଠରଥ ସେହି ରଖିବ । ୮୨ ।

ମହାନଦୀ କୂଳେ ସିଦ୍ଧ ସ୍ଥାନମାନ ଅଛନ୍ତି ମୋର ଭଗତେ ।
ମୋ ନାମ ଭଜନ କରିବେ ଗରୁଡ଼ ରହିଣ ତହିଁ ଗୁପତେ । ୮୩ ।
ନନ୍ଦକିଶୋର ବୋଲି ସେ ରାଜନ ତହିଁ ପାଟ ବନ୍ଧାଇବ ।
ଭୁବନେଶ୍ୱରର ବିନ୍ଦୁ ସାଗରରୁ ଖଣ୍ଡା ବାହାର ହୋଇବ । ୮୪ ।

ତେର ସୁଆରଙ୍କ ସଙ୍ଗତରେ ଆଉ ଜଗିଲନ୍ତା କେହି ନାହିଁ ।
ଦୁଷ୍ଟଯାକ ସବୁ ବିନାଶ ହୋଇବେ ସନ୍ଥଙ୍କୁ ରଖିବ ମୁହିଁ । ୮୫ ।

ଚନ୍ଦତୋଳା କୂଳେ ଅବଷେକ ହୋଇଂ ନବତନ ରାଜା ପୁଣ ।
ଦମନ ଯାକ ନସୋଧନ ହୋଇବେ କାଳିଆ ମାରିବ ଜାଣ । ୮୬ ।

ଆସିଣ ସହସ୍ର କାଳିଆ ମାରିବେ ମାଲିମାନେ ନାଶଯିବେ ।
ଏକ ଅକ୍ଷର ଭଜନ କରିଣ କେତୁବା ପ୍ରଚ୍ଛନ୍ନ ହେବେ । ୮୭ ।

ଶ୍ରୀକୃଷ୍ଣ ବଚନ ଶୁଣିଣ ଗରୁଡ଼ ବୋଲଇ ଶୁଣିମା ହରି ।
କଥାସ୍ତେ ସଂଶୟ ଲଗିଲା ହେ ମୋତେ କହିବାକ ଚକ୍ରଧାରୀ । ୮୮ ।

ସାକ୍ଷାତରେ କ ଅବତାର ହୋଇବ ନୀଳାଞ୍ଚଳ ଗୁଡ଼ି ଜାଣ ।
ଏହି ପରକାରେ ଶହେ ଯେ ବରଷ ଶୁଣି ହୋଇବ କାରଣ । ୮୯ ।

ଗରୁଡ଼ ବଚନ ଶୁଣି ନାରାୟେଣ ବୋଲନ୍ତି ଶୁଣ ହୋ ବୀର ।
ଯାହା ପଚାରିଲୁ ଫିଟାଇ କହିବା ଧନ୍ୟ ବିନତା କୁମର । ୯୦ ।

ବାଆସ୍ତର ଗଣ୍ଡା ଯୁଗ ଗଲେ ବୀର ବ୍ରହ୍ମାଙ୍କୁ ଘଡ଼ିଏ ଜାଣ ।
ଏହି ପରକାରେ ଶହେଟି ବରଷ ବ୍ରହ୍ମାର ବିନାଶ ପୁଣ । ୯୧ ।

ଏହି ରୂପେ ଯେତେ ବ୍ରହ୍ମା ନାଶଗଲେ ବିଷ୍ଣୁ ପ୍ରଳୟେ ହୋଅଇ ।
ପ୍ରଳୟ କଳପବଟ ସହିତରେ ଏହି ନୀଳାଞ୍ଚଳେ ଥାଇ । ୯୨ ।

ଏହିରୂପେ ସିନା ଶ୍ରୀଙ୍ଗର ମହିମା ଯୁଗେ ଯୁଗେ ମୋର ରୂପ ।
ମୋହ ତେଜ ଯେନ ଏକଇଂ ଗୁପତ ବଟରେ ବଞ୍ଚାଇ ପାଟ । ୯୩ ।

ଯାଜପୁରଠ'ରେ ବୈତରଣୀ କୂଳେ ଅଶ୍ୱ ଉପରେ ଚଢ଼ିବ ।
ଖଣ୍ଡା କରେ ଧରି ଦୁଷ୍ଟଙ୍କୁ ନିବାରି ସନ୍ଥ ଜନଙ୍କୁ ରଖିବ । ୯୪ ।

ଚଉଦ୍ୱାର କଳ୍ପ ଠାବରୁ ଯେ ଜାଣ ହଂସନାଥଙ୍କର ଯାଏ ।
ଧନଲେଣ ନଢକେଣ ହେ। ଗରୁଡ଼ ଜାଣ ଅତି ପୁଣ୍ୟମଏ । ୯୫ ।

ମୋହନାବର ଅବର ଯେତେ ସ୍ଥାନ ଅଛଇ ବନତାସୁତ ।
ସେହି ସ୍ଥାନମାନ ଅବୋଗ ରହିବେ ମୋହର ଯେତେ ଭଗତ । ୯୬ ।

ଯାଜପୁରଠାରୁ ଲୋକନାଥ ଯାଏ ମୁହିଂଟି ଘର ଅଛଇ ।
ଯାଜପୁରଠାରୁ କ୍ଷେତ୍ର ଯାଏ ମୋର ଠିକେ ଠିକେ ଦେଲି କହି । ୯୭ ।

କ୍ଷେତ୍ରର ମହିମା ନାହିଂନା ଉପମା ଯହିଂ ସାକ୍ଷାତେ ମୁଂ ଘର ।
ଏହିରୂପେ ଯୁଗେ ଯୁଗେ ମୁଂ ରହିଛୁ ଏହି ନୀଳଗିରି ମୋର । ୯୮ ।

ଭୁବନେଶ୍ୱର ଯେ ଏକାମ୍ରକାନନ ଏସବୁ ମୋ ଗୋପ୍ୟସ୍ଥାନ ।
ଆଉ ଜଗତରେ ଯେତେ ସିଦ୍ଧସ୍ଥାନ ପୁରାଣେ ଅଛୁ ବର୍ଣ୍ଣନ । ୯୯ ।

ସେ ସକଳ ସ୍ଥାନମାନଙ୍କ ମହିମା ଶୁଣିଥିବୁ ହେ। ଗରୁଡ଼ ।
ଗୁପତ ସ୍ଥାନମାନ ମୁହିଂ କହିଲି ମନରୁ ଫଣସ୍ତ ଗୁଡ଼ । ୧୦୦ ।

ଯୁଗେ ଯୁଗେ ରୂହି ଅଛୁ ମୋତେ ବହି ତୋଠାରୁ ବଡ଼କେ ନାହିଂ ।
ତୁହି ନିଜ ଅଙ୍ଗ ଅଟୁ ହେ। ଗରୁଡ଼ କହିଲି ତୋତେ ଫିଟାଇ । ୧୦୧ ।

ଗୁପତ କରିବୁ କାହିଂ ନ କହିବୁ ପ୍ରଘଟ ନୁହଇ ଘର ।
ମୋହର ଭଗତ ଆଗରେ କହିବୁ ଘେଣ ତୋତେଟି ମୋହର । ୧୦୨ ।

ଅମୂଲ୍ୟ ପଦାର୍ଥ ରତ୍ନନିଧି ସାର ମୋର ଶ୍ରୀମୁଖ ବଚନ ।
ଯହିଂ ଜନ ହାସ୍ୟ କରିବ ଗରୁଡ଼ କାଳଚକ୍ରେ ହେବ ଛିନ୍ନ । ୧୦୩ ।

ମାହାନନ୍ଦ ଯେ ଫିଟିବ ଗରୁଡ଼ ଏଥିରେ ଫଣସ୍ତ ନାହିଂ ।
ମୁଂ ଯାକୁ ରଖିବ ସେହି ସେ ରହିବ କହିଲି ତୋତେ ବୁଝାଇ । ୧୦୪ ।

ମୋହର ଭଗତ ଜନ ସେ ଅଟଇଂ ସନ୍ଥଙ୍କ ଫଖାଳ ଧନ ।
ମୂର୍ଖ ପାଷାଣ୍ଡକୁ କେବେ ନକହିବୁ କହିଲେ ଅପ୍ରାଧ ପୁଣ । ୧୦୫ ।

ଗରୁଡ଼ ଶ୍ରୀକୃଷ୍ଣ ସ୍ନେହମନ୍ତ୍ରେ ସମ୍ବାଦ ଶୁଣିଲେ ପାପ ନାଶଇ ।
ସନ୍ଥ ଜନ ହିତେ ଏହା ମୁଂ କଲଇଂ ଦନ ଅଚ୍ୟୁତ କହଇଂ । ୧୦୬ ।

ଇତଶ୍ରୀ ମହିମା ଶାସ୍ତ୍ରେ ଗରୁଡ଼ ଗୀତାୟାଂ ଶ୍ରୀକୃଷ୍ଣ ଗରୁଡ଼ ସମ୍ବାଦେ ସିଦ୍ଧପୀଠ
ସ୍ଥାନ ବର୍ଣ୍ଣନଂ ନାମୋ ଷଷ୍ଠଃ ଅଧ୍ୟାୟଃ ॥ ୬ ॥

# ସପ୍ତମ ଅଧ୍ୟାୟ

ବୋଲଇ ଗରୁଡ଼ ଗୋକୁଳ ନାଏକ ଶୁଣିମା ଗୁହାରି ମୋର ।
ଆଉ  କଉଂ କଥା ଶୁଣିମି ଗୋସାଇଂ ଶୁଣି ହୋଇବ ନିସ୍ତାର । ୧ ।

ତୁହି  ସେ କରତା ଦଇବ ବିଧାତା ସବୁ ତୋହର ଭିଆଣ ।
ନକଳି  କଥାକୁ କଳ ହୋ  ଗୋସାଇଂ ତୁମ୍ଭ ବିନୁ ନାହିଂ ଆନ । ୨ ।

ଯଉଂ ଯୁଗରେ ଯଉଂ ଲୀଳା ତୁମ୍ଭର କର ଆରତ ନାଶନ ।
କଳି ଯୁଗରେ କଲ୍‌କି ଅବତାର ମ୍ଳେଚ୍ଛଙ୍କର ନିବାରଣ । ୩ ।

ସାନକୁ ବଡ଼ ବଡ଼କୁ ସାନକରି ପାରୁ ତୁହି ହେ ଗୋସାଇଂ ।
ତୋହର କୃପା ନୋହିଲେ କି ଦମନ ଆସନ୍ତେ ଓଡ଼ିଶା ଭୂଇଂ । ୪ ।

ଏବେ ଏଣିକି ସେ କି କଥା ହୋଇବ ତାହା କହ ଦାମୋଦର ।
ଶୁଣିଲେ ଯେ ହେତୁ ରହିବ ମୋହୋର ଦେଖିବଇଂ ନୟନର । ୫ ।

ଗରୁଡ଼ ମୁଖରୁ ଏମନ୍ତ ଶୁଣିଣ ହସନ୍ତି କମଳାବର ।
ଧନ୍ୟ ହେ ଗରୁଡ଼  ଭଲ ପଚାରିଲୁ କହିବ ତୋହ ଆଗର । ୬ ।

କାଳେ ଯେତେହେଁକ ଘଟନା ଘଟିବ ଉତପାତ ଲାଗିଯିବ ।
ଭଲ ଭଲ ଲୋକେ ଅକର୍ମ କରିବେ  କୁଳ ଆଗର ନଥିବ । ୭ ।

ଖେବନେଶ୍ୱରେଟି ଭୈରେବୀ ଡାକିବ ଜଣାଗ୍ରାନ୍ଧରେଟି ଜାଣ ।
ବାସୁଆ ବଳଦ ଉଭା ହୋଇଥିବ ଏକ ପାଦରେ ନୂତୋଣ । ୮ ।

ଚଳନ ଡାକରେ ଉଚାଟ ଦେବୀ ହେବେ ଆପେ ହୋଇବେ ବାହାର ।
ଝଣ୍ଡା ଫରି ଧରିଥିବ ଯେ ଆଗରେ ଆପେ ଥିବେ ସଙ୍ଗତର । ୯ ।

ଦଣାସନ ଘାଟ ଦେବୀ ଜଗିଛନ୍ତି ବରହାଦେବ ଯେ ସେହି ।
ସେହିଠାବେ ଦେବୀ ଉଭା ସେ ହୋଇବେ ଉତ୍ତର ଦଗକୁ ଚାହିଂ । ୧୦ ।

ସେହି ସ୍ୱର ଡାକ ଯେତେ ଲୋକଙ୍କର ଶ୍ରବଣରେ ସମାଇବ ।
ଅକାଳମୃତ୍ୟୁ ହବେ ହୋ  ଗରୁଡ଼ ଗୁପତ ମରୁଡ଼ି ହେବ । ୧୧ ।

ଏମନ୍ତ ବଚନ ଶୁଣିଣ ଗରୁଡ଼ କରପଦ୍ମ ଯେ ଯୋଡ଼ିଲା ।
କଥାସ୍ୱେ ସଂଶୟ ଲାଗିଲା ଗୋସାଇଂ ପଦ୍ମପାଦେ ଜଣାଇଲା । ୧୨ ।

ଯାହାର ଡାକରେ ବ୍ରହ୍ମାଣ୍ଡ କମ୍ପିବ ଦେବୀମାନେ ଯେ କମ୍ପିବେ ।
ସେ ଡାକ ସମସ୍ତ ଜନକୁ ଶୁଭିବ କେହି ଆଉ ନ ରହିବେ । ୧୩ ।

ଶ୍ରୀକୃଷ୍ଣ କହନ୍ତି ଶୁଣହୋ ଗରୁଡ଼ ଯାହା ପଚାରିଲୁ ତୁହି ।
ସୁଦର୍ଶନ ଚକ୍ର ଯହିଂ ଭ୍ରମୁଥିବ ତାହାଙ୍କୁ ରଖିବ ମୁହିଂ । ୧୪ ।

ଚନ୍ଦ ଉହାଡ଼ରେ କେବେ ନ ଶୁଭିବ ସେ ଜନମାନେ ରହିବେ ।
ବିଶ୍ୱାସ ଘାତକୀ ଅଘୋର ପାତକୀ ଦୁଷ୍ଟଜନ ନାଶଯିବେ । ୧୫ ।

ହିଂସୁକ ମଶବେ କେହି ନ ରହିବେ ଶୁଣ ବିନତାର ବତ୍ସ ।
ଆଉ ଯଉଂ କଥା ମନର ବେବସ୍ଥା ତାହା କହିବାକ ବାଛୁ । ୧୬ ।

ଯାଜପୁରଠାରୁ କ୍ଷେତ୍ର ଯାଏ ମୋର ଠିକେ ଠିକେ ଦେଲି କହି ।
ଯେଉଂ ସ୍ଥାନେ ମୋର ଭଗତ ଅଛନ୍ତି କହିଦେଲି ତୋତେ ଫେଇ । ୧୭ ।

ନେମାଲ ବଟ ପାଶରେ ହେ ଗରୁଡ଼ ଜଳୌକା ଗିଶ ସହିତେ ।
ମାହାନଦୀଠାରୁ କୃଆଂସନାଥ ଯାଏ ଖଣ୍ଡଗିଶ ଆଦି ଯେତେ । ୧୮ ।

ଠାବେ ଠାବେ ଭକ୍ତଗଣ ଛନ୍ତି ଚହି କାଳ ପଶି ନ ପାରଇ ।
ଯାଜପୁରଠାରୁ ଲୋକନାଥଯାଏ ମୁହିଂ ଉହାଡ଼ ଅଛଇଂ । ୧୯ ।

କ୍ଷେତ୍ରର ମହିମା ନାହିଂନା ଉପାମା ଯହିଂ ସାକ୍ଷାତେ ମୁଂ ସ୍ଥିର ।
ଗୁପତ କରଣ ନିଷ୍ଟେ ରଖିଥିବୁ ସ୍ୱଣ ତୋତେଟି ମୋହର । ୨୦ ।

ନିର୍ମଳ ଭକ୍ତିରେ ଯେ ମୋତେ ଭଜନ୍ତି ମୁଂ ତାହା ଘେନଇଂ ବୀର ।
କଲଣାରେ ଯେବେ ମେରୁତୁଲ୍ୟ ହୋଇ ନ କରଇ ଅଙ୍ଗିକାର । ୨୧ ।

ଯେତେବେଳେ ଭକ୍ତ ମାଳା ମୋ ଭଜନ୍ତି ଓଂକାର ଅକ୍ଷର ଧଶ ।
ସ୍ୱେଥେ ଭକ୍ତ ପିତା ଅଟଇ ମୋହର ପିତା ଶବ୍ଦକୁ ନିବାଶ । ୨୨ ।

ପିତା ଶବ୍ଦ ବୋଲି କ୍ଷଣେ ନ ରଖଇ ଚକ୍ରେ ତାକୁ ନିବାରଇ ।
କ୍ଷଣେ ଭକ୍ତ ଦୁଃଖ ସହି ନପାରଇ କହିଲି ତୋ ଆଗେ ଫେଇ । ୨୩ ।

ଏହୁ କଲି ଘୋର ଅଟଇ ଦୁସ୍ତର ବୁଝାଇ କହିଲୁଂ ତୋତେ ।
ଯୋଗ୍ନୀ ବ୍ରମଣ୍ଡା ଦେବଦେବୀ ମାଧବେ ଘୋର ସାଂଗ୍ରାମ ହିଂ ଏଥେ । ୨୪ ।

କଲ୍କୀ ଅବତାର ହୋଇବ ଯେ ମୁହିଂ ସାଧିବ ଅସାଧ ଭଲେ ।
ସ୍ୱେମନ୍ତ ଶୁଣିଣ ବିନତା ନନ୍ଦନ ପଡ଼ିଲା ଚରଣ ତଳେ । ୨୫ ।

ନିସ୍ତରିଲି ବୋଲି କରପଦ୍ମ ଯୋଡ଼ି ଶୋକ ଭରେଣ କାନ୍ଦିଲି ।
କି କର୍ମ ସାଧିଲେ ଉଧୁରିବ ସ୍ୱେଥି ବୁଝାଇ କହି ହେ ଭଲି । ୨୬ ।

ଶ୍ରୀହରି ବୋଇଲେ ଶୁଣ ତୁ ଗରୁଡ଼ ଯାହା ପଗୃଶଲୁ ମୋତେ ।
ଏକାକ୍ଷରେ ଲକ୍ଷ ଠାକୁରଙ୍କୁ କଲେ ଦର୍ପଣ ଏକାଗ୍ର ଚିତ୍ତେ । ୨୭ ।

କୈବାତ ଅବାଡ଼ ବୁଝାଇ ଦେବା ବାବୁ ପରମହଂସର ଦେହା ।
ଗୁପ୍ତାରୂପେ ଚହି ମାସ୍ଥା ବସ୍ତାଶଛୁ କାଷ୍ଠାରେ ଦେଖିବ ଯେବା । ୨୮ ।

ଯିହିଂ ଅନାଦି ଅଶେଷ ରୂପେ ସାଧି ଆଦିଶକ୍ତି ବୋଲାଇଲି ।
ଯାହାର ମହିମା ନ ଜାଣଇ ବ୍ରହ୍ମା ଏକା ନାରଦ ପାଇଲି । ୨୯ ।

ରୂପ ରେଖ ନାହିଂ ଶୂନ୍ୟେ ଭ୍ରମୁଥାଇ ମହାଶୂନ୍ୟ ଯାର ଗାଦ ।
ସେହି ମହାମନ୍ତ୍ର ଜପି ବ୍ରହ୍ମାନନ୍ଦ ତେବେ ପାଇବୁ ତୁ ଭେଦ । ୩୦ ।

ଇଚ୍ଛା ପୁଟରେ ଏ ସଂସାର ସର୍ଜଇ ଇଚ୍ଛାରେ କରଇ ନାସ୍ତ ।
ଏମନ୍ତ ପ୍ରଭୁଙ୍କୁ ଭେଟିବୁ ଗରୁଡ଼ ପାତେକ ଯିବ ତୋ ଖସ୍ତ । ୩୧ ।

ସେ ପ୍ରଭୁ ଆତ୍ରସ୍ତ କଲେଟି ଷପଦ ତମ ପୋଟି ନ ପାଇବ ।
ଆତ୍ରସ୍ତ ନାମଟି ଅଟେ ଏକାକ୍ଷର ଯାହା ଜପୁଥାନ୍ତି ଶିବ । ୩୨ ।

ଓଂମତ ଆଦଶକ୍ତ ବୋଲି ଜାଣିବୁ ଅବନାରୁ ବନା ଛଇ ।
ବାନା ବ୍ରହ୍ମା ବିଷ୍ଣୁ ମହେଶ ଏ ତିନ ଯେବଣ ତ୍ରିଗୁଣ ନାଶ । ୩୩ ।

ପଞ୍ଚତତ୍ତ୍ୱରେ ଯୁଗଳ ରୂପ ଧରି ସଂସାରେ ଫେଡ଼ ରକନ୍ତି ।
ଷଡ଼ ଅଇଶ୍ୱ ସପତାଙ୍କ ଏମାନେ ତାଙ୍କ ସାହା ହୋଇଥାନ୍ତି । ୩୪ ।

ଆଦ ଉଦସ୍ତରୁ ଅଷ୍ଟାଙ୍ଗ ଜନମ ଏକାଦଶ ତହୁଂ ଖ୍ୟାତ ।
ଏକାଦଶରୁ ଯେ ତେର ପ୍ରକାଶିଲା ମିଶା ହୋ ବନତା ସୁତ । ୩୫ ।

ପଚଶ ହେଲା କ ନହେଲ ଗରୁଡ଼ ତାହାକୁ କହୁ ପ୍ରକୃତ ।
ଯହିଂରୁ ପଞ୍ଚାଶ ଅକ୍ଷର ଛଇଛୁ ବାର ମାତ୍ରା ତହିଂ ଥିତ । ୩୬ ।

ଚର୍ଯ୍ୟା ମୂରତ ଦେଉଳ ପ୍ରକାଶ ସେ ଦେଉଳ ଅତ ବଡ଼ ।
ସେ ଦେଉଳ ଏକା ଜାଣେ ଅବଧୂତ ତାହାର ଚୂଳଟି ଦୃଢ଼ । ୩୭ ।

ମହା ପ୍ରଳୟରେ ସେ ଦେଉଳ ଗୋଟି ଭଙ୍ଗି ନ ଯାଏଟି ଜାଣ ।
ଅବଧୂତ ବୋଲି କାହାକୁ କହନ୍ତି ଶୁଣ ବନତା ନନ୍ଦନ । ୩୮ ।

ଧୃତ୍ରିପଣ ତହିଂ କଛହିଂ ଯେ ନାହିଂ ତେଣୁ ସେହି ଅବଧୂତ ।
ଉତ୍ପତ୍ତି ପ୍ରଳୟ ସେହିଠାରୁ ହୁଏ ଥିତ ସେ ବନତାସୁତ । ୩୯ ।

ଜର ରଜ ଶପ ବଦ ଏହି ଆଠ ଅକ୍ଷର ଅବନା ଜାଣ ।
ଏହାକୁ ତୁ ଭଜ ପ ଇଲେ ଗରୁଡ଼ ପାଇବୁ ନଷ୍ଟେ କାରଣ । ୪୦ ।

ଶବଦ ସ୍ୱରୂପ ହଂସର ଯେ ଦୀକ୍ଷା ଏମାନ ତୋତେ କହିବା ।
ଗୁପତ କରିବୁ କାହିଂ ନ କହିବୁ ଅନ୍ତରେ କରିବୁ ସେବା । ୪୧ ।

ଜ୍ୟୋତରୂପ ଗୋଟି ଅଟଇ ଧବଳ ଶବଦ ସ୍ୱରୂପ ନୀଳ ।
ଅବାଡ଼ ଗୋଟିକ ଜାଣିଥିବୁ ଶୂନ୍ୟ ବାଡ଼ ଗ୍ରହ୍ମାର ପଟଳ । ୪୨ ।

ହଂସରୂପ ଗୋଟି ଅପୁର୍ବ ସୁନ୍ଦର ଡୋଳାରେ ଖେଳା କରଇ ।
ଏମନ୍ତେ ଅନନ୍ତ ରୂପ ସେ ଅନନ୍ତ ଅନନ୍ତ ଶଯ୍ୟାରେ ଆଇ । ୪୩ ।

ଅନନ୍ତ ସଂସାରେ ଅଛଇ ସେ ପୋଟି ଅନନ୍ତ ମନ୍ତ୍ରଟି ତାର ।
ବିରାଟ ମନ୍ତ୍ର ଉପହାର ତାହାର ମରୁତ କୋଠ ଭଣ୍ଡାର । ୪୪ ।

ଦକଦକ ହୋଇ ଅନଳ ଜଳଇ ଦେବା ଦେବା କହୁଥାଇ ।
ତହିଁ ପରମ ଏକାକ୍ଷରେ ବାର ଜ୍ୟୋତରୂପେ ବସ୍ତଜଇ । ୪୫ ।

ଅଧେକ ମାଈ ଯେ ଅଧେକ ଅଣ୍ଡିର ସ୍ତିରି ପୁରୁଷ ଯେ ନାହିଁ ।
ଅଣାକାର ବ୍ରହ୍ମ ଅଖଣ୍ଡ ଜ୍ୟୋତରେ ଅଖଣ୍ଡ ରୂପରେ ରହି । ୪୬ ।

ଶିବ ସଉନକ ବ୍ରହ୍ମା ଆଦି ସୁର ଭେଟ ନ ପାନ୍ତି ଯାହାର ।
ମନ୍ଦ ମନ୍ଦ ହୋଇ ମଳୟ ପବନ ବହୁଥାଇ ନିରନ୍ତର । ୪୭ ।

କାକୁସ୍ତ ହୋଇଣ ଗରୁଡ କହଇ ବେନି ଚରଣକୁ ଛୁଇଁ ।
କହିଲ ଅଖଣ୍ଡ ବ୍ରହ୍ମର ଯେ ଜ୍ୟୋତ ହେ ପ୍ରଭୁ କମଳାସାଇଁ । ୪୮ ।

ଗ୍ରସ୍ତା କାସ୍ତା ଦେବ ଅମ୍ବର ପ୍ରକୃତ ଆକୃତ ବିକୃତ ମାନ ।
ଶୁଣିଲି ତବ ଶ୍ରୀମୁଖରୁ ଗୋସାଇଁ ଅମୃତମୟେ ବଚନ । ୪୯ ।

ହଂସ ବୋଲି ଯାହା କହିଲ ତାହାର ରୂପଗୁଣ ମୋତେ କହ ।
ଆହେ ଭବଗାହି ଭବ ଭୟ ନିସ୍ତାରଣକାରି ଦୟାମୟ । ୫୦ ।

ଗରୁଡ଼ ବଚନ ଶୁଣିଣ ମଦନମୋହନ କହନ୍ତି ଶୁଣ ।
ତୋଠାରେ ମୋହର ଛନ୍ଦ ଯେ କପଟ ନାହିଁ ବିନତା ନନ୍ଦନ । ୫୧ ।

ହଂସରୂପ ଗୋଟି ଧବଳ ଅଟଇ ତା ନାମ ଅଟେ ପରମ ।
ଅଣ୍ଡ ଗୋଟି ତାର କନ୍ଦର୍ପ ବୋଲଇ ଡେଣା ପ୍ରକୃତି ନାମ । ୫୨ ।

ପାଦ ତାର ଷଡ଼ ଅଇଶ ଅଟଇ ମନ ତାର ଡେଣା ପଦ ।
କଣ୍ଠରେ ତ୍ରିଗୁଣ ଦଉଡ଼ି ବାନ୍ଧିଛି ଚଞ୍ଚୁ ନାସିକା ଶବଦ । ୫୩ ।

ଶ୍ରବଣ ନୟନ ଗୁଣବେଦ କାଣ ଡେଣାରେ ଗମନ କରେ ।
ଏମନ୍ତ ହଂସକୁ ଦେଖି ପାଶଲେଟି କଳିକ ତରିବେ ନରେ । ୫୪ ।

ବ୍ରହ୍ମଜ୍ଞାନ ପଦ ନିଶ୍ଚୟ ଲଭିବେ କହିଲି ତୋ ଆଗେ ସତ ।
ହଂସଟି ଉଦୟ ହଂସଟି ପ୍ରଳୟ ହଂସଟି ସକଳ ସ୍ଥିତ । ୫୫ ।

ହଂସଟି ବାଳକ ହଂସଟି ଯୁବକ ହଂସଟି ବୁଢ଼ା ଅଟଇ ।
ହଂସଟି ରଜନୀ ହଂସଟି ଦିବସ ହଂସଟି ଗୁରୁ ବୋଲଇ । ୫୬ ।

ହଂସ ଲକ୍ଷ୍ମୀ ଦେଇ ପିଉଅଛି ପାଣି ବହିବା କହିବା ପୁଣି ।
ସକଳ ଶୁଣୁଛି ଭ୍ରୂଲତାକୁ ତାଙ୍କି ଲକ୍ଷ୍ମୀଟି ତାର ଗୃହିଣୀ । ୫୭ ।

ମାନ ସରୋବର ଉପେକ୍ଷି ସେ ହଂସ ମାନଗିର ଶିଖେ ବସେ ।
ନୂଆକୁ ପୁରୁଣା ପୁରୁଣାକୁ ନୂଆ କରଇ ରାତ୍ରି ଦିବସେ । ୫୮ ।

ମରଇ ନାହିଁ ସେ ସଦା ଜୀଇଥାଇ ଅତି ସୂକ୍ଷ୍ମ ତାର ଦେହି ।
ଅନ୍ତ୍ରା କଳ୍ପ ଲୋକ ଫଳ ଭୁଞ୍ଜୁଥାଇ ନିଆଶ୍ରିତ ଯେ ନ ପାଇ । ୫୯ ।

ଦୁର୍ଗତି ଛିଣ୍ଡଇ ଦଣ୍ଡେ ଦଣ୍ଡୁ ଥାଇ ଜନ୍ମକୁ କରେ ସଫଳ ।
ଅପୁତ୍ରିକକୁ ସେ ପୁତ୍ରଦାନ କରେ କାଳ ଉପରେ ତା ବଳ । ୬୦ ।

ନିର୍ଦ୍ଧନକୁ ଧନ ଦରିଦ୍ରକୁ ଅନ୍ନ ଅନ୍ଧକୁ ଯେ ଚକ୍ଷୁ ଦାନ ।
ଖଞ୍ଜାକୁ ଚରଣ ବଧିରେ ଶ୍ରବଣ ଦିଅଇଟି ସେହି ପୁଣ । ୬୧ ।

ତାହାର ମାୟାର ଭିଆଣ ସଂସାର ତହିଁ କେହି ନାହିଁ ବଡ଼ ।
ଉଦେ ଅସ୍ତ ଥିତ ସବୁ ଅଟେ ମିଛ ତା ଲକ୍ଷ୍ୟେ ରଖ ଗରୁଡ଼ । ୬୨ ।

ତାହାର ମାୟାକୁ କେହି ନ ଜାଣନ୍ତି ତା ତହୁଁ ନାହିଁ କେ ବଡ଼ ।
ମରୁତ ସଂଜାତ ଚନ୍ଦ୍ର ସୂର୍ଯ୍ୟ ଜାତ ତା ତହୁଁ ଜାତ ଗରୁଡ଼ । ୬୩ ।

ଅବିଦ୍ୟା ମନ୍ଦିର ବୋଲନ୍ତି ତାହାକୁ ଦିବ୍ୟଚକ୍ଷୁରେ ଦେଖିବୁ ।
ରୂପ ନ ଦିଶିବ ସକଳ ଦିଶିବ ସେ ସ୍ଥାନକୁ ଯେବେ ଯିବୁ । ୬୪ ।

ଅପଦାର୍ଥ ସବୁ ପଦାର୍ଥର ପର ଶବଦ ତହିଁଟି ଫୁଟ ।
ରୂପ ଦୀପ ମୂଳେ ପ୍ରକାଶି ଅଛଇ ସେ ରୂପ ସକଳ ପୂରି । ୬୫

ମାଳାଟି ତାହାର ଅଟଇ ଓଁକାର କଳା ଟୀ ନିର୍ବାଣ କୂପ ।
ସେ କୂପେ ରହିଲେ ଭବଭୟ ନାହିଁ କହିଲି ତୋତେ ସ୍ୱରୂପ । ୬୬ ।

ତାର ପାଦ ନଖେ ରହିଅଛି ଜଳ ଜନ୍ମୁଟି ବ୍ରହ୍ମ ପଦାର୍ଥ ।
ବ୍ରହ୍ମରୁ ପବନ ପବନରୁ ଅଗ୍ନି ଅଗ୍ନିରୁ ସକଳ ଭୂତ । ୬୭ ।

ପ୍ରକୃତିକି ଜୟ କରିପାରିଲେଟି ଏମାନ ଚିହ୍ନିବୁ ତୁହି ।
ଅନ୍ନଟି ଜଳକୁ ରହିବ ଆଶ୍ରେୟ ପାଦପଦ୍ମ ଗୋଟି ସେହି । ୬୮ ।

ଫୁଟିବ ସେ ଜଳେ ତୋର ତେତେବେଳେ ଜ୍ଞାନ ନହୋଇବ ଭ୍ରଂଶ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର ବିଦ୍ୟାରେ ପ୍ରକାଶ ହୋଇବ ବିନତା ଶିଷ୍ୟ । ୬୯ ।

ଅନାମିକା ବୋଲି ଯାହାକୁ କହନ୍ତି ସେହିଟି ଅଣ-ଅକ୍ଷର ।
କାହୁଁ ପ୍ରକାଶିଛି କେତେ ଯେ ସଂସାର ଏହି ଭଜନକୁ ଧର । ୭୦ ।

ଅନ୍ତ୍ରାମ୍ବର ପଦ ଲଭିବୁଟି ତେବେ ଅଫୁଟା ପଦ୍ମର ଭ୍ରମ ।
ଧ୍ୱନି କରେ ରହି କେଳିକି ଅବୋର ଫୁଟଇ ଯେବେ ସେ ଫୁଲ । ୭୧ ।

ସେ ଭ୍ରମର ଗୋଟି ବସେ ତୁନିହୋଇ ଭ୍ରମରଗୁମ୍ଫା ତା ନାମ ।
ତାହାକୁ ଭଜନ କର ହେ ଗରୁଡ଼ ହରେ ରାମ କୃଷ୍ଣ ନାମ । ୭୨ ।

ଏହି ଭଜନକୁ ତୁ କରି ପାରିଲେ କଳିକୁ ଜିଣିମୁ ହେଲେ ।
ଏ ଗୁପତ କଥା କାହିଁ ନ କହିବୁ ରଖିବୁ ହୃଦ କମଳେ । ୭୩ ।

ଏମନ୍ତ ଶୁଣିଣ ବିନତା ନନ୍ଦନ ଚରଣ ତଳେ ଲୋଟିଲି ।
ନିସ୍ତରିଲି ବୋଲି କରପଦ୍ମ ଯୋଡ଼ି ଶୋକ ଭରରେ କାନ୍ଦିଲି । ୭୪ ।

ଗରୁଡ଼ଙ୍କୁ ହରି ଏମନ୍ତ ବୁଝାଇ ଦେଉଳରେ ବିଜେ କଲେ ।
କର୍ପୂର ତାମ୍ବୋଳ ଭୁଞ୍ଜିଣ ଶ୍ରୀହରି ପଲଙ୍କରେ ନିଦ୍ରା ଗଲେ । ୭୫ ।

ସନ୍ଥ ଜନଙ୍କର ହିତେ ପୃଚ୍ଛା କଲୁଂ ଆଗ୍ୟାଂ ଦେଲେ ଲକ୍ଷ୍ମୀସାଇଂ ।
ଆହେ ସନ୍ଥଜନେ ଗୁପତେ ରଖିବ ପ୍ରଘଟ କରିବ ନାହିଂ । ୭୬ ।

ଏ ନିତ୍ୟ ନିସ୍ତମ କରି ମହାପ୍ରଭୁ କହିଲେ ଶ୍ରୀମୁଖେ ଜାଣ ।
ଅଗ୍ୟାଂନ ଜନକୁ କେବେହେଂ ନ କହିବୁ କହିଲେ ଅପ୍ରାଧ ପୁଣ । ୭୭ ।

ମହା କଳିଯୁଗ ଅଟଇ ଦୁସ୍ତର ହରି ଆଶ୍ରେ କରି ନର ।
ଶ୍ରୀକୃଷ୍ଣ ପାଦରେ ଚିତ୍ତ ଦେଇଥିଲେ ଘରେ ନ ପଶିବ ବୈର । ୭୮ ।

ଏ କଳି ଯୁଗରେ ଦୁଷ୍ଟ ଜନମାନେ ଅଳ୍ପ ଆୟୁଷ ହୋଇବେ ।
ସନ୍ଥ ଜନମାନେ ଏହିରୂପେ ବସି ଦୁଷ୍ଟ କଥା ଦେଖୁଥିବେ । ୭୯ ।

ଶ୍ରୀକୃଷ୍ଣ ଗରୁଡ଼ ସମ୍ବାଦ ଶୁଣିଲେ ସକଳ ଦୁରିତ ନାଶ ।
ସନ୍ଥଜନ ହିତେ ଶ୍ରୀହରି କୃପାରେ କହିଲି ଅଚ୍ୟୁତଦାସ । ୮୦ ।

ଇତିଶ୍ରୀ ଗରୁଡ଼ ଗୀତାୟାଂ ଆଗତ ଭବିଷ୍ୟ କଥନେ ଶ୍ରୀକୃଷ୍ଣ ଗରୁଡ଼ ସମ୍ବାଦେ ବ୍ରହ୍ମଜ୍ଞାନ ବିଦ୍ୟାୟାଂ କଥନ ନାମଃ ସପ୍ତମୋ ଅଧ୍ୟାୟଃ ॥ ୭ ।

କ୍ଷମସ୍ୟାପି ରଣେଭଙ୍ଗୋ ମୁନିନାଞ୍ଚ ମତିଭ୍ରମ ଯଦି ଶୁଦ୍ଧମଶୁଦ୍ଧ ବା ମମଦୋଷ ନ ବିଦ୍ୟତେ ।

ଶ୍ରୀଗୁରୁ ଉଦ୍ଧାର କରିବେ ।



*ଓ ଜଗନ୍ନାଥ ଦେବାୟ ନମଃ*

ଶରଦ ପୂର୍ଣ୍ଣିମା ଦିନ ଶରଦର କାଳ ।
ଗୋପପୁତ୍ର ମିଳିଣ ଯେ ଗୁରୁଙ୍କର ଆଳ ।୧।

ଗୁରୁଙ୍କ ଚରଣ ତଳେ ହୋଇ ଦଣ୍ଡବତ ।
ପୁନେଇ ଉଚ୍ଛବ ଯାହା ନିମନ୍ତେଣ ଚିତ ।୨।

ଗୁରୁ ଆଗ୍ୟାଂ ଦିଲେ ରାମ କ'ବିଧି ହୋଇବ ।
କେତେ ମୂର୍ତ୍ତି କରିବ ହେ କହିଂ ପୂଜାଇବ ।୩।

ଗୋପସୁତ କରଯୋଡ଼ି କାକୁସ୍ଥ ହୋଇଣ ।
ଶ୍ରୀମୁଖୁଂ ଯେମନ୍ତ ଆଂଗ୍ୟା ହୋଇବାକି ପୁଣ ।୪।

ଶୁଣ ରାମଚନ୍ଦ୍ର ତୁମ୍ଭେ ଭଗତର ବାଣୀ ।
ଅଚ୍ୟୁତ ଦାସ କହଇ ଯାହା ପରମାଣି ।୫।

ଅନେକ ଅନେକ ବେଦ ମୁନିଙ୍କଂ ପଚୁର ।
ସକଳ ମୁନିଙ୍କଂ ପୁଜା କହିଂ ଭବେ ବର ।୬।

ମୁନିଙ୍କ ଉଦସ୍ଥ ଭାବ ତୁମ୍ଭେ ରାମ ଶୁଣ ।
ନିଷ୍ଠା ପୂଜା ବିଧିମାନ ଯେମନ୍ତ ଭିଆଣ ।୭।

ସକଳ ମୁନିଏ ଏକ ଠାବରେ ବସିଲେ ।
ବେଦବାକ୍ୟ ପରମାଣେ ଭାଷା ନିର୍ଣ୍ଣ କଲେ ।୮।

ତ୍ରିବିଧ ଦିନକୁ ପାଞ୍ଚଦିନ ନିଷ୍ଠା କରି ।
ପଞ୍ଚଧା ଦିନକୁ ନିଷ୍ଠା ସପ୍ତଦିନ ଧରି ।୯।

ସପତ ଦିନକୁ ନିଷ୍ଠା ନଅ ଦିନ ସାର ।
ନବଧା ଦିନକୁ ନିଷ୍ଠା ଦ୍ୱାଦଶ ଯେ ଧର ।୧୦।

ଦ୍ୱାଦଶ ଦିନକୁ ନିଷ୍ଠା ପନ୍ଦର ଯେ ତିଥି ।
ଏମନ୍ତ ବିଧିରେ ରାମ ପୂଜିବ ଅତିଥି ।୧୧।

ନୋହିଲେ ଯେ ବେଦ ଦିନ ନିଷ୍ଠା ଆଚରିବ ।
ପୂର୍ବାପୂର୍ବ ମୁନି ରୂପେ ଯେମନ୍ତ ଯେ ଭାବ ।୧୨।

ନିଷ୍ଠାର କେମନ୍ତ ବିଧି କହିବାକି ମୋତେ ।
ପୂଜା ନିଷ୍ଠା ବିଧି ମୋର ନ ରହିଲ ଚିତ୍ତେ ।୧୩।

ଏକ ଦିନ ଏକ ବେଳ ଭୋଜନ କରିବ ।
ଅରୁଆ ତଣ୍ଡୋଳ ଗୁଆ ଘୃତ ସଜୋଇବ ।୧୪।

କଦଳୀ ଯେ ଜାଇମୁଗ ଡିଉଣ ଫଗତ ।
ଏକ ବେଳ ଭୋଜନରେ ବିଧାନ ଗମିତ । ୧୫ ।

ଦ୍ୱିତୀଅ ଦିବସଠାରେ ଭୋଜନ ନିଷେଧ ।
ଭକତି ମୁକତି ଯେବେ ଥୋଇଥିବ ସଧି । ୧୬ ।

ପ୍ରଭାତୁଂ ସ୍ନାହାନ କରି ଗୃହେ ବସିଥିବ ।
ଭଗତ ଚରଣ ଧୋଇ ଗର୍ଭକୁ କ୍ଷେପିବ । ୧୭ ।

ନିଷ୍ଠାଭାବ ଭଗତ କହିଲୁଂ ଶୁଣ ଚନ୍ଦ୍ର ।
ସକଳ ମୁନିମାନଙ୍କ ଯେମନ୍ତ ଚରିତ । ୧୮ ।

ତୃତୀୟ ଦିବସେ ଭଗତଙ୍କୁ ଭୁଂଜାଇବ ।
ଭକ୍ତ ଅବଶେଷ ଖାଇ ଭୋଜନ କରିବ । ୧୯ ।

ଚତୁର୍ଥ ପଞ୍ଚମ ଦିନ ଗୃହରେ ପୂଜିବ ।
ପୂଜା ନିଷ୍ଠା ଭଗତର ଯେହ୍ନେଶ୍ରେଣିକ ଭାବ । ୨୦ ।

ମଧ୍ୟା ଏକାଦଶୀ ବ୍ରତ ଯେହ୍ନାକୁ ଯେ କହି ।
ଏହି ପୂଜାବ୍ରତ ତୋତେ ଦେଉଅଛୁଂ କହି । ୨୧ ।

ନିଷ୍ଠା ପୂଜା ପାଞ୍ଚଦିନେ ଆଗନ୍ତୁଂ ବରଣ ।
ତୁଳସୀ ଜଳ ଦେଇଣ ବିନସ୍ତ ଭିବେଣ । ୨୨ ।

ବିନ୍ଦୁପୂର୍ବ ନାଦପୂର୍ବ ବେନି ଯେବା ଥିବ ।
ଦଣ୍ଡବତ କହି ପାଦେ ବରଣ କରିବ । ୨୩ ।

ନିଷ୍ଠା ଦିନ ଗୃହ ବାସ ସଜାଡ଼ି କରିବ ।
ଅତୃଆ ତଣ୍ଡୋଲ କିଛି ସଜାଡ଼ି ରଖିବ । ୨୪ ।

ପନିପରି ହାଣ୍ଡି କାଠ ସକଳ ବିଧାନ ।
ନିଷ୍ଠା ଦିନ ଦ୍ରବ୍ୟମାନ କରିବ ଶୋଧନ । ୨୫ ।

ପନ୍ଦର ଦିନ ଠାବରୁ ଉଚିତଯୋଗେ ଥିବ ।
ଦ୍ରବେ ଦ୍ରବେ କରିଣ ଭିଆଣ କରିବ । ୨୬ ।

ଉପବାସ ଦିନ ଦଧି ଘୃତମାନ ଯେତେ ।
ଜଳପାନ ବିଧି ଖଣ୍ଡସାକର ସହିତେ । ୨୭ ।

ଦ୍ୱାଦଶ ବର୍ଣ୍ଣରେ ଜଳପାନ ଭିଆଇବ ।
ଶୁଦ୍ଧ ଜାତି ଗୁଡିଆଙ୍କୁ ବରଣ କରିବ । ୨୮ ।

ବିଶୁଦ୍ଧ ଗୋପାଳ ଜଣେ କରିବ ବରଣ ।
ମାଳୀ ତାମ୍ବୋଳିକ ଯେ ଧେନିବ ବରଗିଣ । ୨୯ ।

ତେଲି ହଂସି ବେଣ ଜନ ତୁଳସୀ ଚରିଣ ।
ନାପିତ ଗୋଟିଏକ ବରିବ ସାଇଣ । ୩୦ ।
ରଜକ ସପତ ବେଣ ବରଣ କରିବ ।
ସେବା ଅର୍ଥେ ବନଏ ଯେ କରିଣ କହିବ । ୩୧ ।
ଦ୍ୱାଦଶ କେମନ୍ତ ବିଧି କହ ଗୁରୁଦେବ ।
ଗୁଡ଼ ପାଗ ଗୁଡ଼ିଆ ଯେ ସଜୋନ୍ଧି ରଖିବ । ୩୨ ।
ଗୋପାଳ ବିଧାନ କଥା କେମନ୍ତ ଅଟଇଂ ।
ସକଳ ବିଧାନ କଥା କହିବା ବୁଝାଇଂ । ୩୩ ।
ଗୋପାଳ ସଜାଡ଼ ହୋ କରିବ ଦୁଧ ପାଗ ।
ଜଳପାନ ସଜାଡ଼ ଯେ ଗୁଡ଼ିଆର ଭାଗ । ୩୪ ।
ଉତ୍ତମ ଚକ୍‌କଣ ଦୁଧ ବହଳ କରିବ ।
ଅଧମ ଗୋଟୀକା ପାଗ ସଜାଡ଼ ହୋଇବ । ୩୫ ।
ଘୋଳଦହି ବସାଦହି ଦରମୁହାଂ ଛେନା ।
କଞ୍ଚା ଦୁଧ ବାଫୁଣି ଆଉଟା ଦୁଧ ଘିନା । ୩୬ ।
ଲବଣୀ ଯେ ସର ଘୃତ ଛେନା ପରକାର ।
ଦ୍ୱାଦଶ ବର୍ଣ୍ଣରେ ପାଗ ଏହେବର୍ଣ୍ଣେ ବେଭାର । ୩୭ ।
ଅନେକ ଜାତରେ ପାଗ ଗୋପାଳ ହସ୍ତରେ ।
ପାଗମାନ ରନ୍ଧାଇବ ଆପଣାର ଘରେ । ୩୮ ।
ଗୁଡ଼ିଆ କରିବ ପାଗ ମିଠାଇ ଉଖୁଡ଼ା ।
ଜଳପାନ ବିଧି ନାନା ବର୍ଣ୍ଣେ କରି ନୋସ । ୩୯ ।
ଉଆ ଚୁଡ଼ା ଢେଙ୍ଖୁଡ଼ାର ବିଧାନ ଯେ ଲିଆ ।
ବିନଦ ବିନୋଦ ପାଗ କରିବ ଗୁଡ଼ିଆ । ୪୦ ।
ମୋଟ ଖଣ୍ଡା ସରୁ ମାଳ ଝଂସ ପଦ୍ମମାନ ।
ଖୋସଣି ବାନ୍ଧଣି ଫୁଲ କରିବ ଯତନ । ୪୧ ।
ଗୋଟି ଫୁଲ ନାନା ବର୍ଣ୍ଣେ ମାଳ ବିନୋହିବ ।
ବିବିଧ ବର୍ଣ୍ଣର ପୁଷ୍ପ ମାଳୀ ଆଣି ଦେବ । ୪୨ ।
ସାର ଯେ ବଗଲ୍ଲ କପୂର କାନ୍ତ ପାନ ।
ବଡ଼ ବାନ୍ଧ ତାମ୍ବୋଳିଆ କରିବ ଯତନ । ୪୩ ।
କଉପୁଜା ଅଞ୍ଚଳା ଯେ ପିନ୍ଧିବା ପାଗ୍ରେଡ଼ା ।
ଫେଟା ଯେ ଚୁଡ଼ିଆଗଛ ସିନ୍ଧୁଆ ଦୋସଡ଼ା । ୪୪ ।

ପାଟ ପୀତାମ୍ବର ଯେ ପତନୀ ହୁଂ ପାଗ ।
ବିବିଧ ବସନ ହୁଂସି କରିବ ନିଯୋଗ । ୪୫ ।

ଯଡ଼ା ଯେ ଫୁଲରି ଢଳ ତେଲ ନିଯୋଜନା ।
ଚନ୍ଦନ ନାପିତ ଘୋରି କରିବ ଆଳପନା । ୪୬ ।

ରଜକ ଯେ କାଠମାନ ସଜାଡ଼ି କରିବ ।
ସବୁନ୍ତ ଥାନମାନ ଯେ ଶୁଦ୍ଧ କରିଥିବ । ୪୭ ।

ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୋଦ୍ର ଭାଟ ଯେ ବଢ଼େଇ ।
ବଣିକ ଜଣକେ ଯେ ବରଣ ଥିବ ଦେଇ । ୪୮ ।

କରଯୋଡ଼ି ଜଣାଇଲି ରାମଚନ୍ଦ୍ର ଦାସ ।
ଏହାନ୍ତ କମ୍ପାଇଂ ଲେଡ଼ା କହିବାକ ରସ । ୪୯ ।

ବ୍ରାହ୍ମଣ ଗୋଟିଏ ନିଜ ଭେରବନେ ଆଣିମ ।
ସହସ୍ର ନାମ ଗୁଣିମ ବିପ୍ର ରାମ ନାମ । ୫୦ ।

ଗୃଶ ଜାତି ଅଠରହୁ ପାଟକର ପାଇଂ ।
ଛତିଶ କୁଳ ରନ୍ଧନ ତା ହସ୍ତେ ଭୁଜାଂଇ । ୫୧ ।

ଭଲ ମନ୍ଦ ନିମନ୍ତେଣ କ୍ଷତ୍ରୀ କ ବରଣ ।
ତାଙ୍କ ଥାନ ବଳେ ପୂଜା ଥାପି ପରମାଣ । ୫୨ ।

ବୈଶ୍ୟଙ୍କ ସୁବାସ ଦ୍ରବ୍ୟ ଦେବତା ସନ୍ତୋଷେ ।
ମେଥି ବଡ଼ଜରି ତେଜପତ୍ର ନାନା ରସେ । ୫୩ ।

ଅଦା ଯେ ମରିଚ ଦ୍ରବ୍ୟ ବଣିଆର ସ୍ଥଳ ।
ଢଉଣ ନିମନ୍ତେ ବୈଶ୍ୟ ଦେବ କରି ମୂଳ । ୫୪ ।

ଶୋଦ୍ର ଦେବ ଅରୁଆ ତଣ୍ଡୋଲ ଦିବ୍ୟରସ ।
ନଖବସ୍ତ୍ର ସରୁ ଧାନ କୁଟିଣ ବିଶେଷ । ୫୫ ।

ଭାଟ ଯେ ମଙ୍ଗଳ ଧୁନି ଶୁଭ ପୂର୍ଣ୍ଣକୁମ୍ଭ ।
ବସିବା ବେଳକେ ଶୁଭ କରିବ ଆରମ୍ଭ । ୫୬ ।

ହରି ଅନୁକୂଳ ବେଳେ ମଙ୍ଗଳେକ ବାର ।
ଏ ନିମନ୍ତେ କରିବାକ ବରଣ ବେଭାର । ୫୭ ।

ବଢ଼େଇ କରିବ ଡଙ୍କା ଚଟୁ ତାଟ ରଖା ।
କାଠୁଆ କଠାଉ ଭଗତଙ୍କ ପାଦ ରଖା । ୫୮ ।

ବାଘାମ୍ବର କୃଷ୍ଣାଜିନ କୁଶ ଯେ ତଳଗାଂ ।
ବେତୁଆଂ ପରୁଢ଼ି ବୃଣି କମଳ ଯେ ରଗାଂ । ୫୯ ।

ମୋଟ ବସ୍ତ୍ର ଖେଣ୍ଡି ନୂଆ ବାଉଁଶ ଯେ ଦେବ ।
ଭଗତଙ୍କୁ ଆସନରେ ଉଭା କରାଇବ । ୬୦ ।
କମାର କୁମ୍ଭାର ବେଜ କରିବ ବରଣ ।
ମଉଛବ ବାଧ୍ୟମାନ ଆଣିଦେବେ ପୁଣ । ୬୧ ।
ନବୀନ ପନକ ଯେ ନବୀନ ଗୁଆକାଠ ।
ନବୀନ ଝୁମିକ କଠାଉକୁ ଥିବ ପେଠ । ୬୨ ।
ବରଗ୍ର ଖଣତା ଯେ କୋଦାଳ ଟାଙ୍ଗିମାନ ।
କଣ୍ଟୁରି ସହିତେ ଦାଆ କମାର ବିଧାନ । ୬୩ ।
କୁମ୍ଭାର ପଲମ ହାଣ୍ଡି ମାଠିଆ ସହିତେ ।
ବଇଠା କଞ୍ଚୁଳ ସରା ପଣା ଭୋଗ ଅର୍ଥେ । ୬୪ ।
ମାଟିଘଷା ନନ୍ଦୀସ୍ଥା ଯେ ଦେଉଳିଆ ଠେକ ।
ଖୁଲ ହାଣ୍ଡି ଡାଡ଼ ଯେ ଆଟିକମା ଲେଖି । ୬୫ ।
କାହ୍ନୁଦନ ଠାବରୁ ଯେ ଏମାନ ସଜାଡ଼ିବ ।
ଭଗତ ସବରେ ବିଧି ଏମନ୍ତେ ସଜୋଇବ । ୬୬ ।
ରାମଚନ୍ଦ୍ର ଦାସ ଯେ ହରଷ ମନ ହୋଇ ।
କେତେ ମୂର୍ତ୍ତି ବରଣ ହୋ ପ୍ରମାଣ ଅଟଇ । ୬୭ ।
ଗୁରୁ ଆଜ୍ଞାଂ ଦେଉଛନ୍ତି ଅମ୍ବୀଭୂତ ହୋଇ ।
ଜଗମ ଗହନ କଥା ପୃଚ୍ଛା କଲୁ ତୁହି । ୬୮ ।
ମୂର୍ଖ୍ୟ ଭଗତ ଗୋଲକ ଅନନ୍ତେଟି କହି ।
ଅନନ୍ତ ଗୋପାଳ ନାମ ଏଣୁକରି ହୋଇ । ୬୯ ।
ଚହ୍ମଂ ସାର ଚଉଷଠି ଚହ୍ମଂ ଷରେ ବାର ।
ଏମନ୍ତେ ଅନନ୍ତ କୋଟି ବୈଷ୍ଣବ ଆବର । ୭୦ ।
ନୋହିଲେ ଅଠର କୋଟି ବରଣ କରିବ ।
ତଦର୍ଦ୍ଧେ ନବକୋଟି ପୂଜାବିଧି ସ୍ଥିବ । ୭. ।
ସୃଷ୍ଟି କୋଡ଼ି ଦଶ ମୂର୍ତ୍ତି ବରଣ କରିବ ।
ନୋହିଲେ ଦ କୋଡ଼ି ପାଞ୍ଚ ମୂରତ ପୂଜିବ । ୭୨ ।
ନୋହିଲେ କୋଡ଼ିଏ ପାଞ୍ଚ କରିବ ବରଣ ।
ନୋହିଲେ ପନ୍ଦର ମୂର୍ତ୍ତି କର ପରମାଣ । ୭୩ ।
ନୋହିଲେକ ଦଶ ମୂର୍ତ୍ତି ନୋହିଲେ ତା ପାଞ୍ଚ ।
ନୋହିଲେ ଯେ ତଇ ମୂର୍ତ୍ତି ଦେନ ମୂର୍ତ୍ତି ପଞ୍ଚ । ୭୪ ।

ଅତି ଦୁଃଖ ଭାଗ ପୂଜା ମୂର୍ତ୍ତିକେ ପୂଜାଇ ।
ଜନ୍ମର ସୁଫଳ ଗତି ତେବେ ସେ ଲଭଇ । ୭୫ ।
ଏବେ ଅଧେ ବରଷରେ ପୂଜା କରିଥିବ ।
ଭଗତ ଚରଣ ସେବା କେବେହେଁ ନ ଛାଡ଼ିବ । ୭୬ ।
ଏନକ ଅଧର କଥା କେମନ୍ତ ଅଟଇ ।
ଗୁରୁଦେବ କହିବାକ ଏକଥା ବୁଝାଇ । ୭୭ ।
ରାମ ଓଁଳାସ୍ତେ କରିବ ନିଷ୍ଠା ଉପବାସ ।
ରାଜେଶ କରିବ ପୂଜା ଭଗତ ହରଷ । ୭୮ ।
ପ୍ରଭାତ କାଳୁଂ ମେଲଣି ଭଗତ କରିବ ।
ନିର୍ଦ୍ଧନ ପରାଣୀ ପୂଜା ସୁ ଚଢେ଼ ସ୍ୱେ ଭାବ ।୭୯ ।
ଗୁରୁଙ୍କ ନିମନ୍ତେ ଏବେ କରିବ ବରଣ ।
ପିତାର ନିମନ୍ତେ ମଉଛବ ଏକ ଜାଣ । ୮୦ ।
ମାତାର ନିମନ୍ତେ ଏବେ ସାଧୁଂଙ୍କୁ ପୂଜିବ ।
ଥାନ ଲକ୍ଷ୍ମୀ ବରଣାର୍ଥେ ଏବେ ପୂଜା ଭାବ । ୮୧ ।
କଳ୍ପିତ ମନର ଫଳେ ଏକ ଏନ ସେବା ।
ଭଗତ ଅର୍ଥେଣ ଏବେ କୃଷ୍ଣ ପ୍ରୀତି ଭାବା । ୮୨ ।
ଛଡ଼ମାସେ ଛଡ଼ଏନ ଭଗତ ପୂଜିବ ।
ବରଷକରେ ଯେ ମୁନିମାନନ୍ତ ଭାବିବ । ୮୩ ।
ଯେହୁଂ ଜନ ନ ଜାଣନ୍ତି ଏଥିର ବେଭାର ।
ଶ୍ୱାନ ଶୃଗାଳ କାକ ଶୂକର ଶରୀର । ୮୪ ।
ଜନମ ହୋଇଣ ସ୍ୱେହି ଲଭନ୍ତି ସେ ପ୍ରାଣୀ ।
ରାମଚନ୍ଦ୍ର ଦାସ ଶୁଣ ରହସ୍ୟ କାହାଣୀ । ୮୫ ।
ଛଡ଼ ପରକାର କଥା କହିବାକ ତୋତେ ।
କେମନ୍ତ ପ୍ରକାରେ ସେବା ଭଗତଙ୍କୁ ଚଢେ଼ । ୮୬ ।
ଗୁରୁ ଆଗ୍ୟାଂ ଦେଇଛନ୍ତି ପରମ ଆରାଧି ।
ପରମ ବସନ୍ଧ କଥା ପଗୁରୁଂ ଚରୁ ଫାନ୍ଦ । ୮୭ ।
ଗୁରୁ ନିମନ୍ତେଣ ଯାହା ଯିସ ଯିସ କରି ।
ଗୁରୁ ଅଧିକାର ପୂଜ ଆଗେଣ ହିଂ ବରି । ୮୮ ।
କୃଷ୍ଣ ପ୍ରୀତି ଅର୍ଥେ ଯହୁଂ କରିବ ବରଣ ।
ମନ୍ତ୍ର ପ୍ରଚ୍ଛନ୍ନ ହୋଇ ରାମ ଆଗେ ନିମନ୍ତ୍ରଣ । ୮୯ ।

ପିତାର ନିମନ୍ତେ ଯେବା କରିବ ବରଣ ।
ଭଣଜାକୁହିଁ ଆଗେ କରିବ ନିମନ୍ତ୍ରଣ ।୯୦।
ମାତାର ନିମନ୍ତେ ଯେବେ ସେବାମାନ କରି ।
ଜୁଆଁଇ କି ବରଣ କରିବ ଆଗକରି ।୯୧।
ଥାନର ନିମନ୍ତେ ଯେବେ କରିବ ବରଣ ।
ସହସ୍ର ନାମ ଶୁଣିଲ ଜାଣିଲ ବ୍ରାହ୍ମଣ ।୯୨।
ମନର କଳପ ଷିବେ ଯେମନ୍ତ ପୂଜିବ ।
ଅପୂର୍ବ ଅତିଥି ଯେ ପାଞ୍ଚ ସାତ ଥିବ ।୯୩।
ବିଷମ ସନ୍ଧି ଲଗିଲ ଅଗୋଚର ଏହି ।
ବ୍ରାହ୍ମଣ ଅତିଥି ବଇଷ୍ଣମ୍ବ ଏକ କହି ।୯୪।
ଗୁରୁପୁତ୍ର ସହିତ ଯେ ବଇଷ୍ଣମ୍ବ କହି ।
ଭଣଜା ଜୁଆଇଁ କଥା କେମନ୍ତ ଅଟଇ ।୯୫।
କହିବା କଥାସ୍ତେ ଗ୍ରମ ରହସ୍ୟ ଫେଡ଼ିଣ ।
ମାତାପିତା ହରଷ ଝିଅଠାରେ ପୁଣ ।୯୬।
ଝିଅ ଘେନି ପିତାର ଯେ ଉପର ବଂଶ ଜନ ।
ସ୍ତ୍ରେଣୁକର ନାମମାନ ହୁଅଇ ଆପନ ।୯୭।
ଝିଅ ଘେନି ଜୁଆଁଇ ଯେ ବରଣ ଅଟଇ ।
ଏଥୁକରି ମାତାପିତା ଧନ ସାର ହୋଇ ।୯୮।
ଜୁଆଁଇ ଭଣଜା ବେନି ସଂସାରରେ ସାର ।
ପରମାର୍ଥ ସଂସାରର ଏ ଦୁଇ ବିସ୍ତର ।୯୯।
ଗୁରୁପୁତ୍ର ବଇଷ୍ଣମ୍ବ ଅତିଥି ସେବିବ ।
ବ୍ରାହ୍ମଣ ସେବନେ ପରମାର୍ଥ ସ୍ମରି ଭାବ ।୧୦୦।
ପରମାର୍ଥ ସଂସାର ଯେ ସ୍ତ୍ରୀମାନ ଅଟଇ ।
ବାମ ଯେ ଦକ୍ଷିଣ ଭୁଜ ଯେମନ୍ତ ଯେ ହୋଇ ।୧।
ଦୁଇ ପକ୍ଷି ଯେମନ୍ତ ଅଟଇ ଜାଣୁ କରି ।
ସଂସାର ମଧ୍ୟାଇ ସ୍ତ୍ରୀକା ଭଗତ ବେହାର ।୨।
ସ୍ୱଜା ଭାବ ବନ୍ଦିଲେଣ ଭଗତ ରକ୍ଷାପାଇ ।
ସଂସାର କାଇଂଚ ଭକ୍ତ ସୁବର୍ଣ୍ଣ ଅଟଇ ।୩।
କାଇଂଚ ବନ୍ଧନେ କି ସୁବର୍ଣ୍ଣ ହୋଇସ୍ତେ ତୁଳ ।
ରଜବୀଜ ନ ଥିଲେ ଯେ ନ ରହଇ କୁଳ ।୪।

ରଜବୀଜ ପୂଜାପାଇଁ ବେନି ମଣ୍ଡଳ୍ବ ।
ରଜ ଯେ ଅଟଇଁ ଜୀବ ପରମ ଯେ ବୀଜ । ୫ ।
ପରମ ଜୀବରେ ଯିନା ଖେଡ଼ାମାଳା ହୋଇ ।
ମାତାପିତା ଯୋଗୁଂ ଶିଷ୍ୟି ବଷ୍ଣମ୍ବ ପୂଜଇଁ । ୬ ।
ଯାହା ଯେଣୁ ମାତାପିତା ପୋଅ ଜାତକର ।
ଗୁରୁ ବଇଷ୍ଣମ୍ବ ସେବା ସ୍ୱେଶ୍ଚ ଦାସ ସର । ୭ ।
କୃଷ୍ଣ ପ୍ରୀତ ସେବା ଗୁରୁ କହ ମୋତେ ବଧ୍ ।
କେମନ୍ତ ଭାବରେ ବଇଷ୍ଣମ୍ବ ସେବା ସାଧ୍ । ୮ ।
ଚଉଷଠି ଗୋପିକା ଗୋଲେକ ଝେଡ଼ ଭାବ ।
ମଣ୍ଡଳୀ ମଣ୍ଡଳୀ ଯୂଥ ସହସ୍ରସ୍ତେ ଠାବ । ୯ ।
ଏହ୍ଵ ଭାବ ମନେ ଥାପି ବରଣ କରବ ।
ଚଉଷଠି ମଣ୍ଡଳୀ ଯେ ବରଣର ଭାବ । ୧୦ ।
ଦ୍ୱାଦଶ ଗୋପାଳ ଖୋଳ କରତାଳ ଯେନ ।
ଆପଣା ଭ୍ରେବନେ ଅଣି କରବ ମୂର୍ଧୁନ । ୧୧ ।
ଅଷ୍ଟକୋଣ ବେଦ୍ରୀକାସ୍ତେ ନିର୍ମାଣ କରବ ।
ରମ୍ଭା ବୃଛ ଗୋଟି ପାଞ୍ଚ ଚହୁଁରେ ଥାପିବ । ୧୨ ।
ତଥ୍ ପରେ ଥାପିବ ନବୀନ ପୂର୍ଣ୍ଣ କୁମ୍ଭ ।
ଶ୍ରୀଫଳ ଚୁତ ପତ୍ରରେ କରବ ଆରମ୍ଭ । ୧୩ ।
ଖୋଳ କରତାଳ ରଖି ଗୋଲେକ ଯେ ଧାନ ।
ଖୋଳ କରତାଳେ ଦେବ ଗନ୍ଧ ଯେ ଚନ୍ଦନ । ୧୪ ।
ନବତନ ବସ୍ତ୍ର ପାଞ୍ଚ ମୃରୁତ ଖୋଳରେ ।
ସପତ ମୃରୁତ ଦେବ କରତାଳ ପରେ । ୧୫ ।
ଦ୍ୱାଦଶ ମୃରୁତ ବସ୍ତ୍ର ବବଧ ସଯୋଗ ।
ପାଟ ମଠା ସିନ୍ଧୁଆ ପତନୀ ଯେ ପାଗ । ୧୬ ।
ଝାଡ଼ ଯେ ତଡ଼ ପଗଡ଼ା ମୋଟା ଯେ ପାଗ୍ରେଡ଼ା ।
ବବଧ ବସନ ମାନ କରବ ଯେ ଲେଡ଼ା । ୧୭ ।
ଘୃତ ଦୀପାବଳୀ ବାର ଗୋଟି ରଖିଥିବ ।
ତାମ୍ବୋଲ ଯେ ବାର ବଡ଼ ଥାପନ କରବ । ୧୮ ।
ମୋଟ ଧଣ୍ଡା ବାରଗୋଟି ବବାନ ଦୃଷ୍ଟରେ ।
ଖୋଳ କରତାଳ ପୂଜା ସ୍ୱେମନ୍ତ ଭାବରେ । ୧୯ ।

ଦ୍ୱାଦଶ ଗୋପାଳଙ୍କୁ ନମସ୍ତି ଆଣିବ ।
ଗୁରୁ ଅଙ୍ଗେ ଖୋଳ କରତାଳ ସମ ଭାବ । ୨୦ ।
ଖୋଳ କରତାଳ ଆସ୍ରେ ଯାହା ଠାରୁଂ ଥିବ ।
ସେହି ଗୁରୁ ରୂପ ଗୃହ୍ନଂ ଦଣ୍ଡବତ ହେବ । ୨୧ ।
ତାଙ୍କ ପରେ ଗୁରୁ ଗୁରୁ ପରେ ଗୁରୁ ଯେତେ ।
ଧିଆନେ ହୋଇବ ଦଣ୍ଡବତ ବିଧିମତେ । ୨୨ ।
ଏହେତେଁ ଗୋପାଳଙ୍କୁ ଯେହ୍ନୁ କରିବ ସେବନ ।
ସେହି ଭାବେ ସୁମରଣା କରିବ ସେମାନ । ୨୩ ।

## ମିଳଣ

ଗୁରୁ ଚରଣ ତଳେ ଦଣ୍ଡବତ ହୋଇ ।
ଗୋପକୁଳ ସମ ପୁଣ ପୁଛଇ ବନୋଇ । ୨୪ ।
କହଂଠାରୁ ଆଣିମା ଏ ମଣ୍ଡଳୀ ଭିଆଣ ।
କୃଷ୍ଣଭକ୍ତ ପଶ୍ୱଏଣ କଉଂ ଠାବେ ପୁଣ । ୨୫ ।
ସମ ସ୍ନେହ ଗହନ ସନ୍ଧ ଗୁରୁଙ୍କ ଭଣ୍ଡାର ।
ପୁଚ୍ଛାକଲୁଂ ଯଉଂ କଥା ଅତି ଅଗୋଚର । ୨୬ ।
ଗୋଲୋକରେ ଲୀଳା ଗୋପି ଗୋପାଳ ମଣ୍ଡଳୀ ।
ଚଇତନ୍ୟ ଆପେ କୃଷ୍ଣ ନଦୀଆର ସ୍ଥଳି । ୨୭ ।
ଦ୍ୱାଦଶ ଗୋପାଳ ସଙ୍ଗେ କଲେ କୀରତନ ।
ସହାସ ଚରିତମାନ ରହିଲା ଗୋପ୍ୟାନ । ୨୮ ।
ଅଭିରାମ ସିନ୍ଦୁବ୍ରନନ୍ଦ ଯେ ଦୁଇ କନ୍ଧ ।
ଦ୍ୱାଦଶ ଗୋପାଳ ଲୀଳା ହେତୁ ତାଙ୍କ ତଦ୍ଧଂ । ୨୯ ।
କୃଷ୍ଣ ଚଇତନ ଶିଷ୍ୟ ସିନ୍ଦୁର ଆନନ୍ଦ ।
ସିନ୍ଦୁରାନନ୍ଦଙ୍କ ଶିଷ୍ୟ ଦାସ ଯେ ମାଧବ । ୩୦ ।
ଓଡ଼ିଶା ରାଜ୍ୟରେ ଯସ କରିବାକ ଯେତ ।
ମାଧବ ଦାସଙ୍କ ଶିଷ୍ୟ ଗୋପାଳ ବାଉଡ଼ । ୩୧ ।
ଗୋପାଳ ବାଉଡ଼ ଶିଷ୍ୟ ଜଗନ୍ନାଥ ଦାସ ।
ଭାଗବତ କନ୍ଧ ଜ୍ୟୋତ ତତ୍ତ୍ୱଂ ପରକାଶ । ୩୨ ।
ଅତାଅ ପୁର୍ଯ୍ୟାନାଂ ଗୁରୁ ଭଗତଙ୍କ ଶୀର୍ଷ ।
ଜଗନ୍ନାଥ ଦାସ ଶିଷ୍ୟ ମୁଂ ଅଚ୍ୟୁତ ଦାସ । ୩୩ ।

ଅଚ୍ୟୁତ ଦାସ ଶିଷ୍ୟ ତୁ ରାମଚନ୍ଦ୍ର ଦାସ ।
ଉଥାନ ପବନ ଦୁଇ ତୁମ୍ଭର ତ ଶିଷ୍ୟ । ୩୪ ।
ଯାଦବ ଅନନ୍ତ ମିଳି ଦ୍ୱାଦଶ ଗୋପାଳ ।
ତୁମ୍ଭର ସ୍ନେହ ସଖା ଭକ୍ତ ନୋହନ୍ତ ବେଗଳ । ୩୫ ।
ଦ୍ୱାଦଶ ମଧ୍ୟରେ ରାମଚନ୍ଦ୍ର ଦାସ ସାର ।
ଯାଦବ ଉଥାନ ସିନା ରାହାସରେ ପାର । ୩୬ ।
ଯାଦବ ଧରବ ଖୋଳ ଉଥାନ ଯେ ତାଳ ।
ପବନ ଧରବ ଖୋଳ ଅନନ୍ତ କର୍ତାଳ । ୩୭ ।
ସାରଦା ଭୁବନ ଯଏପଦା ଗ୍ରାମ ଥାନ ।
ବରଣ କରବ ତାଙ୍କୁ ତୁଳସୀ ଚନ୍ଦନ । ୩୮ ।
ମୋଟ ଧଣ୍ଡା ପତନରେ ଯେ ଚନ୍ଦ ପଞ୍ଜିକା ।
ଦ୍ରଶନ ଦେବମାତା ପୁର ଗ୍ରାମରେଇ ଦେଖା । ୩୯ ।
ପୁଣ କରଯୋଡ଼ି ପୁଚ୍ଛେ ରାମଚନ୍ଦ୍ର ଦାସ ।
ବଷ୍ଟମ୍ଭ ବରଣ ବଧି କେମନ୍ତ ସେ ରସ । ୪୦ ।

## ମଉଚ୍ଛବ ବରଣ

ଇଚ୍ଛା ସୁଖୀ ମନ ଶାନ୍ତ ଭଗତଙ୍କ ମନ ।
ତିନ ଭୁବନର ଜନ ତାଙ୍କର ଆଧିନ । ୪୧ ।
ସ୍ୱର୍ଗ ମର୍ତ୍ତ୍ୟ ଭୁବନ ଅପୂର୍ବ ତାଙ୍କ ନୋହେ ।
ଧନ ପଣ ଦାରା ଦେଲେ ନିପୁଣ ସେ ନୋହେ । ୪୨ ।
କେବଳ ଭାବକୁ ବଶ ଭଗତର ଚଉ ।
ଭଗତ ଭାବ କରଣ ବଶବ ତୁରତ । ୪୩ ।
ବନସ୍ତ କରଣ ତାଙ୍କୁ ଦଣ୍ଡବତ ହେବ ।
ଉଲ୍ଲଖ ପଞ୍ଜିକା ଲେଖି ଗୋଟିଏ ଲେଖିବ । ୪୪ ।
ଶଏ ପାନ ଗୁବା ଦଶ ତୁଳସୀ ପଛବେ ।
ଚରଣ ଦ୍ରଶନ ଦେବମାତାପୁର ଠାବେ । ୪୫ ।
କଉଂ ଠାବକୁ ବରଣ କରବା ପୁଣ ପୁଣି ।
ଶ୍ରୀମୁଖ ବଚନ ଆଗ୍ୟାଂ ମୋତେ କହ ପୁଣି । ୪୬ ।
ହର ରାମାନନ୍ଦ ଦାସ ଅଢ଼ଙ୍କୁ ଆଣିମ ।
ଯଶୋବନ୍ତ ଗୋସାଇଙ୍କ ଅଢ଼ଙ୍କେ ଆଶ୍ରମ । ୪୭ ।

ସନାତନ ଶ୍ରୀଗୁରୁ ତ ଦୋଳଗ୍ରାମୁଁ ବଜେ ।
ସବୁନ୍ତ ବଜେ କରିବେ କ୍ଷେତ୍ରବର ମାଝେ । ୪୮ ।
ସହସ୍ର ଗ୍ରାମନାଥଙ୍କୁ ସେବନକରଚୁଁ ।
ରସିକ ଫକୀର ଆଣି ଜଙ୍ଗେର ଭିତରୁ । ୪୯ ।
ଶତ ଯେ ସ୍ଥଳରି ପଥ ବସିଣ ବରଣ ।
ମହୋଛବ କରିବାର ହୋଅଇ କାରଣ । ୫୦ ।
ସ୍ୱରି ଜାତ ଅଠରହ ପାଟକ ଯେ ଲୋଡ଼ ।
ଛତିଶ କୁଳଙ୍କ ସେବା ଅର୍ପେଣ ନ ଛାଡ଼ । ୫୧ ।
ପୁଣି ଜଣାଇଲ ତହୁଂ ଗୋପାଳ ବରଣ ।
ବଇଷ୍ଣମ୍ବ ପୂଜା ବିଧି କେମନ୍ତ କରିଣ । ୫୨ ।
ଇତ୍ତ୍ରୁ ସୂକ୍ଷ୍ମୀ ଭଗତ ନଇଲେ ମୋହୋ ଚତ୍ତେ ।
ଏଥିକ ବିଷମ ସନ୍ଧ ଲଗିଲକ ମୋତେ । ୫୩ ।
ସାଧୁଜନ ମାନନ୍ତ ଯେ ଅଛୁ ଲଇକ୍ଷଣ ।
ପାଞ୍ଚ ସାତ ଦନଠାରୁ କରିବ ବରଣ । ୫୪ ।
ବରଣ ଦେଇଣ ମହୁଛବ ଯେ ନ ଯାଇ ।
ଗତ୍ରୁ ଅପରାଧ ପାପ ତକ୍ଷଣେ ଲଭଇ । ୫୫ ।
ବରଣ ଦେଇଣ ସେବା ନ କଲେ ଭଗତ ।
ବିଷ୍ଟୁ ଅପରାଧ ପାପ ହୋଅଇ ତୁରିତ । ୫୬ ।
ସୁନ ଦାରା ଧନ ତାର ନ ରହଇ କାହୁ ।
ଜୀବନ୍ତ ଭକ୍ତିଷ ମୁନମାନେ ଛନ୍ତ ଲେଖି । ୫୭ ।
ପୁଣ ପୁଣ ତରସ୍ତ ହୋଇଣ କରଯୋଡ଼ ।
ଭୃତ୍ୟ ହେଲେ ଅପରାଧୀ ଢଳେ ଢଳେ ହୁଡ଼ । ୫୮ ।
ଏ କଥାକୁ ପରମାଣ କହ ମୋତେ ସ୍ୱେବେ ।
ରାମଚନ୍ଦ୍ର ବାଣୀ ଶୁଣି କହେ ଗତ୍ରୁ ଭବେ । ୫୯ ।
ଶୁଣ ମନ ହେତୁକର ଭଗତ ବିଧାନ ।
ଭଗତ ଶ୍ରୀକୃଷ୍ଣ ଅଙ୍ଗ ନୋହଇ ଯେ ଭିନ୍ନ । ୬୦ ।
ନଦ୍ୱପଟ ପାଣ୍ଡବ ହରିଙ୍କି କଲେ ଧନ ।
ଆପଣେ ସେବକ ହୋଇ କଲେ ରାଜ୍ୟଦାନ । ୬୧ ।
କପଟେଣ ଦୁର୍ଯୋଧନ ସକଳ ହରିଲ ।
ସବଂଶ୍ର ମାରିଣ ବିଷ୍ଟୁ ଅଭାବ ହୋଇଲ । ୬୨ ।

କପଟ ଭାବରେ ଯେତେ କଲେ ବସ୍ତରଣ ।
ଶ୍ରୀକୃଷ୍ଣ କପଟ ମାୟା ଦେଖାଇଲେ ପୁଣ । ୭୩ ।

ପାଣ୍ଡବଙ୍କ ଭାବେ ଚିତ୍ତ ସାଧୁଠାରେ ଦେବ ।
ତନୁ ମନ ଧନ ଦେଇ ଚରଣ ପୂଜିବ । ୭୪ ।

ଆପଣା ଭୁବନେ ଆଣି ଚରଣ ଧୋଇବ ।
ଚରଣ ନୀରରେ ସର୍ବେ ସ୍ନାହ୍ୱାନ କରିବ । ୭୫ ।

ଗର୍ଭକୁ କ୍ଷେପିବ ନୀର ମନରେ ହରଷ ।
ଆସନେ ପୂଜିବ ତାଙ୍କୁ କମଳ ଯେ କୁଶ । ୭୬ ।

ବାଘାମ୍ବର କୃଷ୍ଣାଜିନ ଆସନ କରିବ ।
ପଦାବଳୀ ଦେଇ ଜଳପାନ ବଲୋହ୍ୱବ । ୭୭ ।

ଦ୍ୱାଦଶ ଅମୃତ ପାଗ ଭୋଜନର ବିଧି ।
ଗୁଡ଼ିଆ ଦ୍ୱାଦଶ ପାଗ ତହିଂକ ପ୍ରସିଦ୍ଧି । ୭୮ ।

ମୁଣ୍ଡରେ ଭୁଂଜାଇ ପାନ ସଂଗରେ ଚନ୍ଦନ ।
ମାଳ ଅଙ୍ଗେ ଲମ୍ବାଇଣ କରିବ ଯେ ମାନ୍ୟ । ୭୯ ।

ରନ୍ଧନ କରିବ ସରୁ ଅରୁଆ ତଣ୍ଡୋଳ ।
ଅରୁଆ ଖେଚଡ଼ି କ୍ଷୀର ଖଣ୍ଡରେ ଯୁଗଳ । ୮୦ ।

ବିରି ମୁଗ ହରଡ଼ ଯେ ଡାଲି ରସ ଭାବ ।
ସୁବାସ ବଣିଆ ସର୍କ ତହିଂରେ ପଡ଼ିବ । ୮୧ ।

କୋଶଳା ପିଡ଼ଙ୍ଗ ନେଉଟିସ୍ୱା ଭଜି ମାନ ।
ବହୁତ ଘିଅରେ ଏହା କରିବ ଯତନ । ୮୨ ।

ସାରୁ ଆଳୁ କନ୍ଦମୂଳ କରିବାକ ଭଜା ।
ଖଣ୍ଡ ଯେ ମରିଚ ଦେଇ ଟାଣେ ହେବ ସଜା । ୮୩ ।

ସିଭାରେ କଖାରୁ କଞ୍ଚୁ ଆମ୍ବିଳ କରିବ ।
ବୋଇତ କଖାରୁରେ ଯେ ଗୁଡ଼ ପକାଇବ । ୮୪ ।

ଓଲୁ ବାଇଗଣ ଯେ କଦଳୀ କଲରା ।
ମହୁର କରିବ ବାଛୁ ଅମ୍ବୁଣିଆଂ ନୋରା । ୮୫ ।

ସିମ ଯେ ଘଇତା ନଟିକାଳ ବଟାଇବ ।
ନଡ଼ିଆ ଚଳିଆ ବୋଲି ଛତୁଣ କରିବ । ୮୬ ।

ଖଣ୍ଡି ଖଣ୍ଡି କରି କଞ୍ଚୁ ଅଦା ସଜୋଇବ ।
ପିତା ଯେ ଛତୁଣ ଘାଣିକଖାରୁ କରିବ । ୮୭ ।

ବିବିଧ ବ୍ୟଞ୍ଜନ ନାନା ବର୍ଣ୍ଣେ ରନ୍ଧାଇବ ।
ଗୋପାଳ ମନ୍ତ୍ର ପଢ଼ିଣ ମଣୋହି କରିବ । ୭୮ ॥

ଗୋଲୋକନାଥଙ୍କୁ ଭୁଞ୍ଜାଇବ ତୋଷ ମନେ ।
କୃଷ୍ଣ ଚଇତନ୍ୟ ରାମାନନ୍ଦ ଭକ୍ତଜନେ । ୭୯ ॥

ରାମାନନ୍ଦ ନିମାନନ୍ଦ ବିଷ୍ଣୁଶ୍ୟାମ ମାଧୋ ଦାସ ।
ଯହିଂଜନ ପୂଜେ ନ ଲଗଇ ଯମ ଫାଶ । ୮୦ ॥

ଜୀବନ୍ତେ ପୁଗନ୍ଧ ମଲେ ଗୋଲୋକରେ ପଶେ ॥
ଜନମେ ଜନମେ ଥାଇ ଭଗତର ପାଶେ । ୮୧ ॥

ପୁଣ କରଯୋଡ଼ ପୁଛେ ଶିଷ୍ୟ ରାମ ଗଡ ।
କେମନ୍ତ ବେଦିରେ ତାଙ୍କୁ ବସାଇବା ପନ୍ଥ । ୮୨ ॥

ଶୁଣ ରାମ ପୂଜାବିଧି ଯେମନ୍ତ ହୋଇବ ।
ବିସ୍ତାର କରିଣ ଥଳ ଗୋଟିଏ କରିବ । ୮୩ ॥

ରାମାନନ୍ଦୀ ପଙ୍ଗତ ଗୋଟିଏ ବସାଇଣ ।
ଦ୍ୱାଦଶ ହାଥ ଗ୍ରୁଡ଼ିବ ସେଠାରବୁ ପୁଣ । ୮୪ ।

ନିମାନନ୍ଦୀ ପଙ୍ଗତ ଯେ ଗୋଟିଏ ଭେଟିବ ।
ଦ୍ୱାଦଶ ଭଡ଼ା ସେଠାବରୁଂ ଗ୍ରୁଡ଼ିକରି ଦେବ । ୮୫ ।

ବିଷ୍ଣୁଶ୍ୟାମ ପଙ୍ଗତ ଯେ ଧାଡ଼ି ମୂଳେ ପୁଣ ।
ଦ୍ୱାଦଶ ହାଥ ଗ୍ରୁଡ଼ିବ ସେଠାରୁ ରହିଣ । ୮୬ ।

ମାଧବ ଅଗ୍ରୁର୍ଫି ମାନ ସଲଖି ରଖିବ ।
ଖଣ୍ଡିକ ଦୂରରୁଂ ପୁଣ ଗ୍ରୁଡ଼ିକରି ଦେବ । ୮୭ ।

ଚଉଦ ପଥ ପୁର୍ଫୀକ ଚଉଦ ବେଗଲ ।
ଦଶ ଠାବେ ବସାଇବ ସନ୍ନ୍ୟାସ କୁଳ । ୮୮ ।

ବାର ଠାବେ ବାର ପନ୍ଥ କରିବ ଭିଆଣ ।
ସପତ ଠାବରେ ସପ୍ତ ପନ୍ଥ ପରମାଣ । ୮୯ ।

ଖଣ୍ଡିଏ ଖଣ୍ଡିଏ କରି ଛଡ଼ା କରିଥିବ ।
ପନ୍ଥ ପନ୍ଥ କରିଣ ଯେ ପରସା ଖଂଜିବ । ୯୦ ।

ଗୃହଜାତ ଅଠରହି ପାଟକ ଯେତେକ ।
ଛଡଣ ନେଚ କୁଳକ ପନ୍ଥଏ ପନ୍ଥକ । ୯୧ ।

ରାମଚନ୍ଦ୍ର ଦାସ ଶୁଣ ଏମନ୍ତେ ଯେ ଭଣି ।
ଅନ୍ତେମ୍ବିତ କଥା ହେତ ଅପୂର୍ବ କାହାଣୀ । ୯୨ ।

ସତଗୁଳଣ ପଥ ଯେ ଅଠର ପାଟକ ।
ଛତିଶ କୁଳ ଏ ଗୁଣଚଣ୍ଡୀ ଆଦି ଲୋକ । ୯୩ ।

ସକଳ କେମନ୍ତେ ଏକା ଥାଳରେ ମିଳିବ ।
ଆଶ୍ଚର୍ଯ୍ୟିତ କଥା ମୋତେ କହ ଗୁରୁଦେବ । ୯୪ ।

ଶୁଣ ରାମ ବିପ୍ରର ଭଗତ ରସବାଣୀ ।
ସକଳ ଜନଙ୍କୁ ଚତ୍ରେ ବିପ୍ରେବ ଜାଣି । ୯୫ ।

କେ ହସ୍ତେ ରନ୍ଧନ ଅବା ଥାଳରେ ଖାଇବ ।
ମନ ଶତ୍ରୁ ଜାଣିଣ ଯେ ସଞ୍ଚା ସଜାଡ଼ିବ । ୯୬ ।

ପୁଣ ପୁଣ ଆଚମ୍ୟଂ ହୋଇ ହରଷ ମନେଣ ।
ଅଧମ ଚାରଣ ପାଇଂ ନର ଯେ ଆସଣ । ୯୭ ।

ପତ୍ରାବଳୀ ମାନ ହାଥେ କେହୁ ପୁଣ ନେବ ।
ସେ କଥାକୁ ଆଚମ୍ୟଂ ପ୍ରଭୁ ହୋଇବ ଉତ୍ତମ । ୯୮ ।

ଦାସ ଜନମ ହୋଇଣ ସଂସାର ଅର୍ଥେ କର୍ମ ।
କରମ କରିବା ଧରମରୁ ତ ଉତ୍ତମ । ୯୯ ।

ମନ ମଧ୍ୟେ ସବ ଠାବେ ସମାନ କରିବ ।
ଲୋକଙ୍କ ଭୀକୁଳ ଉପରେ ଜାତି ଧର୍ମେ ଥିବ । ୧୦୦ ।

ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ପାଟକ ଯେତେକ ।
ଉତ୍ତମ ଆଶ୍ରିର ଜାତି ଅଟନ୍ତି ସେହି ଲୋକ । ୧ ।

ଏ ଜାତି ମଧ୍ୟରେ ମାଳା ତିଳକ ଧାରଣ ।
ଆପଣେ ତୋଳିବ ପତ୍ର ଆପଣା ହସ୍ତେଣ । ୨ ।

କଳନ୍ତ୍ର କୁଳଙ୍କ ପତ୍ର ପଗତ ହସ୍ତେଣ ।
ସଂପତିଙ୍କୁ ଧନ ଦେଇଂ କରିବ ଆସଣ । ୩ ।

କରଯୋଡ଼ି ପଣ୍ଡିତଙ୍କ ଶିଷ୍ୟର ସବୁକୁ ।
ପତ୍ର ଶେଷେ ଅବଶେଷ ଗୃହେ ରଖିବାକୁ । ୪ ।

ଦାସ ଜାତି ପାଟକ ହେଲେ ବଇଷ୍ଣବଗଣ ।
ଆଗେ ଜାତି ପଛେ ଦାସ ଶୁଣ ପରମାଣ । ୫ ।

କୃଷ୍ଣଙ୍କୁ ଭଜିଲ ଜନ ଜାତିରେ ଯେ ଜ୍ୟେଷ୍ଠ ।
ସେବକର ଅଟନ୍ତି ଶିଷ୍ୟକୃଷ୍ଣ ଦାସ କୋଠ । ୬ ।

ଯେବଂ ଗୋଟେ ଯେବଂ ଦାସ ସ୍ୱାର୍ଥ ଲଭିଥିବ ।
ସଜାତି ହୋଇଣ ଆପଣାର ଗୋଟେ ଥିବ । ୭ ।

ଅଚଳ ପଥର ପ୍ରାଏ ହୋଇଥିବ ସ୍ଥିର ।
ମୀନକ୍ଷୀଣ ହୋଇଯିବ ଭଗତ ପ୍ରବର । ୯ ।
ପୂରିଲ କୁମ୍ଭର ପ୍ରାଏ ମନ କର ସ୍ଥିର ।
ବୁଡ଼ି ରହିଥିବ ତୁମ୍ଭେ ଏ ଭବ ସାଗର । ୧୦ ।
କଳକାକୁ କଳୁଷ ନ ଲାଗେ ଯେସନେ ଅଙ୍ଗ ।
କାଇଂଚ ଯେସନେ ଭୂମି ଭାଗରୁ ବିଲଗ । ୧୧ ।
କଣ୍ଟକରୁ କେତକୀ ବା ବିଲଗେଣ ରହି ।
ହରି ଆଜ୍ଞେ କଲି ଜନ ତେମନ୍ତି କହି । ୧୨ ।
ଏ ଭବସାଗରେ ବଡ଼ ବିଡ଼ମ୍ବଣ ହୋଇ ।
ତପୀମାନଙ୍କର ତପ ତଳେହେଁ ନ ରହି । ୧୩ ।
ସବୁ ଦେଶେ ଅବିବେକ ଭୂପତି ଯାତର ।
ଧର୍ମ ଏଡ଼ି ଧନଠାରେ ନମଗ୍ନ ବଗ୍ରର । ୧୪ ।
ବିପ୍ର ଦେବତା ମାନଏ ନ ରହିବ କିଛି ।
ମଅଳ ବସନ ପିନ୍ଧି ହାଡ଼ ଚମ ସାକ୍ଷୀ । ୧୫ ।
ଗହ୍ୱରେବ ଜନରେ ଯେ ରତ ଉପେ ମାତ ।
ମଦିରା ପାନ କରିବେ ହିଂସ୍ର ବିପ୍ର ଯତ । ୧୬ ।
ଗୁରୁଙ୍କ ଦକ୍ଷିଣା ଶିଷ୍ୟ କରିବ ହରଣ ।
ଅକର୍ମ କର୍ମରେ ସଦା ହୋଇବେ ମଗନ । ୧୭ ।
ଶୁଣ ହୋ ଯାଦବ ଦାସ ମୃଦଙ୍ଗର ଦାସ ।
ପବନ ଦାସ ହୋ ଅଛ ତୁମ୍ଭେ ବିଶୁଆସ । ୧୮ ।
ଉଥାନ ଦାସେ ହୋ ଯାହା କହିଲଇଂ ମୁହିଁ ।
ଗୋବିନ୍ଦ ଦାସ ହୋଅନ୍ତ ତୁମ୍ଭର ତ ଭାଇ । ୧୯ ।
ବଛ ଦାସ ଘେନମା ହୋ ଆମ୍ଭର ବଚନ ।
ଆନନ୍ଦ ଦାସେ ମୁଛନ୍ତ ତୁମ୍ଭରେ ଜୀବନ । ୨୦ ।
କୃଷ୍ଣ ଦାସ ଶୁଣି ଚିତ୍ତ ମନ ହେରୁ କର ।
ଦୀସ ସୁଦାମ ଠାବେ ତୋହ ଶରଧା ଅପାର । ୨୧ ।
ମଧୁ ଦାସେ ମନକୁ ଚିତାଇଂ କଥାମାନ ।
ମଥୁରି ଦାସେ ହୋ ଆମ୍ଭ କହନ୍ତାମାନ ଶୁଣ । ୨୨ ।
ପୁରୁଷୋତ୍ତମ ଦାସ ହୋ ଚହୋଇବା ସ୍ୱେମାନ ।
ପୂର୍ଣ୍ଣ ଦାସେ ଏ କଥାନ୍ତ ଘେନିଲ ପ୍ରମାଣ । ୨୩ ।

ବାଲେକ ଦାସ ହେ ଯେନ ଅମ୍ବର ଦ୍ଧାନ ।
ମୁକୁନ୍ଦ ଦାସେ ଭେବଲ ତୋହ୍ୱୋର ବଚନ । ୨୪ ।
ବୁବୁନ୍ଧ ଦାସ ଗ୍ୟାଂନେ ଭେଦ କଥାମାନ ।
ଦାମ ଦାସ ତୁମ୍ଭର ଯେ ପୀରତ ଗୋପ୍ୟାନ । ୨୫ ।
ଷୋଳ ସଖା ତୁମ୍ଭେ ଶିଷ୍ୟ ରାମଚନ୍ଦ୍ର ସାର ।
ଠାକୁର ଆଗ୍ୟାଂରେ ଥିତ ହୋଇଛ ମନ୍ଥର । ୨୬ ।
କଳର ଚରଣମାନ ଯେହ୍ନେ କହିଲଇଂ ।
ବେଲକୁ ବେଲ ଯେ ଜାତ ବିପଶ୍ଚିତ ମନ୍ଥ । ୨୭ ।
କରଯୋଡ଼ ଷୋଳ ସଖା ନଉତ୍ତୁଲ ପୁଣ ।
ଏ ଘୋର କଳରେ ଲୀଳା କଂପାଇଂ ଭିଆଣ । ୨୮ ।
ଶୁଣ ହେ ସଖାଦ ଗଣ ଜଗୁଜନ ବାଣୀ ।
ହର କଥା ଶୁଣୁ ଶୁଣୁ ଜଡ଼ ହେବେ ପ୍ରାଣୀ । ୨୯ ।
ହରଧୁନ ନ ଶୁଣିଲେ ପ୍ରାଣୀ ନୋହେ ନିପୁଡ ।
ଗୋପାଲେ ଶୁଣିବେ କୃଷ୍ଣ ଲୀଳା ତୁମ୍ଭ କଢ । ୩୦ ।
ପିଢ଼ିକ ପିଢି ତ ସୁଖ ଭୁଞ୍ଜି କରିଯିବ ।
କ କରମୁଂ ଦାସପୁନ ଧନ ସୁଖ ଭୋଗ । ୩୧ ।
ଶୁଣ ହୋ ଗୋପାଳ ଯୋଏ ହରର ଭିଆଣ ।
ତନ ପିଢି ସୁଖ ଭୁଂଜବ ନୋହ୍ୱ କାର୍ପୁନ୍ୟ । ୩୨ ।
ସମଏ ତାହା ଅବଶ୍ୟ ତୁଟିବ ପଛକୁ ।
ସ୍ନେହକୁ ବନ୍ଧିର କଂପା ତୁମ୍ଭର ମନକୁ । ୩୩ ।
ସେଠାବରୁ କସ ହେବ ଭବପକୁ ପୁଣ ।
ସ୍ନେ କଥାକୁ କରୁଣା ହୋଇବ ଗୁରୁ ବ୍ରହ୍ମ । ୩୪ ।
ଅନନ୍ତ ଶୁଣ ହୋ ଦାସ ତୃହର ଗହଲ ।
ରାମଚନ୍ଦ୍ର ମିଶି ଅଠରଙ୍କ ତ ଗୋପାଳ । ୩୫ ।
ଅଠର ସହସ୍ରେ ତୁମ୍ଭେ ଅଠର ପ୍ରଧାନ ।
ରାମଚନ୍ଦ୍ର ଗଣାଗଣ ଦ୍ୱାଦଶ ପ୍ରଚ୍ଛନ । ୩୬ ।
ସଙ୍ଗମେଲ ଭେଇ ଗଲେ ଅପସି ପୁରକୁ ।
ଚହ୍ଣୁଂଣ ଚଳଣ ଗଲେ ମାଧେବ ଥାନକୁ । ୩୭ ।
ମାଧେବ ଗୋପାଲ ଆସି ହେଲେ ପରକାଶ ।
ଅପୁରୁବ ବଇରାଗୀ ଛନ୍ଦ ତୋହ୍ୱ ପାଶ । ୩୮ ।

ରାମଚନ୍ଦ୍ର ଗୋସାଇଂଙ୍କ ସ୍ତେ ସତର ଭୃତ୍ୟ ।
ରାମଚନ୍ଦ୍ର ଦାସ ସିନା ଅନ୍ତରଇ ସୁତ । ୩୯ ।

ଢ କୋଡ଼ି କାହାଣ ଦେଲେ କଉଡ଼ି ସେଠାର ।
ଭୂମ୍ୟାଗତ ଦଣ୍ଡବତ କରଣ ମନର । ୪୦ ।

ତତ୍ୱାସ ଆଗରେ କର ପଛରେ ଅଚ୍ୟୁତ ।
ରଙ୍ଗ ଟୋପି ମାଥକୁ ସେ ସୁନ୍ଦର ଶୋଭିତ । ୪୧ ।

ଦକ୍ଷିଣ କରେ ପଇତା ତନୁ ଶାମ ଅଙ୍ଗ ।
ସରୁ ବସ୍ତ୍ର ବେହୁଡ଼ପ କଠାଉ ସୁରଙ୍ଗ । ୪୨ ।

ହଳଦୀ ସରୁ ଓଢ଼ଣି ଶୃଙ୍ଗାର ସୁନ୍ଦର ।
ରାମଚନ୍ଦ୍ର ଦାସ ଛନ୍ତି ବାମ ପାର୍ଶ୍ୱରେ । ୪୩ ।

କୋଠ ଦେଖେ ମିଳି ଏକ ପଧାନର ଘର ।
ରଅଡ଼ ବୋଲିଣ ନଗ୍ର ସୁଦୃଶ୍ୟ ସୁନ୍ଦର । ୪୪ ।

ଦେଖିଣ ହିଂସୃତ ହୋଇ ରଖିଲେକ ପୁଣ ।
ପ୍ରଧାନ ପାଇଣ ଭଗବତ ରସ ଗୁଣ । ୪୫ ।

ଶବ ମୁଦ୍ରା ରଖି ତାଙ୍କୁ ହେଲ ପ୍ରଣିପତ୍ୟ ।
ରାହାସ ଚଶତ ଶୁଣି ଅଶ୍ରୁ ପୁଲକିତ । ୪୬ ।

ପିପଲି ନାମେଣ ଗ୍ରାମ ଚଳ କରଗଲେ ।
ଅକରମ ଗୋପାଳେକ ତହିଂ ଠାବ କଲେ । ୪୭ ।

ରାଜ ବଲେ ମଉଗବ ଗୋପାଳର ଚଉ ।
ତହୁଂ ଆଗ୍ୟାଂ ହେଲି ପଡ଼ୁ ଏହୁଠାରୁ ବେଢ । ୪୮ ।

କଳୁଦନ ରହୁଥିବ ଏହାଙ୍କର ମୋଡ଼ ।
ରମାଇ ରାଜା କାଲେଣ ତେଜିବ ଏ ଦାଢ଼ । ୪୯ ।

ତଥିପରେ ଚନ୍ଦନ ଗ୍ରାମରେ ପରବେଶ ।
ଛେଇବରେ ଢନ ରଥ ଦେଖିଣ ସନ୍ତୋଷ । ୫୦ ।

ବ୍ରାହ୍ମଣେ ପରଚେ ଯାଇ ହରଷ ମନର ।
କଇବଲ୍ୟ ଦଅନ୍ତେ ଯେ ଆଗୁଆଳ କର । ୫୧ ।

ଢନ ରଥୁଂ ଢନ ଶାଢ଼ୀ ପରମାଣ କଲେ ।
ବାଙ୍କି ମୁହାଣରେ ତାଙ୍କ ବସା ପକାଇଲେ । ୫୨ ।

# ଦକ୍ଷିଣା ପ୍ରସଙ୍ଗ

ଜଗନ୍ନାଥ ଭଣ୍ଡାରଣ କଲେ ଖେଳାମାନ ।
ହରି ଜଗନ୍ନାଥ ଦାସ କଲେ ଦରଶନ ।୫୩।
ଭଜନ କୁଟୀରେ ଜଳୁ ପୂଜାବିଧି କରି ।
କରତାଳ ଦକ୍ଷିଣା ଯେ ହରିଦାସ ବରି ।୫୪।
ମୃଦଙ୍ଗର ଦକ୍ଷିଣା ଯେ ଜଗନ୍ନାଥ ଦାସ ।
ନବଘନ ଯାତ ଭ୍ୟାଇ ଗୁଣ୍ଡିଗୁ ସ୍ୱହାସ ।୫୫।
ଜଗନ୍ନାଥ ଗ୍ରାମୁରେ ଅନେକ ଧନ ପାଇ ।
ବ୍ରାହ୍ମଣମାନଙ୍କ ବସ୍ତ୍ର ତହିଁରେ ବନେଇ ।୫୬।
ଆତ୍ମା ପ୍ରାଏ କ୍ଷେତ୍ରେ ବସ୍ତ୍ର ହୋଇଣ ମଂକଲେ ।
ସୁନ୍ଦର ପଲ ଯେ ଧେନୁ ମାଦଳା ଲେଖିଲେ ।୫୭।
ବେଢ଼ା ଯେ ଅଭଡ଼ା ଖଣ୍ଡା ମଠକୁ କରଣ ।
ବସ୍ତ୍ରମାନେ କ୍ଷେତ୍ରବରେ କଲେକ ମାର୍ଜନ ।୫୮।
ନବଘନ ଯାହାକର ଗୋପର ଦାଣ୍ଡରେ ।
ଅରକବଟ ଭ୍ରମଣ ବରଷ୍ଟର ଠାରେ ।୫୯।
ଯେ ଠାବରେ ଆଉଲେ ଯେ ଢନଢନ ଘାସ ।
କଉଡ଼ି ମିଳାଲ କଲେ ଦେବ ଭୋଗ ଗ୍ରାସ ।୬୦।
ତହୁଁ ଚଳି କାକଟାଇ ମଙ୍ଗଳାର ଥାନ ।
ପଞ୍ଚଲିଙ୍ଗ ତ୍ରିଲୋଚନ ହୋଇଲା ଭ୍ରମଣ ।୬୧।
ତହୁଁ ଅସି ପିପିଲିର ମାଧବଙ୍କୁ ଦେଖି ।
ଅନନ୍ତ ମାଧବେ ବେଢ଼ା ଦନ ତହୁଁ ରଖି ।୬୨।
ଲୋକନାଥ ପାରେଶ୍ୱର କଲେ ଦରଶନ ।
ଅଳରେ ବଦ୍ଧନାଥ କଲେକ ମାଇନ ।୬୩।
ବରଜାଇ ଦେଖା ଦେଖି ଅଭଲେକ ଚଳି ।
ନେମାଳ ଠାବରେ ରତ୍ନକେଶ୍ୱରଙ୍କୁ ମିଳି ।୬୪।
ଦାମୋଦର ପୁର ଏକ ଅଛଇ ଭୁବନ ।
ଦୀନବନ୍ଧୁ ଓଝା ବୋଲି ତାହା'ର ଯେ ନାମ ।୬୫।
ଦଇତାରି ଦେହେଶ୍ୱ ଯେ ଆବର ଏକ ନାମ ।
ଅଷ୍ଟଅ ବନଇ ଜନ ଧରମରେ କାମ ।୬୬।

ଗ୍ରାମ ଗ୍ରାମ ବୋଲିକରି ଦୁଇ ମଇଦଇ ।
ଭଗତ ସ୍ଵଭାବରେ ତାଙ୍କ ଚନ୍ଦ୍ର ବୃଦ୍ଧିଥାଇ । ୬୭ ।
ଯେ ଥାନରେ ପଞ୍ଚଦନ ନର୍ତ୍ତି କଲେ ସ୍ଵାସ ।
କୃଷ୍ଣେଶ୍ଵର ବୋଲିକରି ଏକଇଂ ସେ ଦେଶ । ୬୮ ।
ବନ୍ଧ ଯେ ଯାଦବ ପିତା ବରଣ ପ୍ରବେଶ ।
ସ୍ଵଦ୍ଧାସ ଗୋପାଳ ଗୁରୁ ଯେତେକସ୍ତେ ଦାସ । ୬୯ ।
ବିଜଏ କରିବ ମୋହ୍ନୋ ମନରେ ବେଦନା ।
ତୁମ୍ଭର ଦ୍ରଶନେ ମୋହ୍ନୋ ଜର ଘୁଞ୍ଚୁ କନା । ୭୦ ।
ଚଣ୍ଟାଉ ପ୍ରବେଶ ପୁନ ଗମନ ଯେ କରି ।
ତନଦନେ ଉଶ୍ଵାସ ଯେ ତାହାର ଶ୍ଵାଶ୍ଵି । ୭୧ ।
ସ୍ଵଦ୍ଧାସ ମଣ୍ଡୋଲେ ଦଳ୍ପ ପୁଚ୍ଛେକ ସୁଣ ସେ ।
ଗୁରୁ ଆଗ୍ୟାଂ ଦଲେ ନାମ ବନ୍ଧ ଯଦୁ ଦାସେ । ୭୨ ।
ଧରମୁ ଦାସ ଯେ ହେଶ ମେଳରେ ପ୍ରବେଶ ।
କହ୍ନ ହୋ ଧରମ କଇଂ ଦେଶେ ତୁ ପ୍ରବଶ । ୭୩ ।
ଧରମୁ ଭଣିଲ୍ଲ ମାଲଗିରି କୁଦେ ମୁହିଂ ।
ଦାଣ୍ଟବେଣା ଘରେ ଗୁରୁ ସମାଦରେ ରହ୍ନି । ୭୪ ।
ତହୁଡ଼ି ନାମେଣ ଗ୍ରାମ ରହ୍ନଲେକ ଦନ ।
ହ୍ନରପାଳ ଦେଖି ହୋସ୍ତେ ହ୍ନରଷିତ ମନ । ୭୫ ।
କହୁଦନ ଯେନ ଧନ ବସନ ସମ୍ଭାଇଂ ।
ଆମ୍ଭର ଦେଶରେ ବାସ କରିବ ଗୋସାଇଂ । ୭୬ ।
ଶୁଣ ହୋ ଭୁପତ କହୁ ଦନରେ ଅନ୍ତରେ ।
ସମସ୍ତ ଗୋପାଳ ବନ୍ଧ ଯାଦବ ଗୋଚରେ । ୭୭ ।
ବଜ୍ର ଅକାର୍ଯ୍ୟ ଠାବରେ ଯେ ପୁଣ ଏଡ଼ିବ ।
ଭଗତ ଦେଖିଣ ଅର୍ଥେ ଆପଣେ ବୁଝିବ । ୭୮ ।
ସନମତ କରଦେଲେ ପଞ୍ଜିକା ପୁଡ଼ାଏ ।
ଭୂପତ ସନଧ୍ୟ ଚଲ ମାନବର ଯାଏ । ୭୯ ।
ମାରତ ନୃପତ ସ୍ଵାସ ଦେଖିଣ ହ୍ନରଷ ।
ସ୍ଵଦ୍ଧାସ ଚରିତ ଶୁଣି ମନକୁ ତା ତୋଷ । ୮୦ ।
ଗୋପାଳ କୃଲେ ସ୍ଵଦ୍ଧାସ ଦେମା ଅଧିକାର ।
ବରଷ ପଡ଼ି କରଣ ଖରଚ ତୁମ୍ଭର । ୮୧ ।

ସୁହାସ ଗୋପାଳ ଶୁଣି ମନ୍ଦ ମନ୍ଦ ହସି ।
ବରଷ ଭିକ୍ଷାକୁ ଆମ୍ଭେ ନ ପାରିବୁଂ ଆସି । ୮୨ ।
ଭରଥଙ୍କୁ ଅଧିକାର ସେ ଭୂମିରେ କର ।
ଯାଇଲେ ବୋଲଣ ଗ୍ରାମ ଘେରଲେ ଯେ ହେର । ୮୩ ।
ଜାତରେ ବରଜବାସୀ ତହିଂରେ ପରଛା ।
ସୁହାସ ଦ୍ରଶନେ ଧନ ଦଲ ମନ ଇଚ୍ଛା । ୮୪ ।
ଗୋପାଳ ବଧାନେ କଚ୍ଛୁ ଅଙ୍କ କଣଦେଇ ।
ସୁହାସ ଦକ୍ଷିଣା ବରଷର ଏ ଅଟଇ । ୮୫ ।
ଢ଼ଥାନ ପବନଙ୍କୁ ଯେ ପଗୃଣଲ ମୂଳ ।
କାହ୍ୱାଠାରୁ ସମର୍ପିବା କହ୍ୱବା ଏଥକୁ । ୮୬ ।
ଯାଦବ ଉଥାନ ଯେ କହ୍ୱଲେକ ପୁଣି ।
ଜାତଭଇ ଝଲ ବ୍ରହ୍ମ ବସମ ସ୍ୱେ ଗୁଣ । ୮୭ ।
ଗ୍ରାମିକ ପର୍ଯ୍ୟନ୍ତେ ମତ ହୋଅନ୍ତି ଯାହାର ।
ସୁହାସ ରସ ଯାହାର ନଥିବ ମନର । ୮୮ ।
ଚରଣ୍ଟ କର ଅବା ସେମାନେ ପାରନ୍ତି ।
ଗୀତ ନୃତ୍ୟ ସୁହାସରେ ଅମ୍ଭର ତ ମତ । ୮୯ ।
ବସ୍ତ୍ର ଧନ କଉଡ଼ି ସ୍ୱେ ଅମ୍ଭ ସଙ୍ଗେ ପୁଣ ।
ଶୂନ୍ୟେ ଖସି ପଡ଼ିବ ଯେ ଅଗଣ୍ୟାଂ ପରମାଣ । ୯୦ ।
ପ୍ରତେକ ପର୍ଯ୍ୟେ ହେବ ଅଧିକାର ପଣ ।
ଅଯାଚକେ ଅମ୍ଭଙ୍କୁ ତ ମିଳପାରେ ଧନ । ୯୧ ।
ଧରମୁ ଦାସେ ଏ ଦଗେ ଅଧିକାର ନଅ ।
ଶବଧା ଚନ୍ଦ୍ରେଣ ତୁମ୍ଭେ ଏ ଦେଶରେ ରହ । ୯୨ ।
ତହିଂ ଚଳ ନଳଟିଶ କୁଦରେ ବହାର ।
ସ୍ୱସରେ ସୁହାସ ମୂକ ମନରେଁ ବସ୍ତୃର । ୯୩ ।
ତ୍ରସ୍ତୁଂ ପ୍ରାହ୍ୱାନ ଦାଶ ସମାଦ ସାଧନ ।
ଦ୍ୱାଦଶ ଗୋପାଳ ତାକ କହନ୍ତ ବଚନ । ୯୪ ।
ସେବକ ଜନଙ୍କୁ ଡ଼ାକି କହନ୍ତ ଅନୁଅନ ।
ଦ୍ୱାଦଶ ଗୋପାଳ ତୁମ୍ଭେ ଭଗତର ଜନ । ୯୫ ।
ପଞ୍ଚ ସଖା ଅମ୍ଭର ହୋ ଦ୍ୱାଦଶରେ ସାର ।
ଦେଶରେ ଘୋଷରେ ଯେତ ହୋଇବାକ ସାର । ୯୬ ।

ବାଗଜଣ ପୁତ୍ର ବନ୍ଧୁ ପଣ୍ଡିତ ମୂରୁଖ ।
ସକଳ ଜନଙ୍କୁ ତ ତୁମ୍ଭେ ଅଟ ହୋ ସୁଖ । ୯୭ ।
ତୁମ୍ଭର ଦକ୍ଷିଣେ ରାଣୀ ନର୍ବଦଳ ଯାହା ।
ସେ ପାଞ୍ଚ ଜନଙ୍କୁ ଦେଲ ଧନ୍ୟ ଧନ୍ୟ ଆହା । ୯୮ ।
ଏସ୍ତେତେ କରଣ ଖେଦ ନ ମେଣ୍ଟିବ ପୁଣ ।
ତୁମ୍ଭ ପୁତ୍ରନାତିଙ୍କ ଆମ୍ଭ ଆଶ ଥିବ ଜାଣ । ୯୯ ।
କରପତ୍ର ଯୋଡ଼ି ପାସ୍ତେ ଗଡ଼ପାଲ ଶୋଇ ।
କଂପା ଗୁରୁ ଏସନ କଥା ଶ୍ରୀମୁଖରେ ହୋଇ । ୧୦୦୦ ।
ଭୃତ୍ୟ ପରଭୃତ୍ୟ ହିନା ତୋହୋର ତ ଆମ୍ଭେ ।
ଏକଥାକୁ ପରମାଣି କହିବା ଯେ ତୁମ୍ଭେ । ୧ ।
ଶୁଣ ହୋ ରହାସ ଦୀସେ ରହାସ ଚଣ୍ଡ ।
ଗୁରୁ ଯେ ବଡ଼ାଇ ପଣ ନ ଛାଡ଼ିବେ ଚଣ୍ଡ । ୨ ।
ନ ଭଜି ନାମ ସାଧନ ସମାଧି ନ ଇଚ୍ଛା ।
ଘୃତ ଦୁଧ ଭକ୍ଷଣ ଯେ କାମେନୀରେ ବାଞ୍ଛା । ୩ ।
ଏଣୁକରି ପାପଭରା ହୋଇବ ଅପାର ।
ବହୁତ ହୋଇ ଧନ ନ ରହିବ ଘର । ୪ ।
ସହଜରେ ତୁମ୍ଭର ଯେ ଥାଉଥିବ ଧନ ।
ସକଳ ଦେଶରେ ପୂଜା ତୁମ୍ଭର ଯେ ଜନ । ୫ ।
ଜଂଖେଗର ଭୂପତି କି ଜଗାଇଛ ଆଗ ।
ଏ ଦେଶର ଗୋପାଳ ତ ରାମଚନ୍ଦ୍ର ଭାଗ । ୬ ।
ବଷ୍ଟୁଦାସ ତପୀ ସଙ୍ଗେ ବନଖଣ୍ଡି ଥାଇ ।
ସେଠାବରେ ମେଳ ତୁମ୍ଭେ ଆସିଛ ଭୂଆଇ । ୭ ।
କରଯୋଡ଼ି ଯାଦବ ଉଥାନ ଯେ ପୁଣ ।
ଭବିଷ୍ୟ ଆଗତ କଥା ଶ୍ରୀମୁଖ ପ୍ରମାଣ । ୮ ।
ଶୁଣ ହେ ଯାଦବ ଉଥାନ ଏ ଦୁଇଜନ ।
ଆଗତ ଭବିଷ୍ୟ କଥା ଗୁପତ ଗହନ । ୯ ।
ଓଡ଼ଶା ରହାସ ଦେଖୁ ତୁମ୍ଭର ଏ ପିଢ଼ି ।
ଦୁଗ୍ରଥ ପିଢ଼ିକ କହୁ କହୁ ଥାଉ ବଢି । ୧୦ ।
ଦଶ ପିଢ଼ିଠାରେ ଘରେ ଘରେ ଦଳାଦଳ ।
ନାନାଜାତି ମାଂସେସ ଭୁଞ୍ଜିବେ ଯେ ବଳ । ୧୧ ।

ଧୂମ ଗଣ୍ଡା ଯେ ବରଜ ପତରକୁ ମୁଖ ।
ଅକରମ ଘରେ ମୁଖ ପଖାଳିବେ ସୁଖ । ୧୨ ।
ଗୁରୁ ଅଙ୍ଗ ଧରଣ ଯେ ରାହାସରେ ମାତ ।
ବଳବନ୍ତ ରୁଦ୍ରଙ୍କ ପରାଏ ଖୋଲ ଘେତ । ୧୩ ।
ଗ୍ରାମରେ ଧାମରେ ବଳେ ରାହାସ ଭିଆଣ ।
ଗନ୍ଧ ବସ୍ତ୍ର ଅଶରଧା ଯେବଣ ଯେ ଥାନ । ୧୪ ।

ଉଦର ନିମନ୍ତେ ସର୍ବେ ହୋଇବେକ ଦାସ ।
ମନ୍ତ୍ର ନ ପଢ଼ି ଛୁଇଁବେ ଗୋଲକର ରାସ । ୧୫ ।
ହର ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ବରୁଣ କୋବେର ।
ତେତିଶ ଦେବତା ଦେହ ନ ପାରିଲେ ଆର । ୧୬ ।
ରାବଣ ପ୍ରତାପୀ ରାମ ନ ପାରିଲେ ଦେଖି ।
ତହୁଂ ବନଆର ମଞ୍ଜ ମଣ୍ଡଳେ ନ ଲେଖି । ୧୭ ।
ଷୋଳ ସହସ୍ର ଗୋପୀ ଯେ ଗୋପାଳ ଗୋପପୁରେ ।
ରାହାସ ଆରମ୍ଭ କଲେ ଶ୍ରୀ ବୃନ୍ଦାବନରେ । ୧୮ ।
କେବଳ ନିତ୍ୟ ଏ ଭୂମି ଦେବଙ୍କୁ ଦୁର୍ଲଭ ।
ତୁମ୍ଭେ ସେ ଭିଆଣ କର ରାହାସ ସୁଲଭ । ୧୯ ।

କଳୁଦନ ସୁଖେ ପ୍ରାଣୀ ଶୁଣିମେ ଯେ ତତ୍ତ୍ୱ ।
କଳୁଦନେ ଏ କଥା ତ ନାରଟାର ମତ । ୨୦ ।
କଉଂ ଦିନ ହୋଇବାକ କହିବା ସନ୍ଧାନ ।
ଗୁପତ ନ କର ଗୁରୁ ଶ୍ରୀମୁଖ ବଚନ । ୨୧ ।

## ରାଜା ପୃଥ୍ୱୀପାଳନ ଭବିଷ୍ୟ

ପ୍ରତାପ ନୃପତିଠାରୁ ମୁକୁନ୍ଦ ରାଜନ ।
ଅଧେ ସୁଖ ଲଭିବାକୁ ପ୍ରାଣୀଏ ସର୍ଜନ । ୨୨ ।
ମୁକୁନ୍ଦ ଠାବରୁ ପୃଥ୍ୱୀ ବଡ଼ ଗୋଲହୋଇ ।
କହୁଁତରେ ସୁଖ ଭୋଗ ରହିବାକ ଛାଇ । ୨୩ ।
ସେବଣ ଠାବରୁ ଧନ ଧନ ରାଜପୁତ୍ର ସେ ମନ୍ତ୍ରୀ ।
କଳି ଉପୁଜିଲେ ସୁଖ ନ ରହିବ କାହିଂ । ୨୪ ।
ଯତିମାନଙ୍କ ଯନ୍ତ୍ର ସତ ନ ଥାପନ ।
ତପୀମାନଙ୍କର ତପ ହୋଇବ ଖଣ୍ଡନ । ୨୫ ।

ଅକୁଳୀଣ ଜନମାନେ ବୋଲାଇବେ ବଡ଼ ।
କୁଳୀଣ ଜନେ ଘଷିବେ ଅକୁଳୀଣ ଗୋଡ଼ । ୨୬ ।

ନୃପତ ହୋଅଇ ରଜା ରଜା ହୋଏ ପାଜ ।
ପାଜବଳ ମଣ୍ଡଳରେ ହୋଇବ ଉତ୍ପାତ । ୨୭ ।

ଗୁରୁ ବୁଲୁଥିବେ ବନ ପାଞ୍ଚଟା କଉଡ଼ି ।
ସେବକମାନେ ତ ଦେବେ ଦୁଆରୁ ଘଉଡ଼ି । ୨୮ ।

ଅତିଥି ବସାଇ ଅଗ୍ରେ କରିବେ ଭୋଜନ ।
କୁଟୁମ୍ବ ଜନେ ଲୋଡ଼ିଲେ ଭୁଞ୍ଜିବେ ଭଲମାନ । ୨୯ ।

ପାଞ୍ଚ ସାତ ବାର ନଳ ଭୂଇଁ ବସାଇଣ ।
ଗୁଣେକ ପଟାକୁ ବେନ ଗୁଣ ଯେ ଭିଆଣ । ୩୦ ।

ପୃଥ୍ୱୀ ମାଣମାନେ ହେବ ଶଏ ଯେ ଷାଠିଏ ।
ଆତୁରେ ପରଜାମାନେ ନଥିବେ ଯେ ଥିଏ । ୩୧ ।

ପରଜା ମୁଦ୍ରାର ହେବେ ରଜାଏ ଶାଗୁଣା ।
ଭରଥର ଶାପ୍ୟ ଏ ଯେ ହୋଇଛୁ ଘୂର୍ଣ୍ଣା । ୩୨ ।

ଅନ୍ୟାୟମାନ ହୋଅଇ ବିପରୀତ ଜାତ ।
ରଜା ଛଡ଼ାଇନେବ ସବୁ ପରଜାର ବିତ୍ତ । ୩୩ ।

ବିକଳ ହୋଇଣ ବଣେ ପଶିବ ସେ ଯାଇଁ ।
ପୋଡ଼ୁ ଯେ ମୋହୋର ପେଟ କି କରିବି ରହି । ୩୪ ।

ଆରତେ ପରଜାମାନେ ପାଡ଼ୁଥିବେ ଡକା ।
ସାହା ସଖ୍ୟ ନଥିବ ଯେ ହୋଇଥିବେ ଏକା । ୩୫ ।

ଋତୁକାଳେ ଇନ୍ଦ୍ର ନ ପାଳିବ ଏ ମଣ୍ଡଳ ।
ଗାବମାନଙ୍କର କ୍ଷୀର ହୋଇବ ନଷ୍ଟର । ୩୬ ।

ପତିର୍କି ବିଶ୍ୱାସମାନ ନୋହିବେ ଭାରିଯା ।
ପୁତ୍ରକୁ ତେଜିଣ ପିତା ଦୋହିତା ଶରଧା । ୩୭ ।

ଅବିବେକୀ ପୁରୁଷ ଯେ ପୃଥ୍ୱୀରେ ଅପାର ।
ଅକର୍ମ ସୃଷ୍ଟି ଶିଳ୍ପ ଯେ ହୋଇବେ ବିସ୍ତାର । ୩୮ ।

ରଣ୍ଡୀ ଚଣ୍ଡୀ ପାଖଣ୍ଡ ଯେ ପଢିତ ମଳିଣ ।
ଗ୍ରାମକେ ଉଜ୍ଜ୍ୱଳ ଥିବେ ଯେତେକ ଯେତେକ ଜନ । ୩୯ ।

ପଥୁର ପତର ଭୂମି ଖୋଳିଣ ଗିରିସ ।
ଧନମାନ ବରଷରେ ରାଜନ ବିନାଶ । ୪୦ ।

ନୁଖୁରୁ ମାଥ ନୁଖୁରୁ ଦୀପ କୁଣ୍ଡଆଂ ବମୁଖ ।
ଜଳ ଫଳ ଭକ୍ତି ପ୍ରାଣୀ ବଞ୍ଚୁଥିବେ ଦୁଖ । ୪୧ ।

ତରସ୍ତ ହୋଇଣ ଅଶ୍ରୁ ଝରଇ ବଶେଷେ ।
ସେଥକୁ ଉପାଏ ଜସ ଫେଡ଼ିବା ସନ୍ଦେଶେ । ୪୨ ।

ତୃଷାସ୍ତ ଅନ୍ତରେ ହେବ କରଜା ଝପର ।
ପାପୀଙ୍କି ଧ୍ୱଂସି ଆସିବେ କଲଙ୍କୀ ମଞ୍ଚର । ୪୩ ।

ଚେତେହେଙ୍ଗ ହୋଇବ ସୁଖ ଏ ମଞ୍ଚ ମଣ୍ଡଳ ।
ଛତିଶ ରାଗ ଯେ ଚୁଖୋଳ କର୍ତ୍ତାଳଙ୍କ ତାଳ । ୪୪ ।

ମାଦଳ ଘଣା ଯେ ସବୁ ମର୍ଦ୍ଦୋଳ ଢୋଲକ ।
ଖଂଜଣ ଡାକ ଡମ୍ବରୁ ଦାରାଅ ବୃତକ । ୪୫ ।

ରବା ସିଙ୍ଗା ବେନୁ ବେତ ବୁଲ ଯେ ତରାସ ।
ପୁରାଣ ରାବାଣ ଗୀତା ଭାଗବତ ରସ । ୪୬ ।

ବେଦ ଗୀତ ନୃତ୍ୟ ହାସ୍ୟ ଦୟା ଧର୍ମମାନ ।
ଦାସପୁଜ ସକଳ କରବେ ସାଧନ । ୪୭ ।

କଲଙ୍କୀ ରାଜନ ପାସ୍ତେ ଦୁଖ ଏ ସଂସାର ।
ବ୍ରହ୍ମା ବିଷ୍ଣୁ ଶିବ ଆନ କେ ଅବା ନସ୍ତାର । ୪୮ ।

ହରର ଭଆଣ ଯେ ଅନ୍ୟଥା ନୋହେ ଜାଣ ।
ଯୁଗ ଯୁଗକୁ ସ୍ତେ ଖେଡ଼ ବଧାତା ବଧାନ । ୪୯ ।

ମାହାକଷ୍ଟ ଜଗତରେ ପାଇବେ ତ ପ୍ରାଣୀ ।
ପରଚେ ପାଇଲୁ ଗୁରୁ ଶ୍ରୀମୁଖରୁ ଶୁଣି । ୫୦ ।

ଦାର ମୂର୍ତ୍ତି ବସନ ଯେ ଶ୍ରୀହାଟରେ ଶାଢ଼ୀ ।
ଦାସପୁଜ କର ତୁମ୍ଭେ ଓଡ଼ିଶାରେ ବଢ଼ି । ୫୧ ।

ଶିରେ ଶାଢ଼ୀ ବାନ୍ଧଣ ଦୁଆଦଶ ନମ ନମ ।
ଆଗ୍ୟାଂବଲେ ତୁହେ ରହ ତୋହୋ ଗୁଣଗ୍ରାମ । ୫୨ ।

ସଂସାର ଜନକୁ ଆମ୍ଭେ କୃଷ୍ଣ କଥା କହ ।
ଭିକ୍ଷା ଶିକ୍ଷା ମାଗିଣ ଯେ ପୋଷୁଥିବୁଂ ଦେହ । ୫୩ ।

କରଣି ରଖିଲୁ ଗୋପ୍ୟ ନାମରେ ସ୍ମରଣ ।
ଶ୍ରୀ ଅଚ୍ୟୁତ ଶ୍ରୀ ଅଚ୍ୟୁତ ମୁଖେ ଆମ୍ଭ ଜାଣ । ୫୪ ।

ଗୁପତ ପାଠ ସ୍ତେ ବଛ ରଖିବ ତୁମ୍ଭର ।
କୋଟିକେ ଗୋଟିସ୍ତେ ସାର ଜଗତ ଆମ୍ଭର । ୫୫ ।

ଭଗତ ଜନଙ୍କୁ ସେତ ହୋଇବ ମଙ୍ଗଳ ।
ପାପୀଜନ ଏ ପାଠକୁ ନ ପାରେ ସମ୍ଭାଳି । ୫୬ ।
ଶ୍ରବଣେ ଶୁଣିଲେ ତୀର୍ଥ କଲା ଫଳ ପାଇ ।
ବରଣ ଚରିତ ଗୀତା ହରଷେ ଶୁଣଇ । ୫୭ ।
ତିନି ଦିନେ ଆଠ ଦିନେ ପନ୍ଦର ଦିବସ ।
ମାସକେ ତିନି ଦିବସ ପୂଜା ଦେବ ସିସ । ୫୮ ।
ତିନି ଦିନ ପୂଜା ଯେବେ କରିବ ନିର୍ବାଣ ।
ଗୋଲକରେ ବସଇ ଯେ ଜୀଅଂନ୍ତେ ମରଣ । ୫୯ ।
ସେ ପାଠକୁ ଯେହୁ ହାଦେ ପଠନ କରିବ ।
ଛଡ଼ ପୁଡ଼ା ଠାବେ ଦୁବ କେସ୍ଥାଏ ଖୋସିବ । ୬୦ ।
ଯେତେକ ଇଚ୍ଛିବ ତେତିତ ପଦ ଶୁଣାଇବ ।
ବାର ମୂରୁତିକ ଯେ ପଟବସ୍ତ୍ର ଦେବ । ୬୧ ।
ଉଚୁତ କହିଲେ ବଳ ଅପରାଧ ଜାଣ ।
ତୁମ୍ଭଙ୍କୁ କହିଲୁଂ ତୁମ୍ଭେ ଭଗତର ଗଣ । ୬୨ ।
ରାହାସ ମଣ୍ଡଳୀ ତାଙ୍କୁ ପରିପତ ହୋଇ ।
ଗୋପ୍ୟାନ ଚରିତ ଦୀନ ଅଚ୍ୟୁତ ଯେ କହି । ୬୩ ।
ଯେ ଜନ ଶୁଣିମ ପାଠ ଭଗତର କୋଠ ।
ନ ଶୁଣିଲେ ଖୋଡ଼ ହେବ ଏକଥା ଅକାଟ । ୬୪ ।
ଅବଧି କରଣ ପୁଷ୍ୟ ଚନ୍ଦନ ଯେ ପାନ ।
ବରତ ତ୍ରିର କରଣ ଗୁରୁବାର ଦିନ । ୬୫ ।
ଦକ୍ଷିଣା କଉଡ଼ି ସ୍ୱରପଣ ପାଠ କହି ।
ଶୁଣିମାକୁ ପବନର ପୁଜାବଧି ସେହି । ୬୬ ।
ଗୁବା ପାନ ନିମନ୍ତେଣ ଦକ୍ଷିଣାର ବିଧି ।
ଗୋପାଳ କୁଳରୁ ସେହା ନେଇଥିବ ସାଧି । ୬୭ ।
ରାହାସରେ ପଶି ଯେହୁ ଦେବାକୁ କାର୍ପୁର୍ନ୍ୟ ।
ଗୁରୁ ଅଙ୍ଗ ଧରି ନାହିଂ ଜାଣିମ ପ୍ରମାଣ । ୬୮ ।
ଏ ବରେ ନ ଶୁଣିମ ଦୁବରେ ଜାଣିମ ।
ଗୁରୁଗୁରୁ ଜନ ସବୁ ଠାବରେ ବଜବ । ୬୯ ।
ସାତ ଯେ ମୂରୁତ ଯଦି ମହୋଚ୍ଛବ ଦେବ ।
ଅପ୍ରାଧ ଧଂସିବ ତାକୁ ସେ ପାଠ କହିବ । ୭୦ ।

ସୋମବାର ଶୁଣି ଆଠ ପଣ ଯେ ଦକ୍ଷିଣା ।
ଗୋବିନ୍ଦ ଉଥାନ ବେନି ଦୁଇଜନ ଜଣା । ୭୧ ।
ଗୁବା ପାନ ଦକ୍ଷିଣା ଯେ କରିବ ବହ୍ନିରଣ ।
ଜାଣିମ ଧାନରୁ ଯେତେକ୍ଷେ ଅଗାଡ଼ି ପ୍ରାମାଣ । ୭୨ ।
ଏ ପରେ ପଡ଼ିଲେ ପୋଥ ହୋଇବାକ ନାଶ ।
ଢୋଲାଇବ ଆନଠାରେ କରିବ ସେ ରସ । ୭୩ ।
ପଞ୍ଚାଶ ମୁହୂର୍ତ ଯଦ୍ଧ ମହୋଛବ ଦେବ ।
ମଙ୍ଗଳ ବାସରେ ସ୍ୱେ ପାଠ ଶୁଣାଇବ । ୭୪ ।
ମକୁନ୍ଦ ବାଲେକ ବୃନ୍ଦାବନ ଏ ଦକ୍ଷିଣ ।
ସୁଜନ ଅଂଶକୁ ଯେ ଏହା କରିବ ବରଣ । ୭୫ ।
ଦୁଇ ଅଂଶ ନାସ୍ତି ଥିବ ସୁଜନର ଅଂଶ ।
ଗୁବାକ ପାନ ଦକ୍ଷିଣା କରତାଳ ଦାସ । ୭୬ ।
ଏଠାରେ ଦୁବରେ ଜାଣ ଅଧେ ଶୁଣୁ ପୋଥି ।
ଚନ୍ଦ୍ର ଦାହ୍ନ ଯିବ ସବୁ ଶୁଣାଇଲେ ଏଥି । ୭୭ ।
ଅକର୍ମ ଆଦୁଷ୍ଟି ତଷ୍ଟି ଅଟଇ ଲମ୍ପଟ ।
ଦୁଷ୍ଟାଅ ପଦ୍ମରେ ତାକୁ ଶୁଣାଇବ ପାଠ । ୭୮ ।
ପଞ୍ଚାଶ ମୃହୁର୍ତ ଭକ୍ତା ଦେଲେ ଶୁଣାଇବ ।
ଶୁକର ବାସରେ ଦ୍ରବ୍ୟ ଏ ପାଠ ଶୁଣିବ । ୭୯ ।
ଅନନ୍ତ ବଛ ଆନନ୍ଦ ତନି ବାର ପଣ ।
ଗୁବା ପାନ ଦକ୍ଷିଣା ଏ ଗୁରୁଙ୍କ ପ୍ରମାଣ । ୮୦ ।
ଗୋପାଳ କୃଳକୁ ତୁମ୍ଭେ ବୁଝାଇବ କଥା ।
କଳା କରତନକୁ ଯେ ହୋଇଥିବ ପୋଥା । ୮୧ ।
ଦକ୍ଷିଣା ନ ଦିଲେ ଗୁରୁ ପଥ ନ ଜାଣିମେ ।
ଆପଣେ ଆପଣେ ବଡ଼ ଅପଥେ ଗମିବେ । ୮୨ ।
ଏଠାରେ ଜାଣିମ ପାଠ ଶଏ ଶୁଣାଇବ ।
ପୂରୁବେ ପୂଜିବ ତନି ଦିନ ଭୁଥା ଖାବ । ୮୩ ।
ଯୋରଣବନ୍ତ ଅଟଇ ଜାଣିମ ଏ ଜନ ।
ତନି ଯେ ପ୍ରହର ଠାବେ ପାଠର ବଚନ । ୮୪ ।
ପାଠ ଶୁଣାଇଣ ଦେବ ଅମୃତ ଯେ କୁଣ୍ଡ ।
ବୁଧ ବାସରରେ ଶୁଣ ଏମନ୍ତ ଯେ ପିଣ୍ଡ । ୮୫ ।

ବାସୁ କୃଷ୍ଣ ସୁଦାମକୁ ଦକ୍ଷିଣା ଯେ ପୁଣ ।
ତନ ତନ ପଣ ଗୁବା ପାନ ଏ ନିର୍ବାଣ । ୮୬ ।
ଯେଉଂ ଜନ ପୂଜିବ ସେ ଗୋଲକରେ ବାସ ।
ନ ପୂଜିଲା ଜନ ଯେହ୍ନେ ଧାନର ଯେ ଘାସ । ୮୭ ।
ତନ ପାଆ ପାଠ ଶୁଣୁ ଜାଣିମ ଏ ଦ୍ରବ ।
ଘୃତ ଦିନ ସ୍ନାନ ବସି ଯେ ସ୍ତେ ପାଠ ଶୁଣିବ । ୮୮ ।
ନାରିକେଲ ଗୋଟା ପାନ ଶଏ ଗୁଆ ଗାଇ ।
ରବିବାରେ ଶନିବାରେ ଏ ପାଠ ଯେ କହି । ୮୯ ।
ଯାଦବ ମଥୁର ଦାସ ମଧୁଦାସ ପୂଜା ।
ଗୁରୁ ସନମତ ଦାସ ଗୁବା ପାନ ଭୁଞ୍ଜା । ୯୦ ।
ତନପଣ ଦଶ ଗଣ୍ଡା ପରମାଣ ହୋଏ ।
ଯଉ ଅଂଶେ ଯେ ମିଳିବ ଝବର ଥୋକାଏ । ୯୧ ।
ବରଷ ପଡ଼ିରେ ସାଧୁ ମହୁଛବ ଦିଅ ।
ତୁମ ଅଂଶ ନିମନ୍ତରେ ଏହୁ ପାଠ ଥୁଅ । ୯୨ ।
ସ୍ୱହାସ ଦକ୍ଷିଣା ଦିଲେ ପଞ୍ଚୁ ମାହାଜନ ।
ଦ୍ୱାଦଶ ଗୋପାଲ ଧନ୍ୟ ଗୁରୁଙ୍କ ତ ମାନ୍ୟ । ୯୩ ।
ଆମ୍ଭର କରୁଣା ଶାଢ଼ୀ ଖୋଲପୂଜା ପାନ ।
ବରଷ ପଡ଼ିରେ ଦେଲୁଂ ଅଚ୍ୟୁତ ବଚନ । ୯୪ ।
ଅଚ୍ୟୁତ ସ୍ୱହାସରେ ସ୍ତେ ସ୍ୱଣ ହେବ ସେ ।
ସବୁଙ୍କର ଗୁରୁ ତୁମ୍ଭେ ବାରଜଣ ଦାସେ । ୯୫ ।
ମାସ ଶେଷ ବରଷରେ ସଙ୍କୁଳଣା ଥିବ ।
ମେଳା ମହୋଛବ ଯାତା ଆସି ଭିଆଇବ । ୯୬ ।
ପୋଷଣାହ୍ୱାସ୍ୱିକ ପୁତ୍ର ଧର୍ମ ହୋଇ ଠାଣ ।
ଦାଣ୍ଡପୁତ୍ର ତୁମ୍ଭେ ଘରପୁତ୍ର ସ୍ୱମ ଜାଣ । ୯୭ ।
ଧରମୁ ଭରଥ ବସ୍ତୁ ଯାଦବ ମୋହୋର ।
ତୁମ୍ଭେ ଯେ ଗୋପାଳଙ୍କର ଅଟ ହୋ ସୋଦର । ୯୮ ।
ବ୍ରହ୍ମାଣ୍ଡ ଜନଙ୍କର ତୁମ୍ଭେ ସାକ୍ଷାତ ସୋଦର ।
ଦ୍ୱାଦଶ ଗୋପାଳ ହସ ରସରେ ବେହାର । ୯୯ ।
ଜ୍ୟେଷ୍ଠ ପୂର୍ଣ୍ଣିମୀ ଦିନକୁ ଆମ୍ଭର ମୁହାଂସ ।
ସନାତନ ଗୋସାଇଂଙ୍କ ଦିନର ସ୍ୱହାସ । ୧୧୦୦ ।

ବୈରାଗୀ ପୁରୁଷଙ୍କର ଦାସପୁତ ନାହିଂ ।
ଭଗତ ପୁତ ତାଙ୍କ ସ୍ନେ ଅଚ୍ୟୁତ ଅଟଇ । ୧ ।
ସେହି ମହୋଛବ କର ମୋର ସିବ ଦେହି ।
ଜ୍ୟେଷ୍ଠ ପୂର୍ଣ୍ଣମୀ ଦିନକୁ ମୋହୋର ସିନହି । ୨ ।
ଦଶମୀ ପ୍ରଭୃତ୍ତି ସାତ୍ତୋଇବ ସ୍ନେ ଉଛବ ।
ବରଷ ଦିନରେ ଗୁରୁ ଉଛବ କରିବ । ୩ ।
ପୂର୍ଣ୍ଣମୀକୁ ଆରଦିନ ରହାସ ଉଛବ ।
ଗୁରୁଙ୍କୁ ସୁମରି ବରଷକା କରୁଥିବ । ୪ ।
ଫଗୁଣ ଦୃତୀଆ ଶେଷେ ଗୋପାଲ ଉଛବେ ।
ଦ୍ୱାଦଶ ଗୋପାଲ ଯାତ୍ରା କରିବ ଏ ଭାବେ । ୫ ।
ତୃତୀଆ ଦିନରେ ରାସ ହେମନ୍ତ କରିବ ।
ଜଂଥାନର ମହୋଛବ ନାମରେ ବରିବ । ୬ ।
କୁଆଂର ଦଶମୀ ଦିନ କଲେକ ଉଛବ ।
ସଙ୍କୀର୍ତ୍ତନ ରାସ ଅର୍ଥେ ଯାତ୍ରାକୁ ଉତ୍ତମ । ୭ ।
ଜ୍ୟେଷ୍ଠ ଏକାଦଶୀ ଦିନ ରାମର ଉଛବ ।
ପୂର୍ଣ୍ଣମୀ ମିଶିଣ ତିନ ଯାତ ଏହୁ ଭାବ । ୮ ।
ତିନ ମହଛବ ବରଷରେ ଇଷ୍ଟ କର ।
ଅବର ସକଳ ଯାତ୍ରା ତୁମ୍ଭର ଠାବର । ୯ ।
ମହୋଛବ କର ତୁମ୍ଭେ ଏମନ୍ତ ବିଚାର ।
ଭଗତ ନାବରେ ଭବ ଜଳୁଂ ହେବ ପାର । ୧୦ ।
ଯାଅ ଯାଅ ଜଏଭୂମି ତୁମ୍ଭର ବିଳାସ ।
ରାମଚନ୍ଦ୍ର ଯାଅ ଏବେ ତୁମ୍ଭ ନିଜ ବାସ । ୧୧ ।
ଧରମ୍ଭ ଭରଥ ବନ୍ଧ ନନ୍ଦ ଚୁହେ ଯାଅ ।
ଦ୍ୱାଦଶ ଗୋପାଲ ତୁମ୍ଭେ ପୂଜାବିଧି ଦିଅ । ୧୨ ।
ଏ କଥା ପ୍ରମାଣ ରସେ କଟାଳ ଏଣତାଜ୍ୟ ।
ନିଷ୍କପଟ ପୁରୁଷ ଯେ ତୁମ୍ଭେ ଦେଲେ ରାଜ୍ୟ । ୧୩ ।
ଏହାନ୍ତ ଠାବରେ ତୁମ୍ଭେ ଅନ୍ତର ନକର ।
ତୁମ୍ଭେ ହୋ ଅନ୍ତର ନ କରିବ ଏ ପାଞ୍ଚର । ୧୪ ।
ନିରଂଜନ ଏ ପାଞ୍ଚରେ ଦ୍ୱାଦଶକୁ ସାର ।
ଅନ୍ତର କରିବ ତାର ଦ୍ୱାଦଶ ଶୃଙ୍ଗାର । ୧୫ ।

ପୁନ ନାଣ ଖୋଡ଼ ମୃତୁ ଅପସ୍ମାରେ ପଡ଼େ ।
ପୁଙ୍ଗ ପୁଙ୍ଗ ଘର୍ଜଂ ଜନ ନ ଜାଣିଣ ହୁଡ଼େ । ୧୬ ।

ଏ ଘୋର ମୃରୁଖ କଲ ତାପର ନମନ୍ତ ।
କଲ ଭଗତଙ୍କ ପାଇଂ ଲେଖିଲୁଂ ଏ ଗ୍ରନ୍ଥ । ୧୭ ।

ଦ୍ୱାଦଶ ପାଞ୍ଚରେ ତୁମ୍ଭେ ନୁହଂ ନା ବେଗଲ ।
ନୀର କ୍ଷୀର ଯେସନେ ହୋଂ ଏକବ ସ୍ୱେ ମେଲ । ୧୮ ।

କୁମୁଦ ଚନ୍ଦ୍ରମା ପ୍ରାଏ ତୁମ୍ଭର ହରଷ ।
ପ୍ରଭାତର ଅର୍କ ପଦ୍ମବନର ବଘୋଷ । ୧୯ ।

ସେହମନ୍ତ ଏ ସଂସାରେ ତୁମ୍ଭର ଘଟଣ ।
ମେଲଣି ମାଗିଣ ଗଲେ ଯେ ଯାହା ଭୁବନ । ୨୦ ।

ଶ୍ରୀ ନଲଗିରକ ବୃହଂ ଭଜନ କୁଦର ।
ସ୍ୱେଶୁ ଏନ୍ତୁ କୁଦ ନାମ ନୀଲଗିର ଘର । ୨୧ ।

ଏ ଅନ୍ତରେ ଚଦୋପୃଲା ପଦ୍ମବନେ ବାସ ।
ମୋହୋର ରହବ ଦେହ ବଟର ପାରୁଶ । ୨୨ ।

ଦ୍ୱାଦଶ ଗୋପାଳ ଗଲେ ପୁରୁବ ଦଗରେ ।
ହରବୋଲ ହରବୋଲ ଡକବାର ହରେ । ୨୩ ।

ହର ହର ଶବଦରେ ହରବ କଲୁଷ ।
ପୁଜନ ଭ୍ରାଣୀ ହର କାରତନ ଘୋଷ । ୨୪ ।

ହରଜନ ପାରୁଶରେ କ୍ଷଣେ ଦଣ୍ଡେ ଯେନ୍ତୁ ।
ସେ ଜନ ଚରଣ ତଳେ ମୋର ମନ ରହୁ । ୨୫ ।

ଯାମର ଅଚ୍ୟୁତ ମୋର ହର ଯେ ସଙ୍ଗାଳ ।
କହଇ ଅଚ୍ୟୁତ ଗୁପ ରସରେ ମଉଳ । ୧୧୨୬ ।

॥ ଇତଶ୍ରୀ ବରଣ ଚଣ୍ଡ ଗୀତା ଗ୍ରନ୍ଥ ସଦାଜସ୍ୱେ ସଂପୂର୍ଣ୍ଣ ॥



॥ ଆଷାଢ଼ ଶୁକ୍ଳ ବାଣୀରେ ଗାଇବ ॥

ଶୁଣ ହୋ ରାମ ରହସ୍ୟ ବଚନ
ବୀଜମାନଙ୍କର ସିଦ୍ଧ ବିଧାନ ।
ଯହିଂ ଥାନରୁ ଯେ ହୋଇଲେ ଜାତ
ଯେମନ୍ତେ ହେଲେ ପଞ୍ଚ ମହାଭୂତ ।
ତାହା କହ ତୋତେ
ଯେଣୁ ଅଛୁ ଆମ୍ଭେ ଏ ପଞ୍ଚଭୂତେ । ୧ ।

ଶୁଣି ରାମଚନ୍ଦ୍ର ଏସନ ବାଣୀ
ପ୍ରଳମ୍ବ କଲେ ଯେ କୁମର ମଣି ।
ବୋଲଇ ଗୋସାଇଂ ମହିମା ମେରୁ
ମହିମା ତୁମ୍ଭର କେ କହି ପାରୁ ।
କୃପା ମୋତେ ହେଲା
କୋଟି ଜନ୍ମେ ମୋର ଶୁଣା ନଥିଲା । ୨ ।

ଅଗ୍ୟାଂ ହେଲା ମୋତେ ଶ୍ରୀମୁଖେ ଯାହା
ମୋ ଗୁରୁ କାହିଂ ପାଇବଇଂ ତାହା ।
କରୁଣା ଯେବେ ମୋ ଠାରେ ହୋଇଲା
କୃପାକର ବୋଲି ରାମ କହିଲା ।
ଅଚ୍ୟୁତ ହରଷ
ରାମଚନ୍ଦ୍ରକୁ ଯେ ବସାଇଣ ପାଶ । ୩ ।

ବୋଲନ୍ତି ଶୁଣ ହୋ ବାଳ ତନୟୀ
ବୀଜ ବ୍ରହ୍ମ ଦୁଇ ଏକତ୍ୱ ହୋଇ ।
ବୀଜକୁ ଚହ୍ନିଲେ ବ୍ରହ୍ମକୁ ପାଇ
ବ୍ରହ୍ମ ଚହ୍ନିଲେ ଝଗଡ଼ା ସରଇ ।
ଶୁଭଇ ଶବଦ
ସଦଗୁରୁ ସିନା ଜାଣନ୍ତି ଭେଦ । ୪ ।

ସଦଗୁରୁ ଗୁଣ କହିବ କେତେ
ରାମଚନ୍ଦ୍ର ଦାସ ତୋର ଅଛତେ ।
ସଦଗୁରୁ ପରେ ନାହିଂ ଯେ ଆନ
ଶବଦ ପରେ ଯାହା ତହେଁ ଧାନ ।

ଧନ୍ୟ ତାର ମତ
ସଦଗୁରୁ ଯେହୁ ସେବା କରନ୍ତ । ୫ ।

ଶୁଣ ରାମଚନ୍ଦ୍ର ବରଜସୁତ
ସଦଗୁରୁ ପାଦେ ବଳାଅ ଚିତ୍ତ ।
ସକଳ ପାଇବୁ ପାଦେ ସେବିଲେ
ସଦଗୁରୁ ସେବ ଅଚ୍ୟୁତ ବୋଲେ ।
କହିବାକ ତୋତେ
ଶୁଣ ରାମଚନ୍ଦ୍ର ହରଷ ଚିତ୍ତେ । ୬ ।

ଶୁଣ ହେ ରାମ ତୋହ୍ମ ଆଗେ କହି
ଶତେ ଜନ୍ମର ପାତେକ ଖଣ୍ଡଇ ।
ସଦଗୁରୁ ପାଦେ କଲେ ଯେ ହେଳା
ଶୁଖିଲ ନଦୀରେ ବୁଡ଼ିବ ଭେଳା ।
ନଷ୍ଟେ ନାଶ ହେବ
ତିନ ଭୁବନେ ହୋ ଠାବ ନ ଥିବ । ୭ ।

ବୀଜବ୍ରହ୍ମ ବୋଲି ବୋଲନ୍ତି ଯାହା
ଶୁଣ କୁମର ହୋ କହିବା ତାହା ।
କୋଟି ଜନ୍ମର ହୋ ଥିଲେ ବାସନା
ବୀଜ ଭେଦ କିଛୁ ପାଇବୁ ସିନା ।
ଶୁଣ ତାହା ଏବେ
ସଦଗୁରୁ ସେବିଥିଲୁ ତୁ ପୂର୍ବେ । ୮ ।

ଶୁଣ ହୋ ରାମ ବରଜ ତପସ୍ୱୀ
ଯେତେବେଳରେ ଯୁଗ ଶେଷ ହୋଇ ।
ଜଳ ଥଳ ଅଗ୍ନି ନ ଥିଲେ କେହି
ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ନ ଥିଲ ବାଇ ।
ଶୂନ୍ୟହିଁ ନ ଥିଲ
ଅନ୍ତର୍ଯ୍ୟାମୀ ନାଥ ଅଦୃଶ ହେଲ । ୯ ।

ଯୋଗ ଆସନେ ବସେ ଭଗବାନ
ଯାହାର ନାହିଁ ରେଖ ବର୍ଣ୍ଣ ଚିହ୍ନ ।
ଏମନ୍ତେ କିଛୁ ଦିନର ଅନ୍ତରେ
ଅଦଭୁତେ ଶୂନ୍ୟ ହେଲ ଶୂନ୍ୟରେ ।

ଶୂନ୍ୟରୁ ଶବଦ
ଜାତଲ ପାତନା ଏ ଅନହଦ । ୧୦ ।

ଅନ୍ତ ନୋହିଲ ତା ମହିମା ଯେଣୁ
ଯୋଗମାୟା କାୟା ବେଢ଼ାଏ ତେଣୁ ।
ଯୋଗ ହୋଇଲେ ହୋ ଅକାର ଜାତ
ଅରେହ ନାମ ତାହାର ସନ୍ତାତ ।
ଅନାମିକା ସେହ
ଅନନ୍ତ ଶିରେ ଅନତ୍ୟଂଟି ସେହ । ୧୧ ।

ଅର୍ଦ୍ଧ ଊର୍ଦ୍ଧ୍ୱ ଯେନ ଭେଦ ହୋଇଲ
ମଧ୍ୟରେ ଶୂନ୍ୟ ବିକାଶ କରିଲା ।
ପଞ୍ଚମ ବେଦ ସେ ଗର୍ଭେ ପ୍ରବେଶ
ପଞ୍ଚମ ଦ୍ୱାରେ ନିବାସ କରଇ
ପଞ୍ଚ ମହାଭୂତ
ପଣ୍ଡିତ ଜନଙ୍କର ଯେ ସେ ତତ୍ତ୍ୱ । ୧୨ ।

ମହାମାୟା ଅଙ୍ଗ ଦେଲ ବେଢ଼ାଇ
ମଧ୍ୟରେ ଶୂନ୍ୟ ମଣ୍ଡଳା ବଢ଼ାଇ ।
ଦୁର୍ଗା ରୂପରେ କ୍ୱାରକୁ ଜଗିଲ
ସୁରମାନଙ୍କର ଦର୍ପ ଗଞ୍ଜିଲା ।
ଅଷ୍ଟଭୁଜେ ଭିଷ୍ଣ
ଅସ୍ତ୍ର ଅୟୁଧ ହୋ ଶ୍ରୀଭୁଜେ ଶୋଭ । ୧୩ ।

ହିଲଧାୟି ସହିଂ ପତ୍ନି ନପାର
ଶହସ୍ର ଧର ହୋ ହେଲେ ନିବାର ।
ବୀଜମାନଙ୍କର ଯେଉଁଠାରେ ପର
ହିବଦ ଭେଦ ହେଲେ ପଣତ୍ରର ।
ହରି ହରି ଘୋଷ
ବୀଜମାନଙ୍କର ଯେନ ଅଦେଶ । ୧୪ ।

ବୀଜମାନଙ୍କର ନାମ ହୋ ଯେତେ
ଶୁଣ ସୁମନେ ହୋ ବରଜ ସୁତେ ।
ଓଁକାର ଯେନ ଛଡ଼ ବୀଜ ହୋଇ
ହ୍ରୀଂ ଶ୍ରୀଂ କ୍ଲୀଂ ତ୍ରି ବୀଜ ଏହି ।

ଓଁକାର ବର୍ଣ୍ଣିତ
ଧ୍ଲୀଂ ଫ୍ଲୀଂ ଛଡ଼ ବୀଜ ଏ ହର । ୧୫ ।
ଯେମନ୍ତେ ଛଡ଼ ବୀଜ ହେଲେ ଜାତ
ଓଁକାର ପଞ୍ଚିର ଅଟଇ ମାତ ।
ଓଁକାର ଯେବ ହୋ ଅଶେଷେ ମନ୍ତ୍ର
ପଞ୍ଚବୀଜ ଏଣୁ ନାମ ବୋଲଇ ।
କହିବା ହୋ ଶୁଣ
ପଞ୍ଚବୀଜ ପଞ୍ଚଭୂତର ଗୁଣ । ୧୬ ।
ପୃଥୀ ଆପ ତେଜ ବାୟୁବ୍ୟ ଯେବ
ଆକାଶ ପଞ୍ଚମ ଏମନ୍ତ ଭଣି ।
ଏକ ଏକରେ ପଞ୍ଚ ପଞ୍ଚ ଭେଦ
ହରେ ରାମ କୃଷ୍ଣ ଏଥିରେ ଛନ୍ଦ ।
ହେ ସୁଜନ ଜନ
ହେତୁ ଦେଇ ଥାଅ ଗୁରୁ ଚରଣ । ୧୭ ।
ହ୍ଲୀଂ ବୀଜର ହୋ ମହିମା ଶୁଣ
ପଦ୍ମବୀଜ ତାର ନାମ ବଖାଣ ।
ଶ୍ରୀଂ ବୀଜକୁ ରମା ବୋଲି କହି
କ୍ଲୀଂ ବୀଜ କାମବୀଜ ବୋଲଇ ।
ଧ୍ରୀଂ ଶୁଦ୍ରଯେନ।
ଫ୍ଲୀଂ ବୀଜ ଅଟେ ପରମ ବ୍ରହ୍ମ । ୧୮ ।
ପଦ୍ମବୀଜର ହୋ ମହିମା ଶୁଣ
ପଞ୍ଚମ ବୀଜରେ ସେହୁ ଘଟଣ ।
ଭେଦାଇ କହିବା ଶୁଣ କୁମର
ନନ୍ଦା କରନ୍ତି ସେ ହ୍ରୀଂ ବୀଜର ।
ବୀଜ ବ୍ରହ୍ମ ଭେଦ
ବୀଜ ଭେଦିଲେ ହୋ ବିନାଶ ଖେଦ । ୧୯ ।
ହକାର ରକାର ଇକାର ଯେବ
ଅର୍ଦ୍ଧମାତ୍ରା ମିଶି ଏ ପଞ୍ଚ ଭଣି ।
ପଞ୍ଚବିନ୍ଦୁ ପଞ୍ଚଭୂତ ହୋ ଏହି
ପଦ୍ମବୀଜ ଯେ କି ଯେମନ୍ତ ହୋଇ ।

ହକାର ରାଧିକା
ଉକାର କୃଷ୍ଣ ଆପ ବୋଲ୍ ଲେଖା । ୨୦ ।
ଇକାର ବଳଭଦ୍ର ଚନ୍ଦ୍ରାବଳୀ
ଅର୍ଦ୍ଧମାତ୍ରା ଯୋଗମାୟାର ଅଳି ।
ବିନ୍ଦୁ ପରଂବ୍ରହ୍ମ ବୋଲିଣ ଜାଣ
ଆକାଶ ଆଏ ନିର୍ବାଣ ତା ପୁଣ ।
ନିତ୍ୟ ଲୀଳା ରସ
ବୀଜ ଅଙ୍ଗରେ କରେ ହୋ ପ୍ରକାଶ । ୨୧ ।
ଏମନ୍ତ ପଞ୍ଚ ବୀଜ ଗୋଟି ଭେଦ
ଭେଦ ପାଇଲେ ନାଶିବୁ ବିଷାଦ ।
ଏମା ବୀଜକୁ ହୋ ଚଳିଏ କର
ରାଧାକୃଷ୍ଣ ବୀଜ ଲୀଳା ଭିତର ।
ରାଧେ କୃଷ୍ଣ ଭଜ
ପଞ୍ଚମ ଅଙ୍କ ଲୀଳାକୁ ହୋ ହେଜ । ୨୨ ।
ଏମା ବୀଜର ହୋ ମହିମା ଶୁଣ
ମକାରେ ଲୀଳାକରେ ବେନି ଜନ ।
ଉକାରେ କୃଷ୍ଣ ରାଧେ ଯେନି ବିଜେ
ନାନା ସେବାରେ ସଖୀଗଣ ସାଜେ ।
ଇକାର ବଳରାମ
ରେବତୀ ସେନି କରନ୍ତି ରମଣ । ୨୩ ।
ଅର୍ଦ୍ଧମାତ୍ରାରେ ସୁଭଦ୍ରା ସେନି ରହି
ଯୋଗମାୟା ସିଂହାସନଟି ସେହି ।
ବିନ୍ଦୁ ପରଂବ୍ରହ୍ମର ହୋ ଆସନ
ପରମ ଈଶ୍ୱର ରାଧା ସଙ୍ଗେଣ ।
ଲୀଳା ସୁଖ କରି
ସଖୀଗଣ ମଧ୍ୟେ ବିଜୟେ ହରି । ୨୪ ।
କାମବୀଜ ଭେଦ କହିବା ତୋତେ
ରାମଚନ୍ଦ୍ର ଦାସ ରଖିବୁ ଚିତ୍ତେ ।
କିଶୋର କିଶୋରୀ କରନ୍ତି ରାସ
କାମବୀଜରେ କରିଣ ନିବାସ ।

କକାର ରେ ହର
କଶୋରୀ ଯେକ କେଲ ସୁଖ କର । ୨୫ ।
ଇକାର ବଳଭଦ୍ର ରୂପେ ବଜେ
କ୍ରୀଡା କରନ୍ତି ସଖୀଗଣ ମାଝେ ।
ଲକାରେ ରାଧିକା ବଜସ୍ଥ କର
ଶ୍ରୀକୃଷ୍ଣ ସଙ୍ଗରେ ଲୀଳା ଗୋଚର ।
ଅର୍ଦ୍ଧ ମାତ୍ରା ଯେନ
କ୍ରୀଡ଼ା କରନ୍ତ ଏ ରସ ରୂପେଣ । ୨୬ ।
ବନ୍ଦୁପରେ କୃଷ୍ଣ ବଜସ୍ଥେ କର
କୋଲରେ ଛନ୍ତ ନବୀନ କଶୋରୀ ।
ଲଳତା ଆଦ ଅଷ୍ଟସଖୀ ପାଶ
ଶ୍ରୀକୃଷ୍ଣ କରନ୍ତ ଏ ଲୀଳା ରସ ।
ଶୁଣି ରାମ ଦାସ
ଅଚ୍ୟୁତ ଚରଣେ ଲଗାଏ ଆଶ । ୨୭ ।
ହ୍ରୀଂ ସୁଦ୍ରଶେନ ବୀଜ ଅଟଇ
ଯୋଗମାୟା ଯୋଗ ଅଟାଳ ସେହ ।
ଧକାର ରାଧିକା କୃଷ୍ଣ ବଳାସ
ଇକାର ବଳଭଦ୍ର ତାର ପାଶ ।
ହଳୀ ରୂପେ ହର
ଚନ୍ଦ୍ରାବଳୀ ରାଧା ସଙ୍ଗେ ବହର । ୨୮ ।
ଇକାର କୃଷ୍ଣ ରାଧା ସଙ୍ଗେ ବଜେ
ଅର୍ଦ୍ଧମାତ୍ରା ସୁଦ୍ରଶେନ ଯେ ସାଜେ ।
କଶୋର କଶୋରୀ କରନ୍ତ ରାସ
ତଥିପରେ ବନ୍ଦୁ ବ୍ରହ୍ମ ପ୍ରକାଶ ।
ପରଂବ୍ରହ୍ମ ରାଶି
ପରମ ସୁନ୍ଦରୀ ସୁଖ ବଳାସୀ । ୨୯ ।
ଶ୍ରୀଂ ବୀଜ ପରଂବ୍ରହ୍ମ ମୂରତ
ପଞ୍ଚ ଅଙ୍ଗେ ସେ ଯେ ଲୀଳା କରନ୍ତ ।
ପକାରେ ରାଧିକା କୃଷ୍ଣ ବସ୍ତୁର
ପରବ୍ରହ୍ମ ସଙ୍ଗେ ଯେନ ବେହାର ।

ପୃଥ ଗୋଟି ସେହ୍ଁ
ପରମ ସୁଖ ଲୀଳା ତହୁଁ ହୋଇ । ୩୦ ।
ଋକାର କଶୋର କଶୋରୀ ଦୁଇ
ନାନା କୁତୂହଳେ କ୍ରୀଡ଼ା ହୁଅଇ ।
ଇକାର ବଳଭଦ୍ର ବୋଲି ଜାଣ
ଚନ୍ଦ୍ରାବଳୀ ବଳେ ରାଧା ସଙ୍ଗେଣ ।
ତଲେ ନାହିଁ ଭେଦ
ସୁଜ୍ଞାଂନୀ ଜାଣନ୍ତି ଅଜ୍ଞାଂନ ଭେଦ । ୩୧ ।
ଅର୍ଦ୍ଧମାତ୍ରା ପରେ ଏ ସୁ ଦ୍ରଶେନ
ଅଭିନବ ରୂପ ରାମା ସଙ୍ଗେଣ ।
ପରମ ସୁଖ କରନ୍ତି ହୋ ତହୁଁ
ତଥି ଉପରେ ଯେ ବନ୍ଦୁ ଶୋହଇ ।
ପରଂ ବ୍ରହ୍ମ ରାଶି
କଶୋରୀ ଅଂଗ ଗୋଟିକ ଯେ ରସି । ୩୨ ।
ଲଳିତା ବିଶାଖା ଚମ୍ପକଲତା ।
ଚିତ୍ରା ରଙ୍ଗଦେବୀ ସଙ୍ଗେ ସଙ୍ଗୀତା ।
ସୁଦେବୀ ମଧୁବତୀ ଯେତଣ ଯେତେ
ଧନ୍ୟା ସୁକେଶୀ ଯେ ସଖୀ ସମସ୍ତେ ।
କୃଷ୍ଣ ଲୀଳା ରସି
କୋଟି ଯୁଗରେ ହୋ ବନ୍ଦୁ ନ ଖସି । ୩୩ ।
ସ୍ୱେମନ୍ତେ ବୀଜମାନରେ ନିବାସ
ତେଶୁକର ବୀଜ ବ୍ରହ୍ମ ସାଦୃଶ
ବୀଜମାନଙ୍କୁ ହୋ ମନରେ ହେଜ
ସଦଗୁରୁ ସେବ ଏମାନ ବୁଝ ।
କୃଷ୍ଣ ଆସ୍ୱାଦନ
ତେବେ ପାଇବ ହୋ ବ୍ରଜ ନନ୍ଦନ । ୩୪ ।
ବୀଜର ସୁଖ ହୋ ପାଇବୁ ଯେବେ
ବ୍ରହ୍ମ ଅଙ୍ଗେ ସଙ୍ଗ ହୋଇବୁ ତେବେ ।
କାଳେ ହୋଇବ ଅଙ୍ଗ ଗୋଟି ସାର
କୋଟି ପୁରୁଷ ହୋଇବ ଉଦ୍ଧାର ।

ସଂସାରରେ ସାର
ପଦ୍ମ ପତ୍ରେ ନୀର ଯେସନ୍ତେ ପ୍ରକାର । ୩୫ ।

ଏହିମତ ହୋ ସଂସାରେ ଯେହ୍ନୁ
ବୀଜ ଭେଦାଭେଦ ପାଇବ ସେହ୍ନୁ ।
ପୂର୍ବଜନ୍ମର ହୋ ଥିଲେଟି ବାସ
ତେବେ ପାଇବୁ ହୋ ବୀଜର ରସ ।
ସଦଗୁରୁ ସେବ
ସଂସାର ସିନ୍ଧୁକୁ ପାଇବୁ ନାବ । ୩୬ ।

ସୁଜନ ଜନ ଏହୁ ଖିବେ ରସ
କାଳେ ନାଶିବ ଏ ବିଷୟା ବିଷ ।
ଅମୃତ ଆସ୍ୱାଦେ ଚିତ୍ତ ବଳାଅ
ଅମନ ମନ୍ଦରେ ଚିତ୍ତ ଚଳାଅ ।
ଦମ୍ଭ ପଣ ନାଶ
ମନ ସବୁ କର ବରଜ ଶିଷ । ୩୭ ।

ଏହୁ ରସରେ ହୋ ଜଟିତେ ରସ
ବିଷୟା ରସଂକୁ ଦୂରେ ନିବାସ ।
ଦେବଳ ବୁଡ଼ିଯିବ କହୁଂ ଯେ ତୋର
ବଳବନ୍ତା ପଣ ହୋଇବ ଦୂର ।
ବେଳୁଂ କର ନାଶ
ଦୀନ ଅଚ୍ୟୁତ ବୋଲେ ହର ଦୋଷ । ୩୮ ।

॥ ଇତିଶ୍ରୀ ବୀଜସାର ଗୀତା ସଦାଜଏ ସଂପୂର୍ଣ୍ଣ ॥



# ॥ ପ୍ରଥମ ପଟଳ ॥

✳ ଓଁ ଶ୍ରୀ ଗଣେଶାୟ ନମଃ ✳

ଶୁଣ ରାମଚନ୍ଦ୍ର ବ୍ରଜ କୁମର । କହୁ କହିବା ହୋ ତୋହୋ ଆଗର ।୧।
ମୋହର ପୂର୍ବ ଜନମ ଚରିତ । କହିବା ରାମ ତଳେ କର ଚିତ୍ତ ॥
ନବଦୀପରେ ସେ ହୋଇଲେ ଜାତ । ପରମାନନ୍ଦ ପ୍ରଭୁ ଶଚୀସୁତ ॥
ରାମାନନ୍ଦ ନମାନନ୍ଦ ଏ ଦୁଇ । ବସ୍ତୁ ଶ୍ୟାମ ମାଧ ଆଚାର୍ଯ୍ୟେ କହି ॥
ଗୌର ଦଗେ ପୁଣି ଗୌର ମହନ୍ତ । ଗୌର ଚଉଭୁଜ ଚୈତନ୍ୟ ଜାତ ॥
ନିତ୍ୟାନନ୍ଦ ଯେନ ହେଲେ ପ୍ରକାଶ । କରୁଣାସିନ୍ଧୁ କଶୋଷ୍ଟ ବଳାସ ॥
ସଙ୍ଗତେ ରୂପ ସନାତନ ଯେନ । ରଘୁନାଥ ଭଟ୍ଟ ଗୋପାଳ ପୁଣି ॥
ଜୀବ ଗୋସାଇଁ ରଘୁନାଥ ଦାସ । ଚୈତନ୍ୟ ସଙ୍ଗେ ହୋଇଲେ ପ୍ରକାଶ ॥
ଦ୍ୱାଦଶ ଗୋପାଳ ସଙ୍ଗରେ ଯେନ । ଅବତାର ହେଲେ ଆସି ଅବନୀ ॥
ସଖାଗଣ ଯେନ ବାଜସ୍ୱେ କଲେ । ନାନା ଦେଶ ଭ୍ରମି ତୀର୍ଥ ବୁଲିଲେ ।୧୦।
ଶ୍ରୀ ନୀଳାଞ୍ଚଳରେ ହେଲେ ପ୍ରବେଶ । କରୁଣାସିନ୍ଧୁ କଲି ପାପ ନାଶ ॥
ସିନ୍ଧୁରାନନ୍ଦ ଯେ ଅଦ୍ୱୈତ ସୁତ । ପ୍ରଭୁ ଆଗ୍ୟାଂରେ ମୋ ନାମ ଅଚ୍ୟୁତ ॥
ତୀର୍ଥ ଗମନକୁ ବାହାର କଲେ । ମୋତେ ବୃନ୍ଦାଂଶ ଶ୍ରୀମୁଖେ ବୋଇଲେ ॥
ନୀଳାଞ୍ଚଳରେ ହୁଅ ଉପଗତ । ତୋହୋର ନାମ ହୋ ଦୀନ ଅଚ୍ୟୁତ ॥
ପ୍ରଭୁ ଆଗ୍ୟାଂରେ ପ୍ରବେଶ ହୋଇଲି । । ଦୀନ ଅଚ୍ୟୁତ ମୁଂ ନାମ ପାଇଲି ॥
ଦୀନବନ୍ଧୁ ମୋର ପିତାର ନାମ । ମାତା ନାମ ପଦ୍ମାବତୀଟି ଜାଣ ॥
ଦୀନ ଅଚ୍ୟୁତ ମୁଂ ଖୁଣ୍ଟିଆ ସୁତ । ଶୂଦ୍ର କୁଳକୁ ମୁଂ କରି ମୁକତ ॥
ଶ୍ରୀମୁଖ ଆଗ୍ୟାଂ ମୁଂ ଯେବେ ପାଇଲି । ପଦ୍ମବନରେ ପ୍ରବେଶ ହୋଇଲି ॥
ଶୁଣ ବ୍ରଜସୁତ ରାମଚନ୍ଦ୍ରର । ଗୋପାଳ ଜାତ ଜନ୍ମେ ଜନ୍ମେ ମୋର ॥
ମୋର ଜନ୍ମକଥା ତୋତେ କହଇ । ମନେ ରଖିଥାଅ ବାଳ ତନଇ ।୨୦।
ଗୁପତ କରି ରଖିଥାଅ ବାବୁ । ମନେ ହେଳା କଲେ ଶାପ୍ୟ ପାଇବୁ ॥
ଏ ପଦ୍ମବନେ ମୋ ଅଂଶ ରହିବ । ପଦ୍ମାବତୀ ସୁତ ମୋକ୍ଷ ପାଇବ ॥
ହପତ ଜନମ ମୋହୋର ହେବ । ବରଜ ସୁତ କରୁଥାଅ ଠାବ ॥
ଷଡ଼ ଅଂଶରେ ମୁଂ ପ୍ରକାଶ ହେବ । ଗୁପତ ନିତ୍ୟ ସୁଖ ମୁଂ ପାଇବ ॥
ବରଜ ହୋଇବ କୁଳରେ ଜାତ । ବ୍ରଜ କୁଳରେ ହୋଇବ ଆଧିତ ॥
ବାମ ଅଙ୍ଗ ଗୋଟି ମୋହୋର ଜାଣ । ବ୍ରଜକୁମର ସୁମନେ ହୋ ଶୁଣ ॥

ଗୁପତ କଥା ନ ଜାଣନ୍ତି କେହି । ଗୁପତ କହିଲି ତୋ ଆଗେ ମୁହିଂ ।
କେହି ନ ଜାଣିମେ ଏ ଭେଦମାନ । ମାୟା ମୋହରେ ହେବେ ମୋହମାନ ॥
ପୂର୍ବ ହେତୁମାନ ହୋଇବ ନାଶ । ବରନ୍ତୁ ହୋଇବ ଆସି ପ୍ରକାଶ ॥
ବାଦ ବିବାଦ ହୋ ଲଗିବ ଯେତେ । ଛନଛନ ମନ ଛଳ ଯଯୁତେ ।୩୦।
ଦିନକୁ ଦିନ ଦିବ୍ୟଗ୍ୟାଂନ ହେବ । ବିଷ୍ଣୁ ବଂଶରେ ଯେ ଶୋଭା ପାଇବ ॥
ସ୍ନେହ ସେହି ଦେହି ଏହି ଅଟଇ । ଲୀଳା ନିମନ୍ତେ ଏ ଆନ ଘଟଇ ॥
ଶୁଣ ବ୍ରଜ ସୁତ ଆମ୍ଭର ବାଣୀ । ଆମ୍ଭର ନାମ ଶୁଣିଅଛୁ ପୁଣି ॥
ଆମ୍ଭର ପୂର୍ବ ଜନ୍ମର ଚରିତ । କହିଅଛୁ ସ୍ୱାମ ତୋର ଅଗ୍ରତ ॥
ଆମ୍ଭର ତୋହୋର ନାହିଂ ଅନ୍ତର । କହିଲୁଂ ସ୍ୱାମ ଅଗ୍ରତେ ତୋହୋର ॥
ଆମ୍ଭର ଧନ ଜୀବନ ସପ୍ରାଣ । ଜନ୍ମେ ଜନ୍ମେ ତୁ ହୋ ବ୍ରଜନନ୍ଦନ ॥
ଆନ ଆନ କଥା ମନେ ନଧର । ଆମ୍ଭ ଚରଣେ ହୁଅ ତତପର ॥
ଆମ୍ଭର ନାମ କହିବା ହୋ ତୋତେ । ଆମ୍ଭର ଜନମ ଯୁଗ ଯୁଗତେ ॥
ମୋହୋର ବଂଶେ ମୁହିଂ ଆଧିପତି । ମୁହିଂ ମୋତେ ପୂଜା ମୁହିଂ ଜପନ୍ତି ॥
ମୁଂ କାହିଂ ପାଇବ ସେବକମାନ । ସେବା ମୋହୋର ହୋଇବ ବିଧାନ ।୪୦।
ପ୍ରଭୁ ଚରଣର ସେବାଣି ଲୋକ । ପରମ ଦୟାଳୁ ପାଦ ସେବକ ॥
ସ୍ୱେତ୍ତ୍ୱିକଶ ମୁହିଂ ତୋତେ କହଇ । ହରି ଆଗ୍ୟାଂରେ ମୁଂ ଜନ୍ମ ହୁଅଇ ॥
ଏମନ୍ତେ ମୋହୋର ଜନମ ଯେତେ । ସର୍ବ କହିବା ସ୍ୱାମ ତୋ ଅଗ୍ରତେ ॥
ଗୁପତ ଜନମ ମୋହୋର ଅଛୁ । ଯାଦବ ତହିଂକ ଧ୍ୟାଇ ବସିଛୁ ॥
ବ୍ରଜ ହେବ ପଦ୍ମବନେ ପ୍ରକାଶ । ଭଗତମାନେ ଖଟିବେ ଯେ ପାଶ ॥
ଗୁପତ ଲୀଳା ଯେତେକ ହୋଇବ । ଗୁପତେ ଗୁପତ ଠାବ ନୋହିବ ॥
ନାନା ବିବାଦ ଦିଲୁଂ ଦିଲୁ ଜାତ । ନିମିଷ ମାତ୍ରେ ହେଉଥିବ ହତ ॥
ମାୟା ମୋହରେ ମୋତେ ନ ଚହ୍ନିବେ । ମେଲେଛମାନେ ଅନେକ ମରିବେ ॥
ଅଣଗୃଳଣ ଅଘିଣ ଯେ ମାସ । ଉଦୟ ପୁଷ୍ୟା ଶୁକଲ ଦିବସ ॥
ପଶ୍ଚିମ ବଟ ପୃଷ୍ଠରୁ ପ୍ରକାଶ । ବ୍ରଜ ଅଙ୍ଗରେ ହୋଇବ ନିବାସ । ୫୦ ।
ସେହି ଦିନକୁ କରଥାଅ ଆଶ । ତୁଟିବ ବିପତ୍ତି ଫିଟିବ ଫାଶ ॥
ଦିନକୁ ଦିନ ଯେ ହୋଇବ ତେଜ । ମୋତେ ଭେଟିବ ହୋ ବ୍ରଜ ତନୁଜ ॥
ସେଠାରେ ମୋତେ ତୁ ଭେଟ ପାଇବୁ । ଏ ଭେଦମାନ କାହିଂ ନ କହିବୁ ॥
ଏମନ୍ତେ କେତେ ଦିନ ବହିଯିବ । ଭେଦାଭେଦମାନ ଭେଦ ନୋହିବ ॥

ଖ୍ୟାତ ନ କରିବୁ ବିରଜ ସୁତ । ବାଳମାଳା ବାଳ ସ୍ୱଭାବ ଚରିତ ।।
ବାଳ ମେଳରେ ହୋ ମୋତେ ଦେଖିବୁ । କାଳ ସଙ୍କଟକୁ ହେଲେ ମରିବୁ ।।
ଆହୁରି କଥାଏ ତୋତେ କହଇ । ମନେ ରଖିଥିବୁ ବ୍ରଜତନୟୀ ।।
କାହିଂ ନ କରିବୁ ଏହା ବ୍ୟକତ । ମୋର ଚରଣେ ହୋଇବୁ ରତ ।।
ଯେତେ କଳି ଲୋକଙ୍କୁ ଭୟେ କରଇ । ତେଣୁକରି ତୋତେ ଦୃଢ଼େ ବଦଇ ।।
ଅତି ଗହନ ଭେଦ ଯେ କହିବା । ଆମ୍ଭର ନିବାସ ଦେଖାଇ ଦେବା ।୬୦।
ଆମ୍ଭ ଦର୍ଶନ ହୋ ଯେବେ ବାଂଛିବୁ । ନିଶ୍ଚୟ ଯେବେ ତୁ ଭେଟ ପାଇବୁ ।।
ବିନସ୍ତ୍ର କରୁ କହିଦେବା ତୋତେ । ଗୁପତେ ରଖିବୁ ସ୍ୱମ ତୋ ଚିତ୍ତେ ।।
ସୁବର୍ଣ୍ଣରେଖା ପଶ୍ଚିମ ଭାଗରେ । ସପତ ବୃକ୍ଷର ମଧ୍ୟ ଭାଗରେ ।।
ସୋମଲତା ତଳେ ଦେଖିବୁ ବାବୁ । ଶୁକଳ ପକ୍ଷ ସପ୍ତମୀ ଖୋଜିବୁ ।।
ଅନନ୍ତ ଯଶୋବନ୍ତ ସଙ୍ଗେ ଆମ୍ଭେ । ଜଗନ୍ନାଥ ଥିବେ ଆମ୍ଭର ସଙ୍ଗେ ।।
ଶୁକଳପକ୍ଷ ସପ୍ତମୀର କାଳ । ସେହିଠାବରେ ଯେ ହୁଅଇ ମେଳ ।।
ମନେ ରଖିଥାଅ ବ୍ରଜକୁମର । ଭେଟ ପାଇବୁ ହୋ ସେହି ଠାବର ।।
ଯେହା ଯେହୁ ଅବା ଭେଦ କହିବ । ନଷ୍ଟ ଭ୍ରଷ୍ଟ ନିଶ୍ଚେ ସେହୁ ହୋଇବ ।।
ମୂର୍ଦ୍ଧନା ଫାଟି ପ୍ରାଣ ଯିବ ତାର । କହିଲି ସ୍ୱମ ତୋହର ଆଗର ।।
ନିଶ୍ଚୟ ମୋତେ ହୋ ତୁହି ଦେଖିବୁ । ନିର୍ଣ୍ଣୟେ କଥା ମନରେ ରଖିବୁ ।୭୦।
ଯେତେ ପଦ୍ମବନେ ପାପ ହେବ ନାଶ । ପରମ ପଦବୀ ଏଥିରେ ବାସ ।।
ଧର୍ମ ଅର୍ଥ କାମ ମୋକ୍ଷ ଅଛଇଂ । ଯାହା ବାଞ୍ଛିବେ ତହିଂକ ଗଛଇ ।।
ଯେଣୁକରି ନାମ ପଦ୍ମକାନନ । ପରଚେ ହେଲେ ପାପ ବିନାଶନ ।।
ଯେତେ ସ୍ଥାନ ଗୋଟି ଏଣୁ ଯେ ଗୁପତ । ତୋ ଆଗେ କହିଲି ବିରଜସୁତ ।।
ଏକଥା ମାନ କାହିଂ ନ କହିବୁ । କହିଲେ ନିଶ୍ଚୟେ ଶାପ୍ୟ ପାଇବୁ ।।
ନିସ୍ତାରଣ ତୋତେ କହିଲୁଂ ଯାହା । ନିଅଂ ପରସ୍ତେକ ମଣିବୁ ତାହା ।।
ନିରବଧି ଚନ୍ଦ୍ର ଏଥିରେ ଥୁଅ । ନିକଳଙ୍କ ଶଶୀ ହୋଇବ ଦେହ ।।
ଅର୍ଦ୍ଧମାତ୍ରା ମଣିବନ୍ଧ ଉପରେ । ବିଜୟେ କୃଷ୍ଣ କିଶୋରୀ ସଙ୍ଗରେ ।।
ତାଙ୍କ ଚରଣ ମକରନ୍ଦ ଆଶ । ପାମର ଅଚ୍ୟୁତ ବଳାଇ ଅଶ ।।
ମଣିବନ୍ଧ ଏ ପ୍ରଥମ ପଟଳ । ଦୀନ ଅଚ୍ୟୁତ ଭଜେ ସେ ଗୋପାଳ । ୮୦ ।

ଇତିଶ୍ରୀ ମଣିବନ୍ଧ ଗୀତା ପ୍ରଥମ ପଟଳ ସଂପୂର୍ଣ୍ଣ ।

## ।। ଦ୍ୱିତୀୟ ପଟଳ ।।

ଶୁଣରେ ବାବୁ ସାରସ୍ୱତ ଗ୍ୟାଂନ । । ଶୁଣିଲେ ବିପତ୍ତି ହୋଏ ନାଶନ ।୧।
ସମ ଦରଶୀ ଚିତ୍ତ କର ବାଳ । ସାନନ୍ଦ ଭାବରେ ନିତ୍ୟେ ସେ ଚଳ ।।
ସକଳ ସୁଖ ପାଇବୁ ସେ ତୋତେ । ଦୁଗତମାନ ବିନାଶିବୁ ଯେତେ ।।
ଗୁରୁ ଚରଣେ ବଳାଅ ହୋ ଚିତ୍ତ । ଗୁରୁ ଗୋବିନ୍ଦ ଗ୍ୟାଂନରେ ଗ୍ରଜିତ ।।
ଗୋବିନ୍ଦ ଗୁରୁ ଅଙ୍ଗରେ· ନିବାସ । ଗରବ ଗଞ୍ଜନ ଏ କାଳ ଫାଶ ।।
ଗ୍ରମନାମ ପଦ ନିରତେ ଘୋଷ । ନିର୍ଗୁଣ ବ୍ରହ୍ମ ପରମ ପୁରୁଷ ।।
ଧନିଙ୍କୁ ଧନିସ୍ୱେ କାୟା ଅଟଳ । ଦୟାଧର୍ମରେ ଚିତ୍ତ ଦିଅ ବାଳ ।।
ଦେଖି ସ୍ୱେ କାୟା ଗୋଟି ଟଳଟଳ । ଜଳ ମଧ୍ୟେଣ ଯେହ୍ନେହେଁ କମଳ ।
କମଳ ଦଳେ ଜଳ ଯେହ୍ନେ ଶୋହ୍ଭ । ପବନ ଚଳିଲେ ଯେହ୍ନେ ଛଳଇ ।।
ତିଳ ଛଳ ଜଳ ଛଳଇ ଛାଟେ । ଛଳ ପଡ଼ଇ ହୋ ପବନ ବଳେ ।୧୦।
ସେହିମତ କାୟା ଗୋଟି ଅଟଇ । ବିନ୍ଦୁ ବ୍ରହ୍ମଙ୍କୁ ଯେ ଜଳ ଘୋଟଇ ।।
କାଳ ପବନ ବହେ ଖଳବଳ । ପତାକା ଦଳ ହୋଏ ଟଳଟଳ ।।
ବିନ୍ଦୁ ଟଳିବ ପିଛଡ଼ା ଚଳିବ । କାଳପବନ ମଧ୍ୟରେ ଗଳିବ ।।
କାୟା ଜୀବ ଗୋଟି ହେବ ନିରେଖ । ହଂସ ଉଡ଼ିବ ଶୂନ୍ୟର ସାଶକ୍ଷ ।।
ଲେଉଟି ପୁଣି ନ ବସିବ ହଂସ । ନିରେଖ ହୋଇବ କାୟା ପୁରୁଷ ।।
ନିର୍ଣ୍ଣସ୍ୱେ କରି କହିଦେଲି ତୋତେ । କାଳପବନ ନାଶିବୁ ଯେମନ୍ତେ ।।
ନିବେଶି ଥାଅ ଗୁରୁପାଦେ ଚିତ୍ତ । ନିଶ୍ଚୟ ହଂସ ଉଡ଼ିବ ରେ ସୁତ ।।
ଲିତାଏ ଲିତାଏ ନିତ୍ୟେ ବଢ଼ଇ । ନିଚଳ ପତାକା ଚଳାଇ ଦେଇଂ ।।
ଚିତ୍ତଙ୍କୁ ନେଇ ଚିତା ପରେ ରଖ । ସ୍ଥିର ନଯିବ ହୋ ତୋହୋର ପାଖ ।।
ଦୀପଙ୍କୁ ଜାଳିଦିଅ ଜଗି ରହି । ଦୟାନିଧି ପାଦେ କର ସେନେହ ।୨୦।
ଦେଖୁ ଦେଖୁ ଦିନ ଯାଉଛୁ ବଳି । ଦୀପ ଲିଭିବ ଯେ ଦଂଶିଲେ କାଳ ।।
ମାହାକାଳ ବିଦ୍ୟା କର ସାଧନ । କାଳ ବିଷକୁ କରିବୁ ନାଶନ ।।
ମନ ହରଷେ ମନ୍ତ୍ର ଗୋଟି ଘୋଷ । ମନେ ଗୁଣିଲେ ଉଡ଼ିବ ହୋ ବିଷ ।।
ନିଷ୍ଟେ ନିକଟ ହୋଇଲା ହୋ କାଳ । ନିମିଷେ ବିଳମ୍ବ ନକର ବାଳ ।।
ମାୟା କାଳଙ୍କୁ ଭୁଲିଣ ନ ରସ । ମାୟା ଦେଖାଇଣ କରିବ ନାଶ ।।
ମୋହୋର ବୋଲ କରିବୁରେ ବାବୁ । ମନଭେଦ ମନ୍ତ୍ର ଯେବେ ଭଜିବୁ ।।

ମାୟା କାଳକୁ କରିବୁ ଯେ ବଶ । ନଥିବ ଶଙ୍କା ନ ଉତ୍ପତ୍ତି ଧ୍ୱଂସ ॥
ଏମନ୍ତ ମନ୍ତ୍ରକୁ ତୁ ଲକ୍ଷ୍ୟେ କର । କ୍ଷଣେ ନମିଷେ ସାଧନା ଯେ ଧର ॥
ଆହୁର କଥାଏ କହଇ ତୋତେ । ଭୟ ରଖିଥିବୁ କାଳକୁ ଚିତ୍ତେ ॥
କାଳ ବେଳରେ କାଳ ଯେ ଡଂଶିବ । କାଳମୁଖରୁ କେହୁ ତରିଯିବ ।୩୦।
ଅକାଳ ବେଳେ ଯେବେ ଯେ ଡଂଶଇ । ଅମେଧ ସ୍ଥାନେ ନବାସ ଯେ ହୋଇ ॥
କାଳବ୍ରହ୍ମ ଯେବେ କାଳରେ ଦଂଶେ । କାମ ବ୍ରହ୍ମପୁରେ ଯାଇଣ ମିଶେ ॥
ଏ ଭେଦ ଗୋଟି ରଖିଥାଅ ମନ । ମନଭେଦ ମନ୍ତ୍ର କର ସାଧନ ॥
ହେଲା ନକର ବରଜ ନନ୍ଦନ । ବେଳକୁ ବେଳ କାଳ ବଳମାନ ॥
ମୋହର ବୋଲ କର ବ୍ରଜସୁତ । ପରଂବ୍ରହ୍ମଂରେ ବଳାଅ ଚିତ୍ତ ॥
ପାଇବୁ ଗତ ଲଭିବୁ ଯେ ସୁଖ । ପରତେ ଗୁରୁପାଦେ ଚିତ୍ତ ରଖ ॥
ପିଛଡ଼ା ପାଳଟି ଚଡାରେ ରଖ । ପାଇବୁ ପରମ ପଦବୀ ସୁଖ ॥
କାଳକମଳ ନରନ୍ତରେ ଦେଖ । ନରନ୍ତର ମଧ୍ୟେ ସୁଖ ସାକ୍ଷ ॥
ଚଡା ଉପରେ ଯେତେ ସୁଖ ଅଛି । ଧ୍ରୁବଲୋକ ଯାଏ ଧୂନ ପୂରିଛି ॥
ଧୂନ ଅନାହତ ମନରେ ଧର । ଧ୍ରୁବ କରିଥାଅ ଗ୍ରାମକୁମର ।୪୦।
ଧ୍ରୁବପୁରରେ ପାଇବୁ ନବାସ । ଧୂନ ଧାରଣା କର ବ୍ରଜଶିଷ ॥
ଦ୍ୱିତୀୟ ପଟଳ ହୋଇଲା ଶେଷ । ରାମଚନ୍ଦ୍ରେ କହେ ଅଚ୍ୟୁତ ଦାସ ।୪୨।

ଇତଶ୍ରୀ ମଣିବନ୍ଧ ଗୀତା ଦ୍ୱିତୀୟ ପଟଳ ସମ୍ପୂର୍ଣ୍ଣ ॥

## ॥ ତୃତୀୟ ପଟଳ ॥

ଏଥୁ ଅନନ୍ତରେ ଶୁଣ ହୋ ରାମ । କହିଲୁଂ ଯେତେ ସାରସ୍ୱତ ଗ୍ୟାଂନ ।୧।
ମନେ ରଖିଥାଅ ବରଜ ସୁତ । ଲଭିବୁ ସୁଖ ସମ୍ପତ୍ତି ନଅତ ॥
କଶ୍ୟପ ସୁଣ ଯିବ ହୋ ବନ୍ଧ । ମୋହୋର ଜନମ ଭଗତ ଦେହ ॥
ସ୍ୱରୂପାନନ୍ଦ ହୋଇବ ଯେ ଜାତ । ତୋ ଅଗେ କହିଲି ବରଜ ସୁତ ॥
ବରଜ ହୋଇବ ନାମ ଯେ ତାର । ସତ ସ୍ୱରୂପ ଅପେ ଠାବକର ॥
ବଡ଼ ଧାର୍ମିକ ଆତ୍ମାର ସମାନ । ସ୍ୱରୂପ ସତ ତା ଶୁଣରେ ରାମ ॥
ଷଡ଼ ଅଂଶରେ ହୋଇବଟି ଜାତ । ତେଣୁ ଆମ୍ଭ ଜନ୍ମ ତୋର ସଙ୍ଗତ ॥
ପ୍ରଭୁ ମୁଖରୁ ଶୁଣିଣ ବଚନ । ରାମଚନ୍ଦ୍ର ମନେ ଖେଦ ଧରିଣ ॥
ବୋଲଇ କଥାଏ ମନେ ପଡ଼ିଲା । ପଦ୍ମ ଚରଣେ କହିବ ବୋଇଲା ॥

ଆଜ୍ଞାଦେଲ ପ୍ରଭୁ ଜନମ ବାଣୀ । ଷଡ଼ଅଂଶରେ ଜନମିବୁ ପୁଣି ।୧୦।
ପୁଣି ବୋଇଲ ଭଗତ ଜନମ । ଶୁଣିଣ ମନେ ମୋ ହେଲା ଭରମ ॥
ମନେ ସଂଶୟ ମୋ ହୋଇଲା ଯେଣୁ । ପଦ୍ମ ଚରଣେ ଜଣାଇଲି ତେଣୁ ॥
ସଂଶୟ ମୋର ଫେଡ଼ିବ ଗୋସାଇଂ । ସତ ସ୍ୱରୂପ ବଚନ ବୁଝାଇ ॥
ରାମଚନ୍ଦ୍ର ଠାରୁ ଏମନ୍ତ ବାଣୀ । ଅଚ୍ୟୁତ ଦାସ ବୋଲଇ ଯେ ଶୁଣି ॥
ଶୁଣ ରାମଚନ୍ଦ୍ର ଅପୂର୍ବ ରସ । ଅନେକ ଦିନର ସ୍ନେହ ରହସ ॥
ଦ୍ୱାପର ଯୁଗେ ଜନମିଲେ ହରି । କଂସ କେଶୀ ଦୁଷ୍ଟ ବିନାଶ କରି ॥
ସେଦିନେ ଜନମ ଆମ୍ଭେ ହୋଇଲୁଂ । ତୁମ୍ଭ ଜନମ ଯେ ତହୁଂ ପାଇଲୁ ॥
ସ୍ୱରୂପାନନ୍ଦ ଜନମ ହୋଇଲା । ଗୋପଲୀଳା ଖେଡ଼ିରସ ପାଇଲା ॥
ଜନ୍ମେ ଜନ୍ମେ ମୋର ଆତ୍ମା ଅଟଇ । ଆତ୍ମାମ:ନେ ମୋତେ ସେହୁ ଖଟଇ ॥
ମୋତେ ଦେଖି ଦିନେ ହେଲା ହରଷ । ମହାପ୍ରେମ ରସେ ଗଢ଼ିଲା ବାସ ।୨୦।
ତାର ମନୋରଥ ବାଞ୍ଛା ଜାଣିଲି । ମୋର ସୁଖ ଲୀଳା ଦେବ ବୋଇଲି ॥
ବୋଇଲି ସ୍ୱରୂପ ଶୁଣ ମୋ ବାଣୀ । ଗୁପତ ଜନ୍ମ ତୋର ଅଙ୍ଗେ ପୁଣି ॥
ମୋର ଭୋଗ ଇଚ୍ଛା ତୋତେ ଦେଲଇଂ । ଜନମ ହୋଇବୁ ମୋ ଅଙ୍ଗେ ତୁମ୍ଭ ॥
ବ୍ରଜ ହୋଇବ ନାମ ଗୋଟି ତୋର । ବାମ ଅଙ୍ଗେ ଭାର ଥିବ ମୋହର ॥
କହ୍ନୁଦନ ତୋ ବାଳଭାବେ ଯିବ । ବ୍ରଜମଣ୍ଡଳରେ ଖ୍ୟାତି ହୋଇବ ॥
ବାମ ପାରୁଶରେ ଥିବଇଂ ତୋର । ବିଷ୍ଣୁ ବଂଶରେ ସୁଖେ ଭୋଗକର ॥
ସୁଖ ଦୁଃଖରେ କହ୍ନୁଦନ ଯିବ । ସୁଖ ସମ୍ପତ୍ତି ଅନେକ ବଢ଼ିବ ॥
ଅନେକ ବାଦ ବିବାଦ ଲାଗିବ । ନାନା ଉତପାତ ଦର୍ପ ଭାଙ୍ଗିବ ॥
ଏମନ୍ତେ କହ୍ନୁଦନ ଯିବ ବନ୍ଧ । ବିଜୟେ କରିବ ତୋହୋର ଦେହ ॥
ଦୁଃଖ ଦୁରିତ ଯା ନାଶ ହୋଇବ । ତୋର ମନୋରଥ ସିଦ୍ଧ ହୋଇବ ।୩୦।
ଯାଅ ବ୍ରଜପୁତ ବହନ ହୋଇ । କୃଷ୍ଣ ଚରଣେ ଚିତ୍ତ ଥୁଅ ନେଇ ॥
ଗୁରୁ ଚରଣେ ବଳାଅ ତୁ ଚିତ୍ତ । ଗୁପତ ଲୀଳା ହୋଉ ଯେ ପ୍ରାପତ ॥
ଶୁଣ ରାମଚନ୍ଦ୍ର ଆମ୍ଭର ବାଣୀ । ଏମନ୍ତ ଆଜ୍ଞାଂ ଦେଲି ମୁହଂ ପୁଣି ॥
ମେଲାଣି ଦେଇ ନିଜ ପୁର ଗଲୁଂ । ଗୋପସୁତ ମେଳେ ଖେଡ଼ ଖେଡ଼ିଲୁଂ ॥
ସେହି ଦିନରୁ ମୋର ପାଦେ ଚିତ୍ତ । ସ୍ୱରୂପାନନ୍ଦ ଗୋପାଳର ସୁତ ॥
ଗୋବର୍ଦ୍ଧନ ଗିରି ପାରୁଶେ ଥିଲା । ମୋର ଚରଣେ ବହୁ ସେବା କଲା ॥
ତେଣୁକରି ଆପି ହେବ ପ୍ରକାଶ । ତୋତେ କହିଲି ରାମଚନ୍ଦ୍ର ଦାସ ॥

ଏମନ୍ତେ ହୋଇବ ସେହୁ ପ୍ରକାଶ । ଶାନ୍ତି ପାଇବ ମୋହୋର ପାରୁଣ ॥
ମୋହୋର ସେବାରେ ହୋଇ ସେ ଟାଣ । ମୁହିଂ ବଶ୍ରାମିବି ତାର ଅଙ୍ଗେଣ ॥
ମହା ଦୁର୍ମତି କୁମତି ଲଗିବ । ମୋର ସୁଦର୍ଶନରେ ସବ ଭାଙ୍ଗିବ ।୪୦।
ମୋର ଜୀବନ ପବ୍ରଣ ଅଟଇଂ । ତେଣୁ ମୁଇଂ ବସେ ତାର ଘଟଇଂ ॥
ଯେହୁ ବବାଦ ଚଳ୍ପବ ତାହାକୁ । କୋଳ୍ପ ମାରବ ସେ ମୋର ବାହାକୁ ॥
ଯେହୁ କରବ ତାହାଠାରେ ଦ୍ୱେଷ । ନଷ୍ଟେ ସେହୁ ହୋଇବ ନଶେଷ ॥
ଏ ମୋର ସତ୍ୟ ସତ୍ୟ ବ୍ରଜସୁତ । ତୁଇଂ କହୁଅଛୁ ତୋ ସିର କୁତ ॥
ଆହୁର କଥାଏ୍କେ ତୋତେ କହଇ । ଅବୋଧ ମନ ତୋହୋର ବୋଧଇ ॥
ଅପ୍ରତେ ଯେବେ କହବୁ କ୍ରମର । କହୁଦେବା ତୋତେ ଏଥି ନକର ॥
ବାଙ୍କୁଲ କୃଦକୁ ଯିବୁ ତୁରତେ । ତୁଳଅନା ବୃକ୍ଷ ମଧ୍ୟ ସମ୍ପୁତେ ॥
ଯୂଥପତ ସଙ୍ଗେ ଦେଖିବୁ ତୁହ । ଦକ୍ଷିଣ ଭାଗରେ ଥିବଇଂ ମୁହିଂ ॥
ସ୍ୱେହ ସେହ ଦେହ ଏକ ସମାନ । ଠାବ କରବୁ ତୁ ବ୍ରଜ ନନ୍ଦନ ॥
କୃଷ୍ଣ ପକ୍ଷର ଏକାଦଶୀ ଦନ । ସେଠାରେ ଦେଖିବୁ ଏ ରୂପ ଚହ୍ନ ।୫୦।
ଏ ଭେଦମାନ କାହିଂ ନ କହବୁ । ମନର ସଂଶୟ ତୋର ଫେଡ଼ିବୁ ॥
ଫେଡ଼ି କହୁଦେଲୁଂ ତୋହୋ ଆଗର । ଷଡ଼ ଜନମ ଷଡ଼ ପୁରୁଷର ॥
ସତ ସୁକୃତ ସ୍ୱରୂପ କହଲ । ଶ୍ରୀକୃଷ୍ଣ ଭଣ୍ଡାରୁ ଏହା ବଇଲ ॥
ସୁମନେ ଧର ସୁମଇଜ ବାଲ । ଗୁପତ ଲୀଳା ଦେଖିବୁ ସକଳ ॥
ତୋହଠାରେ ମନେ ନାହିଂ ଅନ୍ତର । ସବ କହଲ ହୋ ତୋହ ଆଗର ॥
ଶିବ ବ୍ରହ୍ମା ଯାର ପାଦେ ସେବନ୍ତ । ଶେଷ ସହ୍ର ଫେଣୀ ଯାକୁ ଜପନ୍ତ ॥
ତାର ଚରଣ କମଳ ପ୍ରସାଦେ । ନବାସ ପାଇଲ୍ଲି ସ୍ୱେ ପଦ୍ମ ହୃଦେ ॥
ତେଣୁକର ମୋର ଜନ୍ମ ହୋଇବ । ସପତ ବାର ଅଙ୍ଗ ପାଲଟିବ ॥
ତାହା କହବା ହୋ ତୋହୋ ଆଗରେ । ଷଡ଼ ଶେଷ ହେବ ବ୍ରଜ ଠାବରେ ॥
ବ୍ରଜ ଅଂଶରେ ସିଦ୍ଧି ନଧି ଥିବ । ପଦ୍ମାବତୀ ସୁତ ନାମ ବହିବ ॥
ସେହ ଦନକୁ ଦେଇଥାଅ ଚତ୍ତ । ମଣିବନ୍ଧ ଗୀତା କହେ ଅଚ୍ୟୁତ ।୬୧ ।

ଇତଶ୍ରୀ ମଣିବନ୍ଧ ଗୀତା ତୃତୀୟ ପଟଳ ସମ୍ପୂର୍ଣ୍ଣ ॥

## ॥ ଚତୁର୍ଥ ପଟଳ ॥

ବ୍ରଜକୁମର ଶୁଣିଥାଅ ରସ । ଶ୍ରୀକୃଷ୍ଣ କ୍ରୀଡ଼ାସ୍ୱେ କେଳ ରହସ ।୧।
ତୋ ଆଗେ କହିବା କଛୁ ଫେଇଣ । ବ୍ରଜବାଳ ଶୁଣ ମନ ଦେଇଣ ॥
ମଣିବନ୍ଧରେ ବଳେ ଭଗବାନ । ମଧ୍ୟବର୍ତ୍ତୀ ବଳେ ବାମ ପାଶେଣ ॥
ମଣି ବେଦ୍ରିକା ମଣି ସିଂହାସନ । ମଣି ପାବଛୁ ମଣିରେ ନିର୍ବାଣ ॥
ନାନା ରତ୍ନ ମଣି ଝୁମ୍ପା ଲଗିଛୁ । ମଣି ପ୍ରାଙ୍ଗଣେ ଭଲ ଶୋହୁଅଛୁ ॥
ମଣିମଣ୍ଡପ ଉପରେ ସାଜେଣି । ପୁଷ୍କି ପୁଷ୍କି ମଣି ତହିଂ ଝଷ୍ଟଣି ॥
ମଣି ରୁଅରେ ପ୍ରବାଳର ବତା । ମଣି ପାଚେଶ ଲଗିଅଛୁ ଯନ୍ତ୍ରା ॥
ଷୋଳହପୁର ଉପରେ ନିର୍ବାଣି । ମଣିବନ୍ଧରେ ଗଢ଼ିଛୁ ବନ୍ଧାଣି ॥
ଷଟକୋଣ ଅଷ୍ଟକୋଣ ହୋଇଛୁ । ନିସ୍ତକୋଣ ମଣିବନ୍ଧ ଶୋହୁଛୁ ॥
ଅର୍ଦ୍ଧମାନ୍ଧା ମଣିବନ୍ଧ ଦୁଆର । ମାସ୍ତା କବାଟ ମଣିରେ ପ୍ରଗ୍ୱର ।୧୦।
ମଣି ଝରରେ ରତ୍ନ ଶୋହୁଅଛୁ । ମଧ୍ୟେ ଅଷ୍ଟପୁର ମଣି ରଞ୍ଜିଛୁ ॥
ମଣିରେ ନିର୍ବାଣ ସେ ପୁର ଗୋଟି । ମାଳା ବଇଡ଼ୂର୍ଯ୍ୟ ବୃଶପାଶେ ଅଛୁ ॥
ମାଳା-ନାଏକ ମଧରେ ଯେସନ । ମଧ୍ୟେଂ ବଜସ୍ୱେ ଦେବ ଭଗବାନ ॥
ମଣି ବେଦ୍ରି ମଧେ ଉଭା ହୋଇଣ । ମନୋହାରୀ ରାଧା ବାମ ପାଶେଣ ॥
ବାମ ଭୁଜରେ ଗଳାଛନ୍ଦ ବଳେ । ବରହ ବଇଂଶୀ ଶ୍ରୀଭୁଜେ ସାଜେ ॥
ବେନ ଜନେ ବେନୁ ବାଆନ୍ତ ରସେ । ରାଧାଶ୍ୟାମ ବୋଲି ମୁରଳୀ ଘୋଷେ ॥
ଲସ୍ୱେ ଲଗାଅ ଚଡା ପରେ ନେଇ । ମଣି ବେଦ୍ରିକା ଭେଟପାଅ ତହିଂ ॥
ଗ୍ୱଶ ଛନ୍ଦରେ ବାଜୁଛୁ ମୁରଳୀ । ଶବଦ ସୁସ୍ୱର ପସ୍ୱେ ବୁଲି ॥
ଝିଙ୍କାର ଭେଦରେ ଭେଦ କରଇ । ତ୍ରୁଡ ଯୁଗଳେ ଠାବକର ନେଇ ॥
ଯେ ଧୂନ ମଧରେ ପଶ ପେଲଇ । ପାଇବୁ ପରମ ପଦବୀ ତହିଂ ।୨୦।
ବେଣୁ ବନୋଦଆ ଦେଖିବୁ ତୋଳେ । ବମ୍ଭାଧସ୍ତ ରାଈ କଶୋରୀ ମେଳେ ॥
ତାଙ୍କ ପାରୁଶେ ସଖୀଗଣ ଛନ୍ତି । ବୀଣା ରବା ଧଶ ଯନ୍ତ୍ର ବଜାନ୍ତି ॥
ନାନା ସୁଖ ଭୋଗ ଆଳାପ କଶ । ନାନା ସେବାରେ ଅଛନ୍ତି କଶୋରୀ ॥
ନାନା ସୁଛନ୍ଦେ ଗୀତମାନ ଗାଇ । ରାଧାକୃଷ୍ଣ ଚଉ ହରନ୍ତି ସେହି ॥
ରସିକଣୀ ସଙ୍ଗେ ରସରେ ରସ । ରସବନ୍ତୀ ପ୍ରେମ ହେବ ଆଦେଶ ॥
ରସିକ ନାଗର ହୋଇଛୁ ଜଣ । ରସିକଣୀମାନେ ତହିଂକ ଶୋଭା ॥

ରସିକଣୀ ଅଙ୍ଗ ପାଳନ୍ତି ଧର । ଲଳିତା ଅଙ୍ଗେ ନିବାସ ଯେ କର ।।
ରସବନ୍ତୀ ଚନ୍ଦ୍ରାବଳୀର ଛଳ । ରାଧା ବ୍ରଜୟେ ରସିକର ମେଳ ।।
ସେଠାରେ ମନକୁ ନେଇ ବଳାଅ । ସରୁଆ ଝୀନ ପଥ୍ୟେ ଚଳାଅ ।।
ସୁଖ ଦୁଃଖକୁ ନକର ବିଚାର । ଶ୍ୟାମ ସୁନ୍ଦର ସୁରସ ବିହାର ।୩୦।
ସର୍ବ ପାଇବୁ ବରଜ ତନୟୀ । ସୋରୂପ ବାଣୀ ତୋତେ କହିଲଇଁ ।।
ସର୍ବ କର୍ମ ଛାଡ଼ି ଏ ରସେ ରସି । ସରୁଆ ମନ କର ବ୍ରଜଶିଷ ।।
ଶିଶୁମୁନା ବାଟେ ପଣ ପେଲଇ । ମଣା ଗୋଡ଼ି ପ୍ରାୟେ ବାଟ ଯେ ତହିଁ ।।
ସାଧନା କର ମନସ୍ଥିର ଧରି । ଅଣାଚର ମନ୍ତ୍ର ମନେ ସ୍ମରି ।।
ଅନୁଭବ କର ଗୁରୁବଚନ । ଅତି ଅଗୋଚର ଗୁପତ ଗ୍ୟାଂନ ।।
ଅନେକ ଜନମେ ଏହା ଯେ ପାଇ । ଅତି ଦୂର ପଥ ଯିବାକୁ ନୋହି ।।
ବସିଲଠାରେ ଅମୃତ ଭାସୁଛି । ପରଚେ ଗୁରୁଠାରେ ସର୍ବ ଅଛି ।।
ରଙ୍ଗ ପସରାକୁ ଭୁଲି ନ ମର । ରାଜୀବ ଲୋଚନ ପାଦେ ବିସୁର ।।
ରାଜ ପାହିବ ବିବାଦ ହୋଇବ । ଥାପ ଦହୁଡ଼ି ହୁଲା ଯେ ଲାଗିବ ।।
ବେଳୁ ବେଳକର ବଳାଅ ମନ । ବେଳ ବୁଡ଼ିଲେ ଧରିନେବ ଯମ ।୪୦।
ଚଉଦର୍ଶ୍ୱା ଅଟେ ଜଳୁରାଏ । ବଳଲ ନବ ସେ ତାହାର କାୟେ ।।
ନାନା ବଡ଼ମୃଗ ଜନ୍ତୁ ବଅଇ । ଦୟାଧର୍ମ ହିନେ ଦୁଃଖ ଦଅଇ ।।
ଚେଷ୍ଟାକର ତୋତେ କହୁଛି ସୁତ । ସେହି ଗବରେ ଦିଅ ବାବୁ ଚିତ୍ତ ।।
ଦିନ ବୁଡ଼ିବ ଅନ୍ଧାର ହୋଇବ । ଦଇବ ବାମ କେ ଅବା କହିବ ।।
ଦୟା ଧର୍ମ ପଥ ପାଖଲେ କର । ଶ୍ରୀଗୁରୁ ଚରଣେ ଭଜ ନକର ।।
ଦସ୍ୟାପଣ ଗୋଟା କେତେ ହେବଂ ଦିବ । ଆଜନ୍ମ ପଣ ତୋ କେଣେ ଭାଜିବ ।।
ଅମେଧ ସ୍ଥାନେ ଥିବୁ ତୁହି ପଡ଼ି । ଶମଶାନରେ ହେବ ତୋର ବାଡ଼ି ।।
ତୋର ନିବାସ ଅମଙ୍ଗଳ ହେବ । ଅମେଧମାନ ତୋର ଭୋଗ ଥିବ ।।
ଏ ଭାବ ମନରେ ଧର କୁମର । ଶ୍ରୀଗୁରୁ ବଚନ ହୃଦରେ ଧର ।।
ହୃଦେ ଧରିଥାଅ ଗୁରୁବଚନ । ବ୍ରହ୍ମ ରନ୍ଧ୍ରେରେ ଥୁଅ ନେଇ ମନ ।୫୦।
ବ୍ରହ୍ମ ତାଳୁକାରେ ବାଟ ପଡ଼ିଛି । ମଣିବନ୍ଧ ବେଦ୍ରି ନିକଟେ ଅଛି ।।
ସେହି ବାଟରେ ଦଣ୍ଡଭୟେ ପଣ । ନିମିଷେ ନିମିଷେ ଏରସେ ରସ ।।
ନକର ହେଲା ନୁହ ଅତି ଦମ୍ଭ । ନୟନ ଫିଗୁଡ଼ୁଂ ଟଳିବ ଦମ୍ଭ ।।
ନବ ପଡ଼ିବ ବୃହୁଂ ବୃହୁଂ ବଣ । ନସ୍ତେ ନ ଆସିବେ କେହୁ ତୋ କତ ।।

କେବେ ସୃଷ୍ଟିଂ ସ୍ଥିତିଂ ଲୟଂ ପଥରେ । ପବନ୍ଧା ପକାଇ ପଶିବେ ଘରେ ॥
ତୋତେ ପାଶୋରବେ ଖାଇଣ ପିତା । ତହିଂକ ଯେତେ ହେଉ ଜଗଜିତା ॥
ସର୍ବ କାମନା ବେଗେ ଦୂରେ ଏଡ଼ । ଦୀନବନ୍ଧୁ ନାମେ ଲଗାଅ ଝେଡ଼ ॥
ରାମନାମ ଘୋଷ ବାଳୁତ ବହୁ । ରବ ଶେଷ ହେବ ହୋଇବ ନଶି ॥
ମୋର ବୋଲକର ହେଲା ନକର । ମଣିପୁରରେ ମନକୁ ଭ୍ରମର ॥
ମଣିବନ୍ଧ ପୁର ଦେଲେ ବୁଝାଇ । ଦୀନ ଅଚ୍ୟୁତ ରାମଚନ୍ଦ୍ରେ ସୃଷ୍ଟିଂ । ୭୦ ।

ଇତଶ୍ରୀ ମଣିବନ୍ଧ ଗୀତା ଚତୁର୍ଥ ପଟଳ ସମ୍ପୂର୍ଣ୍ଣ ॥

## ॥ ପଞ୍ଚମ ପଟଳ ॥

ପୁଣି ବୋଲନ୍ତ ହୋ ବ୍ରଜକୁମର । ଷଡ଼ ଜନମ ଅନ୍ତରେ ମୋହର ।୧।
ଷଡ଼ ଜନମ ବରଜକୁ ଲେଖ । ଗୁପତ ଲୀଳା ଯେ ଭୋଗ ସାରଖ ॥
ଗୁପତ ଜନ୍ମ ନ ଜାଣିମେ କେହି । ତେଣୁକରି ତୋତେ ଦେଲଇଂ କହି ॥
ଭଗତ ମନ ରଖିବାର ପାଇଂ । ତେଣୁ ନିବାସ ମୋ ଭଗତ ଠାଇଂ ॥
ଏଥୁ ଅନନ୍ତରେ ହୋଇବ ଯାହା । କହିବା ତୋ ଆଗେ କହୁ ହୋ ତାହା ॥
କଳିଯୁଗେ ହେବ ବରଜ ଜାତ । ବ୍ରଜ କୁମର ରଖିଥାଅ ଚିତ୍ତ ॥
ବରଜଠାରୁଂ ସୂକ୍ଷ୍ମ ଯେ ସରବ । ସାତ ଜନମ ମୋହୋର ହୋଇବ ॥
ଦ୍ୱାଦଶ ଅନ୍ତେ ମୁଂ ହୋଇବ ଜାତ । ଦୀନ ଅଚ୍ୟୁତ ମୁଂ ଆପେ ସଜାତ ॥
ଭଗତମାନେ ମୋତେ ଯେ ଭେଟିବେ । ସତ ସ୍ୱରୂପା ସଙ୍ଗତେ ଝଟିବେ ॥
ଶ୍ୟାମ ଦାମ ରାମ ଧରମ ଥିବ । କମ୍ଭୁ କୃପାସିନ୍ଧୁ ମଧୁ ମାଧବ । ୧୦ ।
ଅନନ୍ତ ବନ୍ତ ନରହରି ଥିବ । ଭଗତଗଣ କଳଣା ନୋହିବ ॥
ଦେଶ ବିଦେଶରୁ ଆସିବେ ଚଳି । ଏକୁ ଆରକେ ଥିବେ ମହାବଳୀ ॥
ମାକଣ୍ଡ ମୂଳେ ଯେତେ ତପୀ ଛନ୍ତି । ଯୂଥପତିମାନେ ଯେତେ ଅଛନ୍ତି ॥
ସର୍ବେ ଯେକ ମେଳ ହୋଇ ବସିବେ । ଭଗତ ଗଣ ମଧ୍ୟରେ ମିଶିବେ ॥
ସାଏନ୍ତ ଜଳଦ ପୁର ଗ୍ରାମରୁ । ତ୍ରିଚକା କୁଣ୍ଡୀ କଟକ ଠାବରୁ ॥
ବାଙ୍କୁଲ ସାରଗ୍ରାମରୁ ଆସିବେ । ଭଗତ ଭଗତ ମେଳେ ମିଶିବେ ॥
ଅଡ଼ଙ୍ଗଠାରୁ ସାଇବର ସୀମା । ବନ୍ଦୁସାଗର ସୁବର୍ଣ୍ଣ ଗିରମା ॥
ଯେ ଯେଉଂ ଠାବରେ ଛନ୍ତି ଗୁପତ । ସର୍ବେ ହୋଇବେ ଏଥି ଉପଗତ ॥

ଲବଣଠାରୁ ଚନ୍ଦୋଭୂଲା ଯାଏ । ଭଗତଗଣ ହୋଇବେ ଉଦଏ ॥
ପେଲପେଲ ଠେଲଠେଲ ବାଜିବ । ଦମ୍ଭ ଦାମ୍ଭିକ ପଣ ଯେ ଭାଂଗିବ । ୨୦ ।
ଅନନ୍ତ ଯଶୋବନ୍ତ ଜଗୁଦାସ ଆସି । ଅନନ୍ତ କେଶଙ୍କ ରୂପରେ ମିଶି ॥
ପଦ୍ମବନରେ ହେବେ ଉପଗତ । ରାମନାମ ପଦ ହେବ ଶୋଧିତ ॥
ଯାଦବ ଶିରେ ଛତ୍ର ଧରାଇବେ । ପଦ୍ମବନେ ଅଧିକାର କରିବେ ॥
ନିଜ ସ୍ଥାନକୁ ପୁଣ ଯିବେ ବାହି । ଯାଦବ ଏଠାରେ ଥିବ ଯେ ରହି ॥
ମୋହୋର ଭେଟ ସେହୁ ଯେ ପାଇବ । ଅନେକ ଜନର ଦୁଃଖ ମେଣ୍ଟିବ ॥
କଚ୍ଛବନ ପୁଣ ହେବ ଗୁପତ । ପୁରୁଷୋତ୍ତମେ ହେବୁଂ ଉପଗତ ॥
ଶ୍ରୀମୁଖ ଦର୍ଶନ ସେଠାରେ କର । ସେବାରେ ପୁଣ ମନକୁ ଯେ ଧର ॥
ପଦ୍ମ ବନରେ ହେବ ମୁହିଂ ଆସି । ବଟ ଦର୍ଶନରେ ମନକୁ ତୋଷି ॥
ସେ ପଦ୍ମବନ ଅଂତ୍ତରେ ଥିବ । ତେବେ ସିନା ମୁହିଂ ଗତ ପାଇବ ॥
ଜନ୍ମେ ଜନ୍ମେ ମୁହିଂ କରିଛୁ ଆଶ । କର୍ମେ ପାଇଛୁ ପଦ୍ମ ବନ ବାସ । ୩୦ ।
ପଦ୍ମବନରେ ମୋ ଦେହ ହଜିବ । ଧ୍ୟାନ ଅଚ୍ୟୁତ ସୁଗତ ଭଜିବ ॥
ଶୁଣିଲୁ ରାମ ନିକର ବଚନ । ଏମନ୍ତେ ହେବ ସପତ ଜନମ ॥
ତୋତେ କହିଲି ହୋ ବରଜସୁତ । ମନେରଖି ଆଅ ବୋଲେ ଅଚ୍ୟୁତ ॥
ଅପୂର୍ବ ଭେଦ କହିଦେଲି ତୋତେ । ଦୃଢ଼େ ରଖିଥିବୁ ରାମ ତୋ ଚିତ୍ତେ । ୩୪ ।

ଇତିଶ୍ରୀ ମଣିବନ୍ଧ ଗୀତା ପଞ୍ଚମ ପଟଳ ସମ୍ପୂର୍ଣ୍ଣ ॥

## ॥ ଷଷ୍ଠ ପଟଳ ॥

ରାମଚନ୍ଦ୍ର ପାଦ ଚରଣେ ପଡ଼ି । ବିନୀତ କରି କହେ କରଯୋଡ଼ି ।୧।
ବୋଲଇ ଶୁଣିମା କରୁଣାମେରୁ । ସୁଦୟା କର ମନ ଦୁଃଖ ହରୁ ॥
ଶ୍ରୀମୁଖ ଆଜ୍ଞାଂରେ ମନ ମୋ ଅଛି । ଶ୍ରୀ ଚରଣ ତଳେ ତେଣୁ ମୁଂ ପୁଛି ॥
ଶ୍ରୀମୁଖ ଆଜ୍ଞାଂ ଯାହା ମୋରେ ଦେଲ । ମନ ପବନ ଚଇତନ ଜାଣିଲ ॥
ସକଳ ଭେଦ ମୋତେ ବୁଝାଇଲୁ । ସ୍ୱରୂପ କରି ସବୁ ଦେଖାଇଲୁ ॥
ଶ୍ରୀ ପଦ୍ମପାଦେ ମୁଂ ଏବେ ପୁଛଇଂ । ସାବଧାନ ହୋଇ ଶୁଣ ଗୋସାଇଂ ॥
ସପତ ବାର ଅଙ୍ଗ ପାଲଟିବ । କେମନ୍ତ ହୋଇ କାହାଂରେ ଘଟିବ ॥
ଆବର ଜନମ ମୋତେ କହିବ । ମନରୁ ମୋର ସଂଶୟେ ଫିଟିବ ॥
କେମନ୍ତ ହୋଇବ ଆପେ ଜନମ । କହିବ ମୋତେ ସବୁ ଭେଦମାନ ॥

ମୁଂ ମୂଢ଼ମତ ପାଇବ ନିସ୍ତାର । ଭେଦ ପାଇବ ପ୍ରଭୁ ଅବତାର ।
ତେବେ ସିନା ମୁଂ ପାଇବି କାରଣ । କରୁଣା କରିବ ମୋହୋ ଠାରେଣ ।।
ପତିତ ଜନ ଯେଣେ ମୋକ୍ଷ ହୋନ୍ତି । ରାମଚନ୍ଦ୍ର ଯେଣେ ପାଇବ ଗତି ।।
ରାମଚନ୍ଦ୍ରଠାରୁ ବିନତି ଦେଖି । ଧନ ଅଚ୍ୟୁତ ଅତି ସୁଖେ ସୁଖୀ ।।
ବୋଲନ୍ତି ଧନ୍ୟ ବରଜ ନନ୍ଦନ । ଉପଲକ୍ଷ ତୋତେ ନାହିଂ ଯେ ଆନ ।।
ଗଣ୍ଡିଆ ଲୋକମାନଙ୍କର ଗୁରୁ । ଗଣ୍ଡି କରି ଭଲ ଆଣି ପଚାରୁ ।।
ମନେ ରଖିଥିଲୁ ବରଜବାଳ । ଯାହା ପଚାରିଲୁ ଅତି ସୁଫଳ ।।
ଧନ୍ୟ ତୋ ମାତା ଧନ୍ୟ ତୋ ପିଅର । ଧରି ରଖିଥିଲୁ ମନେ ତୋହୋର ।।
ତୋତେ ଆଉ କସ ଦେବା ଉପାମ । ତୋର ସପତ ପୁରୁଷଙ୍କୁ ଧନ୍ୟ ।।
ଯାହା ଶୁଣିଲୁ ହୋ ବରଜସୁତ । ଅତି ଗୁପତରୁ ସ୍ନେହ ଗୁପତ ।।
ଶୁଣ ରାମଚନ୍ଦ୍ର ମୋହର ବାବୁ । ମୋହର ଜନମ କହଇଂ ସବୁ ।
ମୁହିଂ ଜନମ ହୋଇଲି ପଞ୍ଚମ । ସିନ୍ଧୁରାନନ୍ଦଟି ମୋହୋର ନାମ ।।
ଦୀନ ଅଚ୍ୟୁତ ଦୀନବନ୍ଧୁ ସୁତ । ବାଲ୍ୟ ମଙ୍ଗଳ ମଧୁପୁରେ ଜାତ ।।
ମଙ୍ଗଳ ଦାସ କେନା ଅଧିଷ୍ଠାତା । ତ୍ରିଲୋଚନ ମୁଂ ନାପିତ କୁଳେ ତା ।।
ତନ ପୁରୁଷେ ଅଂଶ ମୋ ରହିବ । ପ୍ରଥମ ଅଙ୍ଗ ମୋ ଶେଷେ ହୋଇବ ।।
ଶ୍ରୀ ଦ୍ରକୁଳରେ ହୋଇବ ମୁଂ ଜାତ । ପୁଣି ହୋଇବ ରଘୁ ଅରକ୍ଷିତ ।।
ଏମନ୍ତେ ପ୍ରଥମ ଶେଷ ହୋଇବ । ବରଜ ପୁଣି ପ୍ରକାଶ ହୋଇବ ।।
ଏମନ୍ତେ ହୋଇବ ମୋହୋର ଜାତ । କହିଲି ରାମ ତୋହୋର ଅଗ୍ରତ ।।
ବରଜଠାରେ ସକଳ ଦେଖିବୁ । ବାମ ଉତ୍ତର ପଶ୍ଚିମ ଖୋଜିବୁ ।।
ଏମନ୍ତେ କହୁଛନ ବହିଯିବ । ରାମଚନ୍ଦ୍ର ରୁ କରିଥାଅ ଠାବ ।।
ସପତ ଅଂଶେ ମୋ ଅଙ୍ଗ ପାଲଟ । ସାଧୁ ଯାଦବ ପାଇବଟି ଭେଟ ।
ଏହି ଉତ୍ତର ବଟରେ ହୋ ରାମ । ସବୁ ଠାବ କର ଏହା ପାଶେଣ ।।
ସର୍ବ କହିଲି ହୋ ତୋହୋ ଆଗର । ସର୍ବ ବେଳରେ ବିଶ୍ରାମ ମୋହୋର ।।
ସକଳ ସାଧି ସ୍ନେହ ସ୍ଥାନ ଗୋଟି । ସର୍ବ ମଉଷଧି ଏ ବଟ ଗୋଟି ।।
ଶତେ ଜନ୍ମ ପାପ ହୋଇବ ନାଶ । ଏହି ବଟଙ୍କୁ ହୋ ଶରଣ ପଶ ।।
ଶୁକଦେବ ଯତି ସଙ୍ଗ ପାଇବୁ । ସର୍ବ ସମ୍ପଦ ସୁଖ ରୁ ଲଭିବୁ ।।
ଗୁପତ କରିବୁ ବ୍ରଜ ତନସ୍ଵୀ । ଗୁରୁ ଗହନ ସ୍ନେହ ଯେ ଅଟଇ ।।

ମୋହୋର ବାକ୍ୟ ରଖିଥାଅ ମନ । ସତ୍ୟ ଶୁଣିବୁ ଦେଖିବୁ ନୟନ ॥
ଘୋର ସଙ୍କଟ ଦେଖିଲେ ହେ। ରାମ । ମିଳିବୁ ଏହି ବଟ ପାଖୁ ଶୁଣ ॥
ଘୋର ବିପତ୍ତି ବିନାଶ ହୋଇବ । ଯେତେ ଅଗ୍ନି ପ୍ରାପ୍ତେ ଉଦେ ହୋଇବ ॥
ମନେ ରଖିଥିବୁ ବ୍ରଜକୁମର । ଗୁପତ କହିଲି ତୋହୋ ଆଗର ।୪୦।
ନାନା ପାତକ ହୋଇବ ବିନାଶ । ସ୍ୱେକାକ୍ଷର ମନ୍ତ୍ର ଏଠାରେ ଘୋଷ ॥
ଏହିଠାରେ ବ୍ରହ୍ମା ହୋଇଲେ ଆସି । ଅଣାକ୍ଷର ମନ୍ତ୍ର ଏଠାରେ ଘୋଷି ॥
ଅବର୍ତ୍ତିତ ସତ୍ୟ ଯୁଗ ଚରିତ । କହିଲି ରାମ ତୋହୋର ଅଗ୍ରତ ॥
ଅନନ୍ତ ମହୀ ଭ୍ରମିଣ ବିଧାତା । ଏହା ପ୍ରସାଦରେ ହୋଇଲି ଜାତା ॥
ଇନ୍ଦ୍ର ହାରିଣ ଦଇତଙ୍କୁ ରଣେ । ପଶିଲି ଆସି ଏହି ପଦ୍ମ ବଣେ ॥
ଏହିଠାରେ ମନ୍ତ୍ର ଯନ୍ତ୍ର ଘୋଷିଲି । ତେଣୁ ଅସୁର ବଳକୁ ନାଶିଲି ॥
ଏ ବଟ ମହିମା ନ ସରେ କହୁଂ । ଅଭିନାଶୀ ଅଙ୍ଗ ଅଟଇ ସ୍ୱେହୁ ॥
ଏ ଭେଦମାନ ଗୁପତ କରିବୁ । ରାମଚନ୍ଦ୍ର ଦାସ ସୁଖ ପାଇବୁ ॥
ଯାତ ଯେବେ ଏହା କରିବୁ ବାବୁ । ମୋହୋର ଚରଣେ ନିଷ୍ଠେ ହାରିବୁ ॥
ଏହି ଭବରେ ନିତ୍ୟେ ରହିଥାଅ । ନାନା ସଂପତ୍ତି ସୁଖ ଏଥେ ପାଅ ॥
ଗୋପୀନାଥ ପାଦ ସରୋଜ ରସ । ଦୀନ ଅଚ୍ୟୁତ ରଖିଛି ମୁହାଂସ ।୫୧।

ଇତଶ୍ରୀ ମଣିବନ୍ଧ ଗୀତା ଷଷ୍ଠ ପଟଳ ସଂପୂର୍ଣ୍ଣ ॥

## ॥ ସପ୍ତମ ପଟଳ ॥

ଶୁଣ ହୋ ରାମ ତୋତେ ମୁଂ କହଇଂ । ଯାହାକୁ ବ୍ରହ୍ମା ଶଙ୍କର ଜପଇ ।୧।
କୋଟି କୋଟି ପୁନ୍ୟେ ପାଇ ହୋ ଯାହା । ଶୁଣ ରାମଚନ୍ଦ୍ର କହିବା ତାହା ॥
ଅପୂର୍ବ ଭାବନା ମନ୍ତ୍ର କହିବା । ଅଙ୍ଗ ଗୋଟି ତୋର ଭେଦାଇ ଦେବା ॥
ଅଭେଦ ଯେସନ୍ତେ ଅଙ୍ଗ ତୋର ହେବ । କୁଟ କପଟ ସଂକଟ ତୁଟିବ ॥
କୁଗ୍ୟାଂନ ଛେଦ ଭେଦ ଜାଣ । ଯେଉଂ ମନ୍ତ୍ରରେ ଉଦେହେବ ହଂସ ॥
ନାନା ଦୁର୍ଗମ ସଂକଟ ତୁଟିବ । ବଜ୍ର ସମାନ ଅଙ୍ଗକୁ ଯୋଟିବ ॥
ନାନା ଦୁଃଖମାନ ଯେସନ୍ତେ ବିନାଶ । କହିଦେବା ହୋ ରାମଚନ୍ଦ୍ର ଦାସ ॥
ନିକଳଙ୍କ ଯେ ତୋ ଅଙ୍ଗ ହୋଇବ । ନିଅଂ ପର୍ଯ୍ୟନ୍ତେ ନିରବଧି ହେବ ॥
ନିଶ୍ଚିନ୍ତ ହୋଇବୁ ଯାର ପ୍ରସାଦେ । ନ ଥିବ ଦଗା ନ ହେବ ବିଷାଦେ ॥

ତୋତେ କହିବା ହୋ ବିଶ୍ୱାସ ଯେତେ । ଘୋର ବେତାଳ ବାଣ ନାଶ ସେଥେ ।୯୦।
ଅଙ୍ଗରେ ବାନ୍ଧୁ କରନ୍ତୁ ଆପନା । ନାନା ଦୁଃଖ ନାଶ ସିଦ୍ଧ କଲ୍ୟାଣ ॥
ଆନ୍ତର ଯେସନ୍ତୁ ଆତ୍ମା ଅଟୁ ତୁହି । ତେଣୁକରି ତୋତେ ଦେବା ଭେଦାଇଂ ॥
ଇନ୍ଦ୍ର ଯାହାକୁ ନିରତେ ଜପଇ । ବଜ୍ର ସମାନ କାୟା ଗୋଟି ହୋଇ ॥
ହନୁମନ୍ତ ଯେଉଂ ମନ୍ତ୍ର ଜପିଲା । ମୁଷ୍ଟି ଘାତରେ ପଥର ଚୂରିଲା ॥
ମନ ଦେଇଥାଅ ବରଜସୁତ । ମନ୍ତ୍ର କହିବା ତୋହୋର ଅଗତ ।୯୫।

— ମନ୍ତ୍ରଂ ସେଠାରେ ଏମନ୍ତ ବୁଝିବ —

ଓଂ ହ୍ରଂ ସଂ କ୍ରୀଂ ଧ୍ରୀଂ । କ୍ଲୁକ୍ଲୁ ବଟୁ
ବଟୁ ଙ୍ଗଂ ଙ୍ଗଂ ରଟ ରଟ । ହ୍ରଂ ହ୍ରଂ କ୍ଷୀଂ କ୍ଷୀଂ ଙ୍ଗଂ ଙ୍ଗଂ ସ୍ୱାହା ॥
ଓଂ ହୃଦୟେ ହ୍ରଂ ସଂ ବେନି ଚକ୍ଷୁ । କ୍ରୀଂ ଧ୍ରୀଂ କର୍ଣ୍ଣ ।
କ୍ଲୁକ୍ଲୁ ନାସା । ବଟୁ ବଟୁ ଓଷ୍ଠ । ଙ୍ଗଂ ଙ୍ଗଂ ହସ୍ତ ।
ରଟ ରଟ ବେନି ପାର୍ଶ୍ୱ । ହ୍ରଂ ହ୍ରଂ ଉଦର ପୃଷ୍ଠ ।
କ୍ଷୀଂ କ୍ଷୀଂ ନାଭି ଲିଙ୍ଗ । ଙ୍ଗଂ ଙ୍ଗଂ ବେନିପାଦ ସ୍ୱାହା ।

॥ ସ୍ୱାହା ଶିର ॥

ଓଂକାର ହୃଦ ସବନିରେ ରଙ୍ଗ । ତହୁଂ ବେନି ଦିଅ ନେତ୍ର ସାରଙ୍ଗ ।୯୬।
ତହୁଂ ବେନି କ୍ଷର କର୍ଣ୍ଣରେ ବସି । ତୃଣକ୍ଷର ମନ୍ତ୍ର ନାସାରେ ମିଶି ॥
ତୃଣକ୍ଷର ମନ୍ତ୍ର ଓଷ୍ଠରେ ଦେଇ । ବେନି ମନ୍ତ୍ର ଯେ ବେନିହସ୍ତେ ଥୋଇ ॥
ବେନି ପାର୍ଶ୍ୱେ ଥୁଅ ତୃଣକ୍ଷର । ଉଦର ପୃଷ୍ଠରେ ବେନି ପ୍ରଚର ॥
ନାଭି ଲିଙ୍ଗରେ ବେନି ମନ୍ତ୍ର ଦିଅ । ବେନି ପାଦରେ ବେନି ମନ୍ତ୍ର ଥୁଅ ।୨୦।
ବେନି ମନ୍ତ୍ର ନେଇ ଦିଅ ଶିରରେ । ମନ୍ତ୍ର ସୁମର ବାବୁ ତୋ ମନରେ ॥
ବଜ୍ର କଳଣି ସଞ୍ଜବ କବାଟ । ବଜ୍ର ସମାନ ହେବ ତୋର ଘଟ ॥
ବନ ଦୁର୍ଗମରେ କଣ୍ଟିକେ ସଣ । ନଥିବ ଶଂକା କହିଲ ଯେ ହଂସ ॥
ନିରବଧି ଅଙ୍ଗେ କର ବଖାଣ । ମନ୍ତ୍ର ଗୋଟିକି ମନେ ମନେ ଗୁଣ ॥
କହିଦେଲି ତୋତେ ବ୍ରଜଜନଇ । ବଜ୍ର ପୋଟକ ମନ୍ତ୍ର ନାମ ସେହି ॥
ନାଶ ଯିବୁ ମନ୍ତ୍ର କାହିଂ ନ କହୁଂ । ତୋତେ କହିଲି ଆତ୍ମା ମୋର ସହୁଂ ॥
କୋଟି ପୁନ୍ୟେଣ ସେ ମନ୍ତ୍ର ଜପଇ । କାୟା ଗୋଟି ଯେ ନଟଳ ଅଟଇଂ ॥

ଏ କଳି ଯୁଗେ ନକର ପ୍ରକାଶ । ମଦ ମତ୍ସରେ ନରେ ହେବେ ବଶ ॥
ମୁଂ ବଡ଼ ବୋଲି ଆପେ ଆପେ ବଳି । ବଳାବଳମାନ ନୋହିବ କଳି ॥
ଏକେ ହୋଇବେ ଅତି ବଳବନ୍ତ । ଯେବେ ପାଇବେ ସ୍ନେହ ମହାମନ୍ତ୍ର ।୩୦।
ନଷ୍ଟେ ନ ରହିବେ କୀଟ ପତଙ୍ଗ । ନରବଧିରେ କରିବେ ସେ ଭଙ୍ଗ ॥
ତେଣୁ ଶତ ଅଂଶେ କର ଗୁପତ । ଶତେବାର ମୋର ତୋତେ ସୁକୃତ ॥
ସ୍ନେହ ଶ୍ରବଣେ ବେଳୁଂ ବେଳ ରସ । ଅଚ୍ୟୁତ ବୋଲେ ପାଇବୁ ହୋ ଯଶ ॥
ଶୁଣି ରାମଚନ୍ଦ୍ର ହୋଇଲା ତୋଷ । ଦୀନ ଅଚ୍ୟୁତ ବୋଲେ ହର ଦୋଷ ।୩୪।

ଇତିଶ୍ରୀ ମଣିବନ୍ଧ ଗୀତା ସପ୍ତମ ପଟଳ ସଂପୂର୍ଣ୍ଣ ॥

॥ ଏଠାରେ ଶ୍ରୀ ଶ୍ରୀ ଶ୍ରୀ ମଣିବନ୍ଧ ଗୀତା ଶେଷ ହୋଇଲା ॥



॥ ଓଂ ଶ୍ରୀ ଶ୍ରୀ ଜଗନ୍ନାଥ ଦେବାୟ ନମଃ ॥

କହେ ଅଚ୍ୟୁତ ଶୁଣ ରାମଦାସ । ସତ୍ତଂ କଥାରେ ତୋହୋର ମୁହାଂସ ।୧।
ଗୋଲକ ନତ୍ୟ ଯାହାକୁ ବୋଲନ୍ତି । ପଞ୍ଚ ଭୂତ ପରେ ସେ ନୀଳା ଥିତ ।।
ଶୂନ୍ୟରୁ ବାୟୁ ବାୟୁରୁ ଜ୍ୱଳନ । ଜ୍ୱଳନୁଂ ଜଳ ଜନ୍ମ ଭୂମିମାନ ।।
ସେମନ୍ତ ବୋଲଣ ସପତ ମଣ୍ଡି । ସପ୍ତ ଦ୍ୱୀପ ବୋଲି ସଭଏଂ କହି ।।
ସପତ ସୋମନ୍ତ୍ର ବଟି ରହିଛି । ସେହି ପରକାରେ ବୁଝ ତୁ ବଛି ।।
ନବଦ୍ୱୀପ ବୋଲି ଆବର କହି । ସେଥିର ସନ୍ଧ ଅନେକ ଅଛଇଂ ।।
ନଅ ଦ୍ୱୀପକୁ ସପତ ସୋମୋନ୍ଦ୍ର । ଏଥି ମଧରେ ଦଶଦ୍ୱିଗ ଭେଦ ।।
ଯୁଗ ବୋଲନ୍ତେ ତ୍ରିଶ ଯୁଗ ଦଲ । ଆବର ଯୁଗକେ ଗୋପ୍ୟାନ କଲ ।।
ପଞ୍ଚଯୁଗକୁ ପଞ୍ଚ ମନ୍ତ୍ର ହୋଏ । ଏକ ମନ୍ତ୍ର ସେଥି ଗୁପତେ ରହେ ।।
ଅକ୍ଷରୁଂ ପାଞ୍ଚ ଯେ ଯୁଗ ପାଞ୍ଚ ତ । ଏକ ଅକ୍ଷର ରହିଲା ଗୁପତ ।୧୦।
ପଞ୍ଚଯୁଗକୁ ପଞ୍ଚ ସଖା କଲ । ପଞ୍ଚ ଭୂତେଣ ତାଙ୍କୁ ନିର୍ଭା କଲ ।।
ଆଦ ଅନନ୍ତ ଯୁଗ ଯାହା କହି । ଅନନ୍ତ ହର ମନ୍ତ୍ର ସେ ଅଟଇଂ ।।
ନାରାୟେଣ ମନ୍ତ୍ର ସତ୍ୟଯୁଗରେ । ରାମ ତାରକ ତ୍ରିତୟାରେ ଧରେ ।।
ଗୋପାଳ ମନ୍ତ୍ର ଦ୍ୱାପରେ ସାର । ଷୋଡ଼ଶ ଅକ୍ଷରେ କଲ ଉଧାର ।।
ଓଂକାରୁ ଛଇଲ ଅକ୍ଷର ହ୍ରୀଯୁଂ । ହ୍ରୀଯୁଂ ଅକ୍ଷରୁ ଯେ ଛଇଲ ଶ୍ରୀଯୁଂ ।।
ଶ୍ରୀଯୁଂ ଅକ୍ଷରୁ ଯେ ଛଇଲ କ୍ଲୀଯୁଂ । କ୍ଲୀଯୁଂ ଅକ୍ଷରୁଂ ଖ୍ୟଇଲ ଧୀଯୁଂ ।।
ପଞ୍ଚଯୁଗ ସେହୁ ପଞ୍ଚ ଦେବତା । ପାଞ୍ଚଶାଖା ଯେ ବ୍ରହ୍ମାଣ୍ଡ କରତା ।।
ସୁଦାମ ସଖା ଯେ ମୋହୋର ନାମ । ସତ୍ୟେ କୃପାଜଳ ଋଷି ଆଶ୍ରମ ।।
ତ୍ରିତୟା ଯୁଗେ ନଳ ନାମ ହୋଇ । ଗୋଲୋକେ ସୁଦାମ ନାମ ବହଇ ।।
ଯନ୍ତ୍ରଂ ଗୋପେ ହେଲ ଗୋଲୋକ ନୀଳା । ତେଣୁ ସୁଦାମ ନାମ ଭଣାଇଲ ।୨୦।
କଳିଯୁଗରେ ଚୈତନ୍ୟ ଠାକୁର । ଅବତାର ହେଲ ନବଦ୍ୱୀପର ।।
ନୀଳାଚଳ କୃଦେ ମିଳିଲେ ଆସି । ପଞ୍ଚ ସଖାଏ ଯନ୍ତ୍ରଂ ପ୍ରକାଶି ।।
ପାଞ୍ଚ ଶାଖାଟି ସେ ଜଗୁଜୀବନ । ଦାସ ଜଗନ୍ନାଥ ଅଢ଼ ଗହନ ।।
ନୀଳାଞ୍ଚଳେଇଂ ବଳରାମ ଥିତ । ନେମାଳ ସ୍ଥଳେ ନାମ ମୋ ଅଚ୍ୟୁତ ।।
ଏମନ୍ତ ହୋଇଣ ଜନମ ହେଲି । ତିଲକଣା ଗ୍ରାମ ମଧେ ବଢ଼ିଲି ।।
ପାଞ୍ଚ ଦଶ ବର୍ଷେ ବିଦ୍ୟା ପଢ଼ିଲି । ସତର ବର୍ଷେ ଆଲେକତ ହେଲି ।।
ମାତା ପିତା ସେହୁ ବରଷ କାଲେ । ଗୁରୁ ଭଗତ ବାକ୍ରୁତର ମେଲେ ।।

ସନାତନ ଗୁରୁ ସୁଦସ୍ୟା କଲେ । ଗୁରୁ ଭଗତ ମେଳ ବୁଝାଇଲେ ।।
ଦ୍ୱାଦଶ ଥର ଦଣ୍ଡବତ କର । ଦ୍ୱାଦଶ ପୁରୁଷ ଗୁରୁ ସୁମର ।।
ସନାତନ ନାମ ଅଟେ ଆମ୍ଭର । ସବୁ ଉପରେ ଜଗତ ଠାକୁର ।୩୦।
ମାଧେବ ପ୍ରଭୁ ସୁମରଣା କର । ନରହରି ତଥି ଉପରେ ଧର ।।
ପଦ୍ମନାଭ ଶ୍ରୀବ ଧର ହୃଦର । ମଧୁ ଆଚାର୍ଯ୍ୟ ତାଙ୍କ ଗୁରୁ ପର ।।
ବେଦବ୍ୟାସ ତାଙ୍କ ଗୁରୁ ଉପର । ନାରଦ ଗୋସାଇଂ ଦ୍ୱାଦଶ ଧର ।।
ସ୍ୱେମନ୍ତ୍ର ହୋଇ ଉପଦେଶ କାଳେ । ପ୍ରଣମି ହେଜଲି ହୃଦ-କମଳେ ।।
ଦ୍ୱାଦଶ ପୁରୁଷ ବୁଝିବୁ ବାବୁ । ଏଥିପରେ ଯା ଅଧିକ ବୋଲିବୁ ।।
ନାରଦ ଗୁରୁ ପଦ୍ମଯୋନି ଜାଣ । ତାହାଙ୍କ ଗୁରୁ ହାଦେ ନାରାୟଣ ।।
ଜଟା ମୁକୁଟ ଭଗବାନ ରୂପ । ଭଗତ ରୂପେ ଧ୍ୟାଇବୁ ସେରୂପ ।।
ଭଗବାନଙ୍କ ଗୁରୁ ନିରାକାର । ନିରାକାର ସେ ସଂସାରେ ବେହାର ।।
ଅଜନ୍ମ ଅବ୍ୟସ୍ତ ସତ୍ୟ ପୁରୁଷ । ଭଗତ ନିମିନ୍ତ ଜନମ କ୍ଳେଶ ।।
ସ୍ୱେଣୁ ନିରାକାର ଅଟନ୍ତ ସେହି । ସେ ତତ୍ତ୍ୱୁଠାରୁ ତତ୍ତ୍ୱ ଆଉ ନାଇଁ ।୪୦।
ଠନ ଭୁବନ ଲୋଚନ ଅଗର । ଦୂରେ ଡାକଇ ଶୁଭଇ କର୍ଣ୍ଣର ।।
ପୂଜା ନିବେଦ୍ୟ ଦୂରେ ଥାଇ ଭୁଂଜେ । ପଦ୍ମପାଦେ ଭକ୍ତ ନିମନ୍ତେ ରାଜେ ।।
ତ୍ରିଭଙ୍ଗା ଗୋପାଳ ଅପୂର୍ବ ଭେସ । ସତର ବରଷ ମୋହୋ ବୟେସ ।।
ଦୀନବନ୍ଧୁ ଖୁଣ୍ଟିଆର ମୁଂ ସୁତ । ମାତା ପିତା ନାମ ଦେଲେ ଅଚ୍ୟୁତ ।।
ଠଲକଣା ଗ୍ରାମର ଉତ୍ତରରେ । ନଦୀ ବହୁଅଛି ପୂର୍ବ ଭାଗରେ ।।
ଗ୍ରାମ ଦକ୍ଷିଣେ ବଟସ୍ୱେକ ଅଛି । ବିଦ୍ୟା ପଠନେ ଚଢ଼ି ମୋର ଗଛି ।।
ଡୋର କଉପୀନ ବୈରାଗୀ ବେଶ । ବୃଦ୍ଧ ରୂପ ଧରି ହେଲେ ପ୍ରବେଶ ।।
ହରଷ କରି ପୁଛା କଲେ ବାଣୀ । ହରିନାମ ଶୁଣି ମନରେ ଗୁଣି ।।
ତାଙ୍କୁ ଦେଖି ମୁଂ ଆଶ୍ଚର୍ଯ୍ୟିତ ହେଲି । ତ୍ରିଭଙ୍ଗ ଗୋପାଳ ରୂପ ସୋରିଲି ।।
ଅଚେଷ୍ଟ ହୋଇ ନ ଫୁରଇ କିଛି । କାହୁଂ ଅଇଲ ବୋଲି ପଚ୍ଛୁରୁଛି ।୫୦।
ଶୁଣ କୁମର କହିବା ଉତ୍ତର । ଆସିଅଛୁଂ ଆମ୍ଭେ ତୋହୋ ଭିତର ।।
ଯୁଗ ଯୁଗକୁ ଜନ୍ମେ ଜନ୍ମେ ସଙ୍ଗୀ । ଉମ୍ଭନ୍ତ ଯେନ ଲୀଳା ନାନା ଭଙ୍ଗୀ ।।
ଏବେ ଜନମ ତୋହୋର କୁଳରେ । ଗୋପାଳ ଭକ୍ତ ଥିନା ଜନ୍ମାନ୍ତରେ ।।
ଗୋପାଳ କୁଳକୁ ଉଧାର କର । ଗୋଲୋକ ଚରିତ ସୁଖେ ସୁମର ।।
ଅନ୍ତର୍ଧାନ ହେଲେ ଶ୍ରୀ ବେଣୁଧର । ଚେତନା ପାଇଲି ମୋହ ହୃଦର ।।
ଅବ୍ୟକତ ପଦ ଫୁରିଲା ବାଣୀ । ସତର ବରଷ କଥା ଶୁଣି ଗୁଣି ।।

କହ୍ନୁ ଦନରେ ମୋ ମାତା ପିଅର । ସେ ଅକ୍ରୁ ପୁଣ ହୋଇଲେ ଅନ୍ତର ॥
ସାଇବର ବଶେ କୁଣ୍ଡୀ ନଗସ୍ତ । ସେ ଥାନେ ରହିଲ ଟୁହ୍ନ ଯେ କଶ ॥
ମାଣପୁର ନାମ ଅଟଇ ଗ୍ରାମ । ବାର ମାହ୍ନାଜନ ସେଠାବେ ଧାମ ॥
ଗ୍ରାମ ଧରମୁ ଭ୍ରଥ ଯାଦବଙ୍କଂ । ବସ୍ତୁ ନିରଂଜନ ନାମ ସେ ଦୁଇ ।୭୦।
ମୁଗ୍ରଶ ନନ୍ଦ କୃପାସିନ୍ଧୁ ଶାମ । କନ୍ଦ ଅବର ବୋଲଣ ଜନ୍ମମ ॥
ଦ୍ୱାଦଶ ଗୋପାଳ ଗୋପ ଲୀଳାରେ । ଗୋରୁ ମହ୍ନଷ ଗୋଠରେ ବହ୍ନରେ ॥
କୃଷ୍ଣର ଲୀଳା କେ ଆନ କରିବ । ଦଇବ ଘଟନ ଅବଶ୍ୟ ହେବ ॥
ସେକ ଦନରେ ହୋ ଅପୁର୍ବ ଲୀଳା । ଗୋରୁ ମହ୍ନଷ ଯୂଥ ଭେଳା ଭେଳା ॥
ଗୋରୁ ମହ୍ନଷ ଗୋଠର ଆଧାର । ତୃଣ ତ ତାଙ୍କର ଲୀଳା ବେହାର ॥
ଚଇତ ଶେଷ ବୈଶାଖର କାଳ । ପାଟଲ ରବତ ଅଠ ନର୍ମଳ ॥
ଗୋପପୁତଙ୍କ ଯେ କଟାଳ କଲେ । ଆମ୍ଭେ ସେଠାବରେ ମିଳିଲୁ ଭଲେ ॥
ତାଙ୍କୁ ବୋଇଲୁଂ ହୋ ଶୂଦ୍ର ମନୁଷ୍ୟ । ଗୋରୁ ମହ୍ନଷର ଆଧାର ଘାସ ॥
ତାଙ୍କ ଆଧାର ସେହୁ ଖାଇଲ । ତୁମ୍ଭମାନଙ୍କର କ ଅବା ଗଲ ॥
ଭ୍ରୁଛନା ବହୁତ କହିଲେ ବାଣୀ । ମୁଠାଏ ଖାଇ ବସିଥାଅ ପୁଣି ।୭୦।
ମୋହଠାରେ କ୍ରୋଧ କରଣ ଗଲେ । ରାଜାର ଲୋକ ଡକାଇ ଆଣିଲେ ॥
ତକ୍ଷଣେ ସୁମରଣା କଲି ମୁହିଂ । ଅନ୍ତର୍ଯାମୀ ନାଥ ଅଟୁ ଗୋସାଇଂ ॥
କୁମ୍ଭୀର ଛେଦ ଗଜକୁ ରଖିଲୁ । ହିରଣ୍ୟ ମାରି ପ୍ରହ୍ଲାଦ ତାରିଲୁ ॥
ରାବଣ ନାଶି ବଭୀଷଣ ରାଜା । କଂସ ବନାଶି ଉଗ୍ରସେନେ ପୂଜା ॥
ମୋରେ ବପତ୍ତି କେତେ କେତେ ହୋସ୍ତେ । ଅଷ୍ଟମଲ୍ଲ ମାରି ରଖିଲୁ ପୋଏ ॥
ଧ୍ରୁର କଥାକୁ ସେହେଣ୍ଟେ କଷ୍ଟଣ । ଅନ୍ତର୍ଯାମୀ ନାଥ ଆରତତାଣ ॥
ଇନ୍ଦ୍ର ବବାଦେ ମନ୍ଦର ଧଇଲୁ । ବକା ପାଟି ଚିରି ବାହାର ହେଲୁ ॥
ଦାବାନଳ ଗିଳି କାଳି ମର୍ଦ୍ଦିଲୁ । ଗୋପକୁ କେତେ ବପଦୁଂ ରଖିଲୁ ॥
ଏମନ୍ତେଣ ଚନ୍ତା କରନ୍ତେ ପୁଣ । ସେହ୍ନ କୃଷି ପାଚ ସେହ୍ନ ଭବେଣ ॥
ରାଜାର ଭୂମିକାର ଜନ ସେ ଅ । ଦୂତ ପୁଚ୍ଛାକଲ କ କଥା କହ ।୮୦।
ମୁହିଂ ବୋଇଲି ଗୋପ ବାଳକ । କଳହ ନକର ଏ ଯୋଗ୍ୟ ଲୋକ ॥
ମୋତେ ନ ମାନ ତୋହରେ ଆଣିଲେ । ବଡ଼ମ୍ବଣ କଥାମାନ କହିଲେ ॥
ରାଜାର ଦୂତ କଲେ ଶୁନ୍ଯାଗାର । ଉତ୍ତମ ଲୋକଙ୍କୁ କଲ ଅସାର ॥
ସେ ସ୍ଥଳୁଂ ମୋତେ ସେ କଲେ ବାହାର । ଅନ୍ତର ହୋଇଲ ଥୋକାଏ ଦୂର ॥
ଦ୍ୱାଦଶ ଗୋପାଳ ମୋହୋର ଅଙ୍ଗ । ହରିଲୀଳା ଶୁଣି ହୋଇଲେ ସଙ୍ଗ ॥

ବକ୍ଷମ ସମ ନୀଳଗିରି କୂଦ । ହୃଟେଙ୍କାଳା ଶୁଣି ମନ ଅନନ୍ଦ ।।
ବଇରାଗ ଭାବେ କଚ୍ଛୁ ଦନ ଗଲା । ଅନ୍ତର୍ଯାମୀ ନାଥ କରୁଣା ହେଲା ।।
ଦାରୁ ଆବୃରଣ ସଂସାର କର । ସେବକ ପୁତ୍ର ହେବ ତୋହୋ ବର୍ଯର ।।
ବ୍ରଜ ଗଦାଧର ପୁତ୍ର ହୋଇବ । ତହୁଁ ଜନମିବ ବାଲ ମାଧେବ ।।
ବାଲ ସୁତ ଗଙ୍ଗାଧର ଗନ୍ଧର୍ପ । କଳି ମହାପୀଡ଼ା ହୋଇବ ତାପ ।୯୦।
ଏକ ପୁତ୍ର ହେଲେ ଧାରଣା ହୋଏ । ବେନପୁତ୍ର ମହା ଅଶଷ୍ଟ ଭୟେ ।।
ଏହ୍ମମତେ ଆଗ୍ୟାଂ କୃଷ୍ଣ କଲେ ଯହୁଂ । ଦାରୁ ଆବୃଶଲ୍ ମୁଂ ପୁଣ ତହୁଂ ।।
ଅଡ଼ଙ୍ଗ ବଶ ଭୂପତର ଝିଅ । ମୋତେ ସମର୍ପିଲ୍ ଅତ ସେନେହ ।।
କଚ୍ଛଦନ ଅନ୍ତେ ଚେଳି ସେ ଥାନ । ଚନ୍ଦ୍ରୋଦୃକା କୂଳେ ପୁଣି ଗମନ ।।
ଗୋପ ବାଳକ ନେଉଥିଲେ କ୍ଷୀର । ଗୋପାଳେ ସେଠାବେ କଲେ ତାକୁର ।।
ରାଜା ଗ୍ରାମୁରେ ଜଣାଇଲେ ଯାଇଂ । ଲେଉଟି ଭାଣ୍ଡ ରଖିଲେ ସେଠାଇଂ ।।
ରାଜାର ଦୂତ ଦେଖିବାକୁ ଆସି । ବାକ୍ୟ ପୁଚ୍ଛାକଲେ କଡରେ ବସି ।।
ଗୋପାଳେ କହଲେ କୃଷ୍ଣକୁ ଦେ଼ଖି । ଠେକ ମାନନ୍ତ ହଲିଟି ରଖିଲୁ ।।
ଦୂତ ଜଣାଇଲ୍ ରାଜା ଗ୍ରାମୁରେ । ରାଜା ଅନ୍ତେମ୍ବିତ ଶୁଣି କର୍ଣ୍ଣରେ ।।
ରାଜନ ଆସି ପ୍ରଣମିତ ହେଲ । ଏଠାବେ ଆନନ୍ଦେ ଥାଅ ବୋଇଲ ।୧୦୦।
କଚ୍ଛଦନ ରହ ନେମାଲ ଥାନ । ବଟ ସମୀପେ ହୋଇବୁଂ ଗୋପ୍ୟାନ ।।
ହରନଗ୍ରୀ ରାସରାଜ ଭୁବନେ । ଚନ୍ଦ୍ରଭାଗା ନଦୀ ଅଛ୍ଛ ସେ ଥାନେ ।।
ଶୁକରଙ୍କି ବୋଲି ଭୁରଅ. ଗ୍ରାମ । ସେ ଠାବେ ମୋର ହୋଇବ ଆଶ୍ରମ ।।
କୁଣ୍ଡେଶ୍ୱର ବୋଲି ଧର୍ମ ଭୁବନ । ସେଠାରେ ବଂଶ ଉଧରବା ମନ ।।
ତୀ ଅକ୍ଷରେ ଲେକ ସୋରବୁ ଧର । ଚଅ ଅକ୍ଷର ମଅ ଲ୍ବଣ କର ।।
କୃଷ୍ଣ ଭଗତ ଜନ୍ମେଜନ୍ମେ ଯେଣୁ । ଆଗତ ନଗମ ତେଣୁ ବଖାଣୁଂ ।।
ପାଠ ସାହାସ୍ର ବଦ୍ୟା ବଡ଼ପଣ । କୃଷ୍ଣର ମାସ୍ଯା ରୂକ୍ଷା ବଡ଼ମ୍ବଣ ।।
କେବଳ ଭକ୍ତ୍ୟପଣେ ଖଟିଥାଉ । ଜନ୍ମ ଜନ୍ମାନ୍ତରେ ନାମ ହୋ ଗାଉ ।।
ଦ୍ୱାଦଶ ଗୋପାଳ ଶୁଣ ବଚନ । ଗୁପତ କରବ ଏ ଗ୍ରନ୍ଥମାନ ।।
ପ୍ରଘଟ କଲେ ବଡ଼ୁ ଦୋଷ ପାଇ । ସକଳ ସୁଖ ତାର ନାଶ ଯାଇ ।୧୧୦।
ସଂପୂର୍ଣ୍ଣ ହେଲ ଯୁଗାବଧ୍ଧ ପାଠ । କହେ ଅଚ୍ୟୁତ ଏ ପ୍ରବନ୍ଧର କୋଠ ।୧୧୧।

॥ ଇତଶ୍ରୀ ଯୁଗାବ୍ଧି ଗୀତା ସଂପୂର୍ଣ୍ଣ ॥

●

# ଅଚ୍ୟୁତ ଗୀତ

ଶୁଣ ଆହେ ରାମଦାସ ମନ୍ତ୍ରଙ୍କର ମୂଳ
ଅଣାକ୍ଷରେ ପଞ୍ଚ ମନ୍ତ୍ର ହୁଅନ୍ତି ଯେ ମେଳ ।୧।

ଅଣାକ୍ଷର ଯେକାକ୍ଷର ଶ୍ୟାମ ପଞ୍ଚାକ୍ଷର ।
ତାରକ ଯେ ହରେରାମ କୃଷ୍ଣମନ୍ତ୍ର ସାର ।୨।

ଅନନ୍ତ ଯୁଗର ମନ୍ତ୍ର ଅଟେ ଅଣାକ୍ଷର ।
ସତ୍ୟଯୁଗ ଯେକାକ୍ଷର ମନ୍ତ୍ର ଅଟେ ସାର ।୩।

ତ୍ରିତୀୟା ଯୁଗର ମନ୍ତ୍ର ଅଟଇ ତାରକ ।
ଦ୍ୱାପର ଯୁଗରେ ଶ୍ୟାମ ପଞ୍ଚାକ୍ଷର ଜପ ।୪।

କଳିଯୁଗେ ହରେ ରାମ ଷୋଳ ନାମ ହୋଇ ।
ସବୁ ମନ୍ତ୍ରମାନ ଯେହୁ ଗର୍ଭରେ ସମ୍ଭାଇ ।୫।

ଷୋଳ ନାମୁଂ ତନ ନାମ କଳିରେ ପ୍ରଚର ।
ଚଇତନ ଠାକୁରେ ତାହା କଲେକ ବାହାର ।୬।

ହରେ କୃଷ୍ଣ ମାହାମନ୍ତ୍ର ସଂସାରେ କହିଲେ ।
ତେର ନାମ ଲୁଚାଇଣ ଗୋପ୍ୟାନେ ରଖିଲେ ।୭।

ଶ୍ୟାମ ପଞ୍ଚାକ୍ଷର କଲେ ଅଠର ଅକ୍ଷର ।
ବ୍ରହ୍ମା ପୁଣି ନଗମରୁ କଲେକ ବାହାର ।୮।

ତାରକ ମନ୍ତ୍ରରୁ କଲେ ଗାୟତ୍ରୀ ଅଠ ।
ଯେକାକ୍ଷରୁଂ ନାରାୟେଣ ମନ୍ତ୍ର କଲେ ପାଠ ।୯।

ସେ ଅଣ ଅକ୍ଷର ସବୁ ମନ୍ତ୍ରଙ୍କର ମୂଳ ।
ତାରକ ଯେ ଯେକାକ୍ଷର ଶ୍ୟାମ ହେଲେ ଡାଳ ।୧୦।

ଯେ ମନ୍ତ୍ର ଯେ ସବୁ ମନ୍ତ୍ର ଡାଳ ଶାଖା ଜାଣ ।
ହେଜାଇ କହଇ ଯେବେ ଅଚ୍ୟୁତ ଅଗ୍ୟାଂନ ।୧୧।

॥ ଶ୍ରୀ ଶୁଭମସ୍ତୁ ॥

ଶୁଣ ହୋ ଦ୍ୱାଦଶ ଶାଖାଙ୍କ ସାର ।
ଯେକାକ୍ଷର ବୋଲି ଯେ ମନ୍ତ୍ର ସାର ।୧।
ଛିରରେ ଅର୍ଦ୍ଧାଙ୍ଗ ରଖିବ ପୁଣ ।
କର ବୋଲି ମାହା ତଳେଟି ଜାଣ ।୨।

ଆବର କର ଯେ ତହୁଂରେ ଦଅ ।
ସାତ ଅଙ୍କ ଗୋଟି ପାରୁଶେ ଥୁଅ ।୩।
ଅଗରେ ଅର୍ଧାଙ୍ଗ ରଖିବ ଯେବେ ।
ମଧରେ ଅର୍ଧାଙ୍ଗ ରଖିବ ସ୍ୱବେ ।୪।
ଗାର ଦେଇ ପରେ ରଖିବ ବିନ୍ଦୁ ।
ସ୍ୱେକାକ୍ଷର ହେବ ସ୍ୱେ ମନ୍ତ୍ର ଛନ୍ଦୁ ।୫।
ଗାର ତଳେ ଥୁଅ ଙଂକାର ପୁଣ ।
ମାତ୍ରା ଦେଇ ମନ୍ତ୍ର ହୃଦରେ ଗୁଣ ।୬।
ଶୁଣ ବ୍ରଜପୁତ୍ର ମନ୍ତ୍ର କାହାଣୀ ।
ସ୍ୱେ ମନ୍ତ୍ର ରଖାଇଂ ଗୁପତେ ପୁଣି ।୭।
ସ୍ୱେକାକ୍ଷର ମନ୍ତ୍ର ଅଟଇ ସାର ।
ସ୍ୱମଚନ୍ଦ୍ର ଦାସ ତଲସ୍ୱେ କର ।୮।
ମାହା ପାତେକ ହୋଇବ ବିନାଶ ।
ହେତୁ ଜଣଥାଅ ଗୋପାଳ ଶିଷ ।୯।
ଅକାର ମଧରେ ଯତନେ ଥୁଅ ।
ବିନ୍ଦୁ ନେଇ ତାର ଅଗ୍ରତେ ଦଅ ।୧୦।
ବାମ ସ୍ୱଗରେ ସାଂତ ଅଙ୍କ ଦେଇ ।
ଅର୍ଧମାତ୍ରା ରଖ ତହୁଂ ଯୋଡ଼ାଇ ।୧୧।
ଡାହାଣ ପାରୁଶେ ରଖିବ ଗାର ।
ତା ତଳେ ଙଂକାର ମାତ୍ରାକୁ ଧର ।୧୨।
ସ୍ୱେକାକ୍ଷର ମନ୍ତ୍ର ସ୍ୱେହ ଅଟଇ ।
ଅଶେଷ ଜନ୍ମ ଦୁର୍ଗତ କାଟଇ ।୧୩।
ଆଗ୍ରେ କଲେ ନଷ୍ଟେ ହୋଇବୁ ପାର ।
ଭଜୁଥାଅ ମନେ ସ୍ୱେକା ଅକ୍ଷର ।୧୪।
ପଞ୍ଚୁମାତ୍ରା ଯେନ ଉଦେ ହୋଇଛୁ ।
ପଞ୍ଚ ମିଶାଇ ତୋଳ ଦାଳ ବଚ୍ଛୁ ।୧୫।
ପରଚେ ଗୁରୁ ଗୁଦ୍ଧ ଗ୍ୟାନ ସାର ।
ସ୍ୱମଚନ୍ଦ୍ର ଦାସ ତଲସ୍ୱେ କର ।୧୬।
ଯାହା କହଲ ଅତ ଅଗୋଚର ।
ଅନ୍ତ ନୋହେ ନାମ ସ୍ୱେକା ଅକ୍ଷର ।୧୭।
ଅନନ୍ତ ମଳା ସ୍ୱେଥି ଅଛୁ ପୁର ।
ଅଗ୍ୟାଂନ ଜନକୁ ଅଟେ ବଇର ।୧୮।

ଗ୍ୟାମୀ ଜନକୁ ଜଳୁଥାଇ ବନ୍ଧ ।
ଭରସା କରନ୍ତୁ ଦୀନ ଅଚ୍ୟୁତ ।୧୯।

ଶୁଣ ରାମଚନ୍ଦ୍ର ବ୍ରଜ କୁମର ।
କହିଲୁ ଯେତେ କଳିର ବଗ୍ୟର ।୨୦।

କଳିଯୁଗ କଥା କହିବା ତୋତେ ।
ନଷ୍ଟା ଭ୍ରଷ୍ଟା ନୃପ ହୋଇବେ ଥୋକେ ।୨୧।

ଯୋଗ ନଜାଣି କରିବେ ଆରମ୍ଭ ।
ଶାସ୍ତ୍ର ନ ପଢ଼ି ହୋଇବେକ ଦମ୍ଭ ।୨୨।

ହେଲ ହୋ ବୋଲି ବୋଲିବେକ ଥୋକେ ।
ହୁରି ଜୁରି ରାଜ୍ୟ କରିବେ ଲୋକେ ।୨୩।

ସତ୍ୟ ନ ପାଳିବେ ଭ୍ରଷ୍ଟା ହୋଇବେ ।
ଦେଖି ମୂର୍ଖରେ ପଡ଼ି ନାଶ ଯିବେ ।୨୪।

ସ୍ୱେହ୍ନ ମନ୍ତ୍ର ମୋ ଭଗତ ଜପିବ ।
ଦିନ ଖିନ ହୋଇ ପଡ଼ିଣ ଥିବ ।୨୫।

ଗାରରେ ମାତ୍ରା ଯେ ଗୃର ଅକ୍ଷର ।
ଅର୍ଧମାତ୍ରା ରଖ ତଦ୍ଧଂ ପାଟର ।୨୬।

ଗାରରେ ଅର୍ଧାଙ୍ଗ କଳକ ଦେଇ ।
ଅର୍ଧମାତ୍ରା ରଖ ତଦ୍ଧଂ ଦୋଡ଼ାଇ ।୨୭।

ଗାରରେ ମାତ୍ରା ଯେ ତୃର ଅକ୍ଷର ।
ଅର୍ଧମାତ୍ରା ରଖ ତଦ୍ଧଂ ପାଟର ।୨୮।

ଗାରରେ ଅର୍ଧାଙ୍ଗ କଳଙ୍କ ଦେଇ ।
ଅର୍ଧମାତ୍ରା ରଖ ତଦ୍ଧଂ ଲୁଚାଇ ।୨୯।

ଗାରରେ ଅର୍ଧଶୂନ୍ୟ ବସିଣ ଥିବ ।
ସାତ ଅଙ୍କ ଗୋଟି ପାରୁଣେ ଦେବ ।୩୦।

ହୃଦେ ଭକ୍ତ ଧନ୍ଦା ହୋଇବ ନାଶ ।
ତଳେ କରିଥାଅ ଗୋପାଳ ଶିଷ ।୩୧।

ସ୍ୱେତେକ ଜାଣିଲେ ବରଜ ପୋଅ ।
ଅଚ୍ୟୁତ ଭଣେ ନ ରହେ ଭୟ ।୩୨।

॥ ଇତଶ୍ରୀ ଅଚ୍ୟୁତାନନ୍ଦ ସ୍ୱେକାକ୍ଷର ଗୀତା ସଂପୂର୍ଣ୍ଣ ॥



# ପରମ ଗୟାଂନ ଗୀତା

ରାମଚନ୍ଦ୍ର ଦାସ ଆସି ହୋଇଣ ବନୋଇ ।
ପରମ ଜ୍ଞାନ ରହସ୍ୟ ସ୍ୱେକାନ୍ତେ ପୁଛଇ ।୧।

କହନ୍ତି ଅଚ୍ୟୁତ ଶୁଣ ତୁ ହେ ରାମଦାସ ।
ଚଉରେଇ ହେଜବୁ ଏହା ନକର ପ୍ରକାଶ ।୨।

ପୃଥ୍ୱୀ ଆପ ତେଜ ବାୟୁ ଆବର ଆକାଶ ।
ପଞ୍ଚଭୂତ ଦେହ ଶୃଷ୍ଟି ହୋଅଇ ବିକାଶ ।୩।

ମନ ଯେ ସୁମନ ମନ କୁମନ ବମନ ।
ଅମନକୁ ଦେହକର ଏହୁ ପଞ୍ଚ ମନ ।୪।

ଶୁଣି ଆହେ ରମଚନ୍ଦ୍ର ଏଥୁ ସାର ନାହିଁ ।
ସାର ଉପଦେଶ ଭବ ବାଛି ଦେଲି କହି ।୫।

ଜାଣିମେ ସୁଗ୍ୟାଂନୀ ଜନ ନ ଜାଣିମେ ଆନ ।
ସେ କଥା ସତ୍ୟ ଅଟଇ କହୁଅଛି ଦେନ ।୬।

ଦୁର୍ଲ୍ଲଭ ଏ ନର ଘଟ ସେଥୁ ଶ୍ରେଷ୍ଠ ନାହିଁ ।
ଘଟକୁ ଚେକିଲେ ମନ ପାଇବୁ ତୁ କାହିଁ ।୭।

ଜଗତେ ଦୂଲଛି ସେହି ନ ଦେଖନ୍ତି କେହି ।
ପ୍ରଥମା ପିତୁଳା ପୂଜି ହୋଇଥାନ୍ତି ବାଇ ।୮।

ହଣ୍ଟଳ ଆସନେ ବସି ସାଧନା ସାଧିବ ।
ମେରୁକୁ ସଲଖି ବ୍ରହ୍ମରନ୍ଧ୍ରେ ଦୃଷ୍ଟି ଦେବ ।୯।

ଯେତେବେଳେ ମନ ତୋର ନାସାଗ୍ରେ ରହିବ ।
ତ୍ରିକୂଟ ସନ୍ଧିରେ ତୋର ଅଗ୍ନି ବାହାରିବ ।୧୦।

ଶୂନ୍ୟରେ ଖେଳୁଛି ହଂସ ଶୂନ୍ୟେ ବିହରୁଚ ।
ଗଗନ ଶିଖରେ ନେଇ ଚଳାଇବୁ ମଠ ।୧୧।-

ତେବେ ସେ ପରମ ଆତ୍ମା ସୁର ଯୁଗେ ଥିବ ।
କମଳ କେଶରେ ପଶି ମାଧୁରୀ କରିବ ।୧୨।

ମୂଳ କମଳକୁ ଟିପି ବସିବ ସଧୀରେ ।
ମନକୁ ନେଇ ଆସିବ ବ୍ରହ୍ମରନ୍ଧ୍ର ଠାରେ ।୧୩।

ସୂଚୀରନ୍ଧ୍ର ଠାରେ ବାଟ ଗୋଲେକକୁ ଥାଇ ।
ଦେଖୁ ଦେଖୁ ମତ୍ତଗଜ ଗମନ କରଇ ।୧୪।

ନହ୍ଲ ହୋଇଣ ସେହି ବାଟେ ଚଳିଯିବ ।
ଗୋଲୋକ ମଧ୍ୟରେ ଯାଇଁ ପ୍ରବେଶ ହୋଇବ ।୧୫।

ଗୋଲୋକ ମଧ୍ୟରେ ଅଛି ଅପୂର୍ବ ରହସ୍ୟ ।
ରହସ୍ୟ ତେଜଣ ପ୍ରଭୁ ଚଳାବେ ପ୍ରବାସ ।୧୬।

ତହୁଁ ଆଉଂ ଥାଉଂ ଜନେ ହୋଇଛନ୍ତି କଣା ।
ଚେତା ଥାଉଂ ଥାଉଂ ଲୋକେ ହେଉଛନ୍ତି ବଣା ।୧୭।

ତୋହର ଦେହରେ ପ୍ରଭୁ ଜକଜକ ହୋଇ ।
ଆଗଦୃଷ୍ଟି ପଛକଲେ ଦେଖିବୁ ସେ ତୁହି ।୧୮।

ମାଙ୍ଗଡ଼ଯା ସୂତା ପ୍ରାଏ ତହିଂ ଦ୍ୱାର ଦିଶି ।
ତହିଂ ପରେ ଆତ୍ମାରାମ ଜାବନ୍ତି ପ୍ରବେଶି ।୧୯।

ମନୁଷ୍ୟ ଜୀବନ ହୋଇ ଯିନା ଅକାରଣ ।
ଶୂନ୍ୟ ପୁରୁଷକୁ ଦିନେ ନ ଚହିଁଲୁ ପୁଣ ।୨୦।

ଅକ୍ଷିର ପିତୁଳା ଯେବେ ଅଲଗା କରିବୁ ।
ତେବେ ସେ ପରମ ଆତ୍ମା ନୟନେ ଦେଖିବୁ ।୨୧।

ଦୃଷ୍ଟିରେ ଦେଖିବୁ ମନ ଲକ୍ଷ୍ୟରେ ରଖିବୁ ।
ଅଣାକାର ମନ୍ତ୍ରକୁ ତୁ ହୃଦରେ ଜପିବୁ ।୨୨।

ମୂଳ କମଳରେ ମନ ଗଣପତି ଛନ୍ତି ।
ଗୁହ୍ୟଚକ୍ର ପରେ କାମେଶ୍ୱର ବିହରନ୍ତି ।୨୩।

ନାଭିଚକ୍ର ପରେ ବ୍ରହ୍ମ ରହିଛନ୍ତି ଧାତ୍ରୀ ।
ହୃଦଚକ୍ର ପରେ ବିଷ୍ଣୁ ବିହରନ୍ତି ରହି ।୨୪।

ନାସାଚକ୍ରଠାରେ ଚନ୍ଦ୍ର ହୋନ୍ତି ଗମାଗମ ।
ଲଲାଟ ପାଖୁଡ଼ା ତେଜ ଚଳିବ ବହନ ।୨୫।

ଶୂନ୍ୟରେ ପଶିବ ଯାଇଁ କେଶର ମଧ୍ୟରେ ।
ଅନନ୍ତ ଶୟନ ଜଣେ ଦେଖିବୁ ନେତ୍ରରେ ।୨୬।

ଏହି ଭବ ପାର ନଷ୍ଟେ ସୃଷ୍ଟି ବୋଲି କହି ।
ଅନାଦି ଅନାମ ନାମ ମୂଳଶୂନ୍ୟ ଦେହୀ ।୨୭।

ଏହି ଦ୍ୱାରେ ମନ ଯେବେ ନିଷ୍ଟଳେ ରହିବ ।
ଗୋଲକ ପାଟଣା ତେବେ ଅଗ୍ରେ ବିକାଶିବ ।୨୮।

ଶୋଇବା ବସିବା କିବା ଗମିବା ଠାବରେ ।
କିବା ଦିବା କିବା ରାତ୍ର ହୃଦସ୍ଥ ଆଗରେ ।୨୯।

ଏହୁ ଭାବ ଅଣସୂନ୍ଧ ଅଟଇ ପ୍ରମାଣ ।
ଏହୁ ଭାବ ଯାକୁ ଦୃଶ୍ୟ ନଷ୍ଟେ ଦାସ ଜନ । ୩୦ ।

ଅଜପା ଅକ୍ଷରେ ତତ୍ତ୍ୱଂ ଲଗିଛୁ ଭଜନ ।
ଚନ୍ଦ୍ର ସୂର୍ଯ୍ୟ ଗମାଗମ ଅଗମ୍ୟ ଭୁବନ । ୩୧ ।

ଠୁଲଶୂନ୍ୟ ପରେ ନତ୍ୟ ସ୍ୱପ ଯେ ଲଗିଛୁ ।
ଅପୁର୍ବ ପଦାର୍ଥ କେହୁ ଭାବ ନ ପାରନ୍ତ । ୩୨ ।

ଅଣସୂନ୍ଧେ କରୁଥିବ ପ୍ରଭୁଙ୍କ ଭାବନା ।
ପବନ ନିରୋଧି ଜ୍ୟୋତ ଉପରେ ଥାପନା । ୩୩ ।

ଦଶଦ୍ୱାର ବାଟ ତାର ଚଉଦ କବାଟ ।
ଯିବାକୁ ସଂକଟ ତତ୍ତ୍ୱଂ ସୂଚୀରନ୍ଧ୍ରେ ବାଟ । ୩୪ ।

ଦେବନାଶନ ବଟ ଯଉଂ ଠାବକୁ କହୁ ।
ତତ୍ତ୍ୱଂ ସହସ୍ରେକ କଟୁଆଲ ଛନ୍ତ ରହୁ । ୩୫ ।

ଷଡ଼ ଅଇଶକ ମନ ଭୂଶତେ ଛେଦବୁ ।
ଯୋଗାରୁଢ଼ ପୁରୁଷ ଯେ ନିଷ୍ଟସ୍ତେ ହୋଇବୁ । ୩୬ ।

ହରେ ରାମ କୃଷ୍ଣ ମନ୍ତ୍ର କ ଉପାମା ଦେବ ।
ବ୍ରହ୍ମାଶଙ୍କର ଯାହାଙ୍କୁ ସଦାଛନ୍ତ ଭାବ । ୩୭ ।

ଓଂକାରକୁ ଧରଣ ଯେ ଅଣସ୍ମରଣ ହର ।
ଅମନ ଶିଖରେ ମତ୍ତ-ଗଜ ବନ୍ଧୀ କର । ୩୮ ।

ଗଜକୁ ଚହ୍ନିଲେ ମନ ହରଷ ହୋଇବୁ ।
ଅମୂଲ୍ୟ ପଦାର୍ଥ ସଙ୍ଗେ ମନ ବଳାଇବୁ । ୩୯ ।

ଶ୍ୱେତ ପୀତ ଲୋହିତ ଯେ ନୀଳ ବର୍ଣ୍ଣ ସ୍ମର ।
ହାରନ୍ତ୍ର୍ୟ ବର୍ଣ୍ଣକୁ ଯେନ ପଞ୍ଚୁଆତ୍ମା ଯୋର । ୪୦ ।

ପଞ୍ଚଆତ୍ମା ଧର୍ମ ରୂପେ ତତ୍ତ୍ୱଂ ପରକାଶ ।
ହଂ ପଚରେ ଜାବନ୍ତି ସ୍ୱେକାକ୍ଷର ପୁରୁଷ । ୪୧ ।

କର୍ଣ୍ଣଗୁରୁ ଉପରେ ଯେ ଗ୍ୟାନଗୁରୁ ସାର ।
ଗୁରୁନାମ ଧରଣ ଯେ ଭବୁ ହୋଅ ପାର । ୪୨ ।

ଗୁରୁସାହ ଗୁରୁସାହ ଗୁରୁସାହ କହ ।
ଗୁରୁ ବନୁ ପିଣ୍ଡ ଆଉ ଭବୁଂପାର ନୋହ । ୪୩ ।

ହଂସାହଂସ ମହାମନ୍ତ୍ର ଜୀବର ଭଜନ ।
ଛଣେ ହେଂ ବଶ୍ରାମ ନାହଂ ଭଜେ ଦେହ ଦନ । ୪୪ ।

ସାନ ଦବସରେ ଷୋଳ ଦଣ୍ଡ ଯେ ଭଜନ ।
ଏକୋଇଶ ଶତ ଶତ ଶତ ଯେ ଭଜନ । ୪୫ ।

ଯେତେ ସଂଖ୍ୟା ଭଜନ୍ତ ଭଜନ୍ତ ବେନ ହୋଇ ।
ଦେହ ଭଜିବାକୁ ମନ ଆଉ ନଷ୍ଟ ନାହିଂ । ୪୬ ।

ନଷ୍ଟଳ ଆସନେ ବସି ଚକ୍ଷଲେ କାଟିବ ।
ଜାନୁ ଯୁଗଳରେ ବେନ ପାଣିକ ଥାପିବ । ୪୭ ।

ସଳଖି ରଖି ଷୋଳ ଡମ୍ବୁରୁ ମେରୁଦଣ୍ଡ ।
ଶିଶୁମ୍ନା ସନ୍ଧରେ ଯେ ନପଟଳ ପିଣ୍ଡ । ୪୮ ।

ଆଉ ଛଡ଼ ଆନେ ମରୁତ ବାରେଣି ଖଂଜବ ।
ଆପଣାର ନାସିକା ଅଗ୍ରକୁ ଗୃହିଂଥିବ । ୪୯ ।

ଧ୍ୟାନରେ ଭେଦବ ନାଦ ତେବେ ସିନା ଥିର ।
ନାମରୂପ ଜ୍ୟୋତରୂପ ଦେଖିବ ତହିଂର । ୫୦ ।

ଗୁରୁଶାହି ଗୁରୁଶାହି ଗୁରୁଶାହି ଶାହି ।
ଗୁରୁ ବିନୁ ମନ ଆଉ ପରଶାଣ ନାହିଂ । ୫୧ ।

କହଇ ଅଚ୍ୟୁତ ଦାସ ଏହି ଜ୍ଞନେ ରସ ।
ରସକୁ ପିଇଲେ ମନ ହୋଇବ ସନ୍ତୋଷ । ୫୨ ।

ଶୁଣ ହେ ସୁବୁଦ୍ଧି ମନ କର ଅନୁକୂଳ ।
ଗୋବିନ୍ଦ ନାମକୁ ଭୂହ କରଥିବୁ ମୂଳ । ୫୩ ।

ଦ୍ବଶଦ୍ୱାରେ ଅଜପା ଭଜନ ଲଗିଅଛୁ ।
ଚନ୍ଦ୍ରସୂର୍ଯ୍ୟ ଗମାଗମ କେହି ନ ଜାଣୁଛୁ । ୫୪ ।

ମନକୁ ନେଇଣ ଥାପ ଚତାଚକ୍ର ପରେ ।
ତେବେ ତୋ ରହିବ ମନ ପାଦପଦ୍ମଠାରେ । ୫୫ ।

ଯାଉଛୁ ଆସୁଛୁ କାହିଂ ବାରଣ ନୋହୁଛୁ ।
ଅଣାକାର ପୁରୁଷେ ଯେ କେହି ନ ଚହ୍ନୁଛୁ । ୫୬ ।

ଗୋଲହାଟ ଉପ ରଣ କାଉଂଶ୍ରି ପାଟଣା ।
ଗମି ନ ପାରଣ ତହିଂ ହେଉଛନ୍ତ ବଣା । ୫୭ ।

କଇବଲ୍ୟ ବଳା ଲଗିଛୁ ଗୋଲେକ ପୁରେ ।
ବ୍ରହ୍ମଗ୍ୟାଂନୀ ରହୁଛନ୍ତ ଲସ୍ୟରେ ସେଠାରେ । ୫୮ ।

କଳଶୀକ ଝୋଳିଣ ବେଗେ ହୋଇବୁ ପାର ।
କଳଶୀ ମିଳିଲେ ସିନା ଶାନ୍ତ ଯେ ତୋହର । ୫୯ ।

ଜଗତେ ପୁଣଅଛୁ ସର୍ବ ଘଟ ମଧ୍ୟେଣ ।
ଘଟ ଗ୍ରୁଡ଼ିଲେ ଏହୁ ପିଣ୍ଡ ହେବ ବାରଣ ।୬୦।

ଦୁର୍ଲ୍ଲଭ ଏ ନରଘଟ ଏଥୁଂ ଶ୍ରେଷ୍ଠ ନାହିଂ ।
ସର୍ବ ଜୀବ ଥିତ ନାମବ୍ରହ୍ମ ଅଛୁ ତହିଂ ।୬୧।

ବଇଷ୍ଣମ୍ବ ଦୀକ୍ଷା ନାମ ଆଶ୍ରେକଲ ଲୋକ ।
ଦୁର୍ଲ୍ଲଭ ତାର ଜୀବନ ମୁକତ ସୂଚକ ।୬୨।

ଠୁଲଶୂନ୍ୟ ପରେ ନିତ୍ୟ ସ୍ୱୀପ ଯେ ଲଗିଛୁ ।
ଅମନ ଶିଖରେ ନେଇ ଗଜକୁ ରଖିଛୁ ।୬୩।

ବଙ୍କନାଳ ଜିଣି ତୁହି ବେଗେ ଚଳିଯିବୁ ।
ଅମନ ଶିଖରେ ଯାଇଂ ଗଜକୁ ଭେଟିବୁ ।୬୪।

ହୃଚୀରନ୍ଧ୍ର ବାଟ ତହିଂ ଗୋଲୋକକୁ ଥାଇ ।
ଦେଖୁ ଦେଖୁ ମତ୍ତଗଜ ଗମନ କରଇ ।୬୫।

ଫୁଙ୍କାବନ୍ଧ ପରେ ନିତ୍ୟ ବ୍ରହ୍ମାସ ହୋଅଇ ।
ଅଗମ୍ୟ ଭୁବନ କେହି ଗମି ନ ପାରଇ ।୬୬।

ନିଶ୍ଚଳ ହୋଇଣ ମନ ତହିଂ ତୁହି ଥିବୁ ।
ଅମନ ମନ୍ଦରେ ଯାଇ ଗଜକୁ ବାନ୍ଧିବୁ ।୬୭।

ଭୂତ ପୃଥ୍ୱୀ ଆପ ତେଜ ବାୟୁ ଯେ ଆକାଶ ।
ପଞ୍ଚଭୂତ ପେନିକର ଦେହିଟି ପ୍ରକାଶ ।୬୮।

ନିଶ୍ଚଳ ଆସନେ ବସି ଚଞ୍ଚଳ କାଟିବ ।
ଜାନୁ ଯୁଗଳରେ ବେନି ପାଣିକି ଥାପିବ ।୬୯।

ସଳଖେ ରଖି ଖୋଲ ତମ୍ବୁରୁ ମେରୁଦଣ୍ଡ ।
ଶିଶୁମୁନା ସନ୍ଧିରେ ଯେ ନିପଟଳ ପିଣ୍ଡ ।୭୦।

ଆଜ୍ଞ ଛଡ଼ ସ୍ଥାନେ ବାଇ ବାଟରେଣୀ ରଂଜିବ ।
ଆପଣାର ନାସିକା ଅଗ୍ରକୁ ଦୃଷ୍ଟି ଦେବ ।୭୧।

ଧ୍ୟାନରେ ଭେଦିବ ନାଦ ତେବେ ସିନା ଯାଇ ।
ନାମରୂପ ଜ୍ୟୋତରୂପ ତୋତେ ଦୃଶ୍ୟ ହୋଇ ।୭୨।

ଓଂକାରକୁ ଧରଣ ଯେ ଅଣଚ୍ଛଣ ହର ।
ଅମନ ଶିଖରେ ମନଗଜ ବନ୍ଦୀ କର ।୭୩।

ଚକ୍ଷୁ ଥାଉଂ ଥାଉଂ ଜନେ ହେଉଛନ୍ତି ଅନ୍ଧ ।
ଚେତା ଥାଉଂ ଥାଉଂ ଜନେ ନ ବାନ୍ଧନ୍ତି ବନ୍ଧ ।୭୪।

ଶୂନ୍ୟରେ ଖେଳୁଛି ହଂସ ଶୂନ୍ୟେ ବିହରୁଛି ।
ଗଗନ ଶିଖରେ ନେଇ ଚଳାଇବୁ ମଠ ।୭୫।

ତେବେ ସେ ପରମ ଆତ୍ମା ବ୍ରହ୍ମରେ ଥିବ ।
କମଳ କେଶରେ ପଶି ମାଧୁରୀ କହିବ ।୭୬।

ଓଲଟ ଉଜାଣି ବହୁଛି ଜଗ ରୁ ଧାର ।
ପଦ୍ମ ଚହ୍ଲିଲେ କେଶର ମଧେ ବାସ ତୋର ।୭୭।

ବାରଣ ବେଳେ ରୁହ କାରଣକୁ ପାଇବୁ ।
ଓଲଟ ବୃକ୍ଷକୁ ଷେପି ବେଗେ ଚଳିଯିବୁ ।୭୮।

ଗୋଲହାଟରେ ପ୍ରଭୁଙ୍କର ଭେଟ ପାଇବୁ ।
ନାମରସ ସୁଧା ପାନରେ ଭୋଳ ହୋଇବୁ ।୭୯।

ରାଧାକୃଷ୍ଣଙ୍କୁ ରୁ ମିଳାଅ ସୁମନେ ନେଇ ।
କାଳିଆ ଭରସା ଯେ ଅଚ୍ୟୁତାନନ୍ଦ କହି ।୮୦।

ଯମ ଯନ୍ତ୍ରଣାରେ ପଡ଼ିଣ ହୋଇବୁ ମୋହ ।
ସବୁ ଅକାରଣ ହୋଇବ ଗୁର ଏ ଦେହ ।୮୧।

ଜଗି ଜାଗିଲେ ରେ ମନ ରୁ ଅବୁଝା ନୋହ ।
ତୋହୋର ଅଇଶ ଏସବୁ କରୁଛି ଷୟ ।୮୨।

କାଳିଆ ଭଜଣ ଯେ ମୁହିଂ ବୋଇଲି ବାଇ ।
କାଳିଆ ପାଦେ ଭରସା ଦୀନ ଅଚ୍ୟୁତ କହି ।୮୩।

ଜପ ତପ କେହ୍ନେ କସ ଜାଣଇ ଯେ ନାହିଂ ।
ରହୁଛି ମୁଂ ସଦା ଅନାଦ୍ୱ ପାଦରେ ଧ୍ୟାୟିଂ ।୮୪।

କହଇ ଅଚ୍ୟୁତ ଏହୁ ଦିବ୍ୟଜ୍ଞାନ ରସ ।
ରସକୁ ପାଇଲେ ମନ ହୋଇବ ସନ୍ତୋଷ ।୮୫।

ସାଧୁଜନେ ଏ ରସ ପିଇ ଉନ୍ମତ୍ତ ହେବେ ।
ଅଜ୍ଞାନ କହବେ ଏ ଗୀତେ ଅଚ୍ୟୁତ ଭବେ ।୮୬।

ଇତିଶ୍ରୀ ପରମ ଜ୍ଞାନ ଗୀତା ସଦା ଜମ୍ମେ ସଂପୂର୍ଣ୍ଣ ।



ଶ୍ରୀ ଗଣେଶାୟ ନମଃ - ଅବିଘ୍ନମସ୍ତୁ ।

## ॥ ପ୍ରଥମ ଅଧ୍ୟାୟ ॥

ରାମଚନ୍ଦ୍ରଙ୍କୁ ପାଶରେ ବସାଇ । କହଇ ଶୁଣରେ ବ୍ରଜ ତନଇ ॥
କଳିଯୁଗରେ ଏମନ୍ତ ହୋଇବ । ମହତ ପଣ କାହାର ନଥିବ ॥
ଆପଣେ ଶ୍ରୀମୁଖେ ଅନାଦି କହିଂ । ଶୁଣ ଅଚ୍ୟୁତ ବୁଦ୍ଧି ମନଦେଇ ॥
ଯାହା ଶୁଣିଲେ ଉନ୍ନତ ହୋଇବ । ଦେହରୁ କଳୁଷ ମାନ ଛାଡ଼ିବ ॥
ବହୁ କ୍ଷତ୍ରିୟ ବ୍ରହ୍ମଋଷି ଜାତି । ଶୂଦ୍ର ସହିତେ ଯେ ଅଛନ୍ତି ପୃଥ୍ୱୀ ॥
ପୃଥ୍ୱୀ ମଧ୍ୟରେ ଯେମନ୍ତେ କଟିବେ । କାହାର ଗ୍ୟାଂନ କେହି ନ ରଖିବେ ॥
ବ୍ରାହ୍ମଣମାନ ଏମନ୍ତ କରିବେ । ବେଦ ମନ୍ତ୍ରମାନ ସବୁ ଛାଡ଼ିବେ ॥
କୁକ୍ଷେତ୍ର କୁମନ୍ତ୍ର କୁଗ୍ୟାନ ଆଦି । ଏହି ପାପକୁ ରଖିବେ ସମ୍ପାଦି ॥
କ୍ଷତ୍ରିୟମାନେ ଝଗଡ଼କୁ ଛାଡ଼ିବେ । ନିଜ ବୃତ୍ତି ଛାଡ଼ି ଅମଡ଼ା ଯିବେ ॥
ଲେଞ୍ଛ ଲୋକରେ ସଭା କରୁଥିବେ । ସଭାରେ ବସି ମିଛ କହୁଥିବେ ।୧୦।
ବୈଶ୍ୟ କରିବେଟି ହୀନ ଆଚାର । ଛାଡ଼ିବେ ନିଜ କୁଳର ବେପାର ॥
ଶୂଦ୍ର ଯେ ହୀନ ଆଚର କରିବେ । ଲେଞ୍ଛକୁ ସେବ ସେ ଧନ ବାଞ୍ଛିବେ ॥
ଯେହି କଥାମାନ ହେବ ପ୍ରକାଶ । ଧ୍ରୁବ ନକ୍ଷତ୍ର ହୋଇବ ଅଦୃଶ୍ୟ ॥
ମୁକୁନ୍ଦ ଦେବ ନୃପତି ଅଙ୍କରେ । କଳି କରତ ଦେଖିବୁ ସଂସାରେ ॥
ସୁବା ମରହଟ୍ଟା ଥିବେଟି ହୋଇଂ । ପ୍ରଜାଙ୍କୁ ମାଡ଼ ମରାଇବେ ସେହି ॥
ମାଡ଼ ମରାଇ କର ଛାଡ଼ି ଦେବ । ହାନି ଲଭ ଦୁଇ ଯେତେକ ମଣିବ ॥
ଦୁଇ ପାଦ ସତ୍ୟ ଥିବ ପୃଥ୍ୱୀରେ । କଳ୍ପିତ ଦସ୍ୟୁ ସେ ଥିବ ପୃଥ୍ୱୀରେ ॥
ସତର ଅଙ୍କରେ ବତାସ ହେବ । ବଳି ପ୍ରବଳ ଦୁର୍ଭିକ୍ଷ ହୋଇବ ॥
ଗଙ୍ଗା କଟକାଇ କରିବ ସେହି । ସେହି ନୃପତି ଚ୍ଛିନ୍ନ ଅଟଇ ॥
ତାହାର ବାଇଶ ଅଙ୍କରେ ପୁଣ । ଗୋଲକୁଣ୍ଡା ରାଜା ହୋଇବ ପୁଣ ।୨୦।
ସେଠାରୁ ଧର୍ମ ପାଦେ ତୁଟିଯିବ । ନକ୍ଷତ୍ର ଲମ୍ବା ସ୍ୱର୍ଗରେ ପଡ଼ିବ ॥
ପୃଥିବୀ ହୋଇବ ସେ ଖଳବଳ । ମାଧବେ ଦମନ ଭାଙ୍ଗିବେ ଗୋଳ ॥
ମୁକୁନ୍ଦ ସେଠାରେ ଧରା ହୋଇବ । ଦମନ କଏଦ କରି ରଖିବ ॥
ଦମନ ଝଂପାଇଂ ପୁରେ ପଶିବେ । କଟକ ଗାଦି ମାଡ଼ିଣ ବସିବେ ॥
ନୃପତି ପାବୁଣେ ପ୍ରାଣ ହାରିବେ । ରାଜା ତେଜମାନ ସବୁ ଲଭିବେ ॥

ପାଳିବେ ସକଳ ଜନ ପରଜା । ମୁଗଲ ହୋଇବେ ଦେଶରେ ରାଜା ।।
ଶୁଣ ରାମଚନ୍ଦ୍ର କହୁଛୁ ମୁହିଂ । ମୋତେ କହିଥିଲେ ନିତ୍ୟ ଗୋସାଇଂ ।।
ରାମଚନ୍ଦ୍ର ସ୍ନେହେ କହିବା ତୋତେ । କାହିଂ ନ କହିବୁ ରହି ଗୁପତେ ।।
ଚନ୍ଦ୍ରାଙ୍ଗୀ ତଟରେ ମାହାଳ ମୂଳେ । ଦେଖିବା ଲୀଳା ଦୋହେଂ କୁତୂହଳେ ।।
ଶୁଣି ରାମଚନ୍ଦ୍ର ପଡ଼ିଲା ପାଦ । ଆଉ ରହିଲା ମୋ ମନେ ବିଷାଦ ।୩୦।
ଆଉ ଅଧିକ କି ହେଲା ଗୋସାଇଂ । ମନରୁ ସଂଶୟ ମୋର ନ ଯାଇ ।।
ରାମଚନ୍ଦ୍ର ବୋଲେ ମାହାଳ ମୂଳେ । ଲୀଳା ଦେଖିବାଟି ସେ ନେତ୍ର ତୋଳେ ।।
ଚନ୍ଦ୍ରାଙ୍ଗୀ ନଦୀର ଉତ୍ତର କୂଳେ । ବଡଶ ନିବାସ ମୋର ନିରେଳେ ।।
ତେର ନିବାସ ମୋ ପ୍ରକାଶ ହେବ । ଊନବିଂଶ ମୋ ଗୁପ୍ତେ ରହିଥିବ ।।
ଶୁଣି ରାମଚନ୍ଦ୍ର ପାଦେ ପଡ଼ିଲ । ସ୍ଥାନମାନଙ୍କୁ କହିବା ଗୋସାଇଂ ।।
କଦମ୍ବ ମାହାଳ ତେନ୍ତୁଳି ମୂଳେ । ନିବାସ ପ୍ରକାଶ ହେବ ସେହି ସ୍ଥଳେ ।।
ପଦ୍ମ ପିପ୍ପଳ ସେ ବଟର ମୂଳେ । ଚନ୍ଦ୍ରାଙ୍ଗୀ ନଦୀର ଉତ୍ତର କୂଳେ ।।
ମାଧବୀ ମାଳତୀ ଲତାରେ ପୁଣ । ମୋ ବାସ ଅଟଇ ତହିଂ ନିର୍ମାଣ ।।
ବେଲ ସହାଡ଼ା ଯେ କେନ୍ଦୁର ମୂଳେ । ଚନ୍ଦ୍ରାଙ୍ଗୀ ନଦୀର ଦକ୍ଷିଣ କୂଳେ ।।
ପାଳଧୂଆ ମୂଳେ ବାସ ମୋ ଅଛୁ । ପାପିଦ୍ୱୀପକୁ ଯେ ଦୃଷ୍ଟି ରହିଛୁ ।୪୦।
ଅହୁର ପ୍ରକାଶ ହୋଇବ ବଟ । ଦେବୀ ନଦୀକୂଳ ଦକ୍ଷିଣ ତଟ ।।
ରାମଚନ୍ଦ୍ର ବୋଲେ ଶୁଣିମା ହେଉ । ଗୁପତ ପ୍ରକାଶ ନୋହିଲା ଆଉ ।।
ପ୍ରକାଶ ଆହୁର କହିବା ତୋତେ । ଖଣ୍ଡଗିରି ସୀମା ଅଛନ୍ତି ଯେତେ ।।
ଖଣ୍ଡଗିରିକି ନିଜ ଧାମ କଲେ । ନୀଳାଚଳରେ ହାଟ ବସାଇଲେ ।।
ଧଉଳିଗିରିରେ ନିଜ ଆଶ୍ରମ । ସେଠାରେ ଲଗିଛି ନୀଳସ୍ତମ୍ଭମାନ ।।
ରାମଚନ୍ଦ୍ରଙ୍କୁ ପାଶରେ ବସାଇ । କହନ୍ତି ଆଗତ ଭବିଷ୍ୟ ଫେଇ ।।
ଶୁଣ ହେ ରାମ କହିଦେବା ତୋତେ । ଆବର ଗୁପତ ଅଛଇ ଯେତେ ।।
ରାମଚନ୍ଦ୍ର ରାଜା ତିନ ଅଙ୍କରେ । ପାପ ଘୋଟିବ ସେ ତିନ ପାଦରେ ।।
* ଫିରିଙ୍ଗୀ ଓଡ଼ିଶା ସାଧ୍ୟ କରିବ । ଠାବେ ଠାବେ ବାଟ ଘାଟ ଜଗିବ ।।
କହିତରେ ଦସ୍ୟୁ ପଣ କରିବ । ଜନମାନଙ୍କୁ କାହିଁ ସୁଖ ଦେବ ।୫୦।
ଅଠ ଅଙ୍କରେ ଖୋରଧା-ଗଡ଼ରେ । ଲୁଟି କରିବ ତ ବାହୁ ବଳରେ ।।

* ଏହା ପ୍ରକ୍ଷିପ୍ତ ମନେହୁଏ ।

ପୁଣି କିଛି ଦିନେ ସ୍ୱେମନ୍ତ ହେବ । ଗଙ୍ଗା କଟକାଇ ସେହୁ କରିବ ॥
ନଅଙ୍କ ଅଠର ଅଙ୍କରେ ହୋ ଜାଏ । କାନ୍ତାର ପଡ଼ିବ ଓଡ଼ିଶା ଜାଣ ॥
ଓଡ଼ିଶା ନଷ୍ଟ ଭ୍ରଷ୍ଟ ହୋଇଯିବ । ଂମାର ବିନାଶ ମାତ୍ର ରହିଥିବ ॥
ତଦ୍ଧଂ କାଷ୍ଟରେ କ୍ଳେଶ ପାଇଥିବେ । ଚବିଶରେ ଥୋକେ ଉପୁଜି ଯିବେ ॥
ଅଠାଇଶରେ ଅଠାଇଶ ହେବ । ଅଜସ୍ତୁଗଡ଼ ଯେ ଜସ୍ତ ହୋଇବ ॥
ଫିରଙ୍ଗୀ ତଦ୍ଧଂରେ ନାଶ ପାଇବ । ଦେବତା ବ୍ରାହ୍ମଣ କଲ୍ୟାଣ ନେବ ॥
ତଦ୍ଧଂ କିଛୁ ଦିନେ ହେବ ଉଶ୍ୱାସ । ମନଷ୍ୟମାନେ କରିବେ ବିଶ୍ୱାସ ॥
ଶୂର ପାଞ୍ଚରେ ନୃପତି ଚଳିବ । ବୀରକିଶୋର ଆସି ଉଦେ ହେବ ॥
ତାର ନଥିବ ବଳ ପରାକର୍ମ । ବ୍ୟାଧି ବନ୍ତରେ ସେହୁ ନେବ ଦିନ ।୬୦।
ପରଜାମାନେ ମୋହା ସୁଖେ ଥିବେ । ଦୁଃଖରେ ପୁଣ ଆରତ ହୋଇବେ ॥
ଛଡ଼ ବରଷ ନୃପତି ପାଳିବ । ସେଠାରେ ପାଟ ବିଶୋଧନ ହେବ ॥
ପୁଣି ଦିବ୍ୟସିଂହ ଦେବ ଉଦିତ । ସଂସାରେ ତା ନାମ ହେବ ବିଖ୍ୟାତ ॥
ତାହା ପ୍ରଥମେ ପ୍ରଭୁ ଚଳିଯିବେ । ଯାଜନଗରୁ ବିରଜା ଆସିବେ ॥
ସାରଦା ମଙ୍ଗଳା ବିରଜା ତିନ । ବିମଳା ସହିତେ ସ୍ୱର ଭଏଣୀ ॥
ସୃଚକାଇ ହାତେ ଖପର ଦେବେ । କାଳିକା ତା ସଙ୍ଗେ ମେଳାଣି ହେବେ ॥
ଉତ୍କଳ ଦେଶ ଉଜାଡ଼ ହୋଇବ । ଝଙ୍କଡ଼ରେ ସବୁ ଗୋଷ୍ଠୀ କରିବ ॥
ପ୍ରଭୁ ଗୋପ୍ୟାନରେ ଥିବେଟି ରହି । ସେ ଦିନୁଂ ଦେବୀ ପ୍ରବଳଟି ହୋଇ ॥
ମାଜନଗରେ ପ୍ରଭୁ ଜନ୍ମ ହେବେ । ଜନମ ହୋଇବେ ବ୍ରାହ୍ମଣ ଭାବେ ॥
ପିତା ଗଙ୍ଗାଧର ମାତା ସୁଶୀଳା ।ଭଗତ ଭାବରେ ଥିବେ ସେ ଭୋଳା ।୭୦।
ବାଳକ ଲୀଳା ସେ ତାହାର ଘରେ । ଲୀଳା କରିବେ ସେ ସାଧୁ ସଙ୍ଗରେ ॥
କେହି ନ ଜାଣି ଗୁପ୍ତ ହୋଇଥିବେ । କଳି ଘୋରକୁ କଳଣା କରିବେ ॥
ଗୁପ୍ତଭାବେ ସ୍ୱେକ ଭଜାଏ ମିଳି । ଦେଖିଣ ଜନେ ନ ପାରିବେ କଳି ॥
ବଇଦର୍ଶୀଠାରୁ ଜଳ ଝିଣ ଯାସ୍ୱେ । ବୀର ଅଙ୍କଟି ସେହୁ ଯେ ବୋଲାଏ ॥
ସ୍ୱେତେକ ଭୂମି ପ୍ରଭୁ ଫେରୁଥିବେ । ଗୁପତ ଭାବେ ଆପଣେ ରହିବେ ॥
ଭଗତମାନେ ମୋର ବୁଲୁଥିବେ । ଦୁଃଖିତରେ ଥାଇ ଦିନ କାଟିବେ ॥
ନବ ଅଙ୍କରେ ଯେ ହେବ କାନ୍ତାର । ଫିରଙ୍ଗୀ ଧର୍ମ ସେଠାରେ ଅର୍ଜିବ ॥
ମାହାଦୁଷ୍ଟା ହେବେ ଯେ ଜମିଦାର । ଫିରଙ୍ଗୀ ସେଠାଇଂ ଗୁଡ଼ିବ କର ॥
ମାହା ବ୍ୟାକୁଳ ପୃଥିବୀ ହୋଇବ । ଜାତି କୁଳଗୋତ୍ର କିଛି ନଥିବ ॥
ସ୍ତ୍ରୀମାନେ ଅତି ପ୍ରବଳ ହେବେ । ଶାଶୁ ଶଶୁର ସ୍ୱାମୀ ନ ମାନିବେ ।୮୦।

ଖାଇବେ ଅଖାଦ୍ୟ ମନୁଷ୍ୟମାନେ । ମରିବେ ଥୋକେ ହୋ'ଇଣ ଅଗ୍ୟାଂନେ ।।
ଦଶ ଅଙ୍ଗରେ ହୋଇବଟି ବଢ଼ି । ଘରୁଅମାନେ ଯିବେଟି ଉପୁଡ଼ି ।।
ଅଣଘରୁଆ ଯେ ଘରୁଆ ହେବେ । ନିଧନମାନେ ଧନୀ ବୋଲାଇବେ ।।
ଧାନ ଗଣ୍ଡିକ ମଣାଏ ସୁନା । ବକ ଖାଇବେ ସେ ପୁଚୁଣା କନା ।।
କୁଳ ସ୍ତ୍ରୀମାନେ ବଟପୀ ହେବେ । ଯଉବନ ବିକି ପେଟ ପୋଷିବେ ।।
ଲାଜ ସକୁଞ୍ଚ ସବୁ ଦୂର ହେବ । ଜାତି କୁଳ ଧର୍ମ କିଛି ନ ଥିବ ।।
ସୁବା କରିବ ଅନ୍ତ୍ରୀ ଚନ୍ଦ ଦାନ । କାହାରି ତହିଂ ନ ହେବ ଜ୍ଞାନ ।।
ତେର ପଣ ପାପ କରିବ ମେଳା । ସାଧୁମାନଙ୍କର ବୁଡ଼ିବ ଭେଳା ।।
ଥୋକେ ଲୋକ ତହିଂ ବାଇ ହୋଇବେ । ଥୋକେ ଦେଶାନ୍ତର ହୋଇଣ ଯିବେ ।।
ଗୋରୁ ବଧ ବ୍ରହ୍ମ ବଧ ହୋଇବ । ପାପକୁ କାହାରି ଭୟେ ନ ଥିବ ।୯୦।
ପାପ ଭାରହେବ ଦେହ ଦନରେ । ଶୂନ୍ୟ ଶବଦ ଶୁଭିବ ଶୂନ୍ୟରେ ।।
ଭଗତମାନେ ମୋର ବୁଲୁଥିବେ । ଦୁଃଖିତରେ ଥାଇ ସେବା ଦେଖିବେ ।।
ଥୋକାଏ ତହିଂ ହୋଇବେ ଯେ ବୈର । ଥୋକେ ଲୋକେ ତହିଂ ବାନ୍ଧିବେ ଘର ।।
ସ୍ତ୍ରୀଙ୍କ ସ୍ତ୍ରୀ ରମଣ କରିବେ । ମାନତି ଗଢ଼େବ ନ ମାନିବେ ।।
ଭାଇ ଭଉଣୀରେ ହୋଇବ ପ୍ରୀତି । ଖୁଡ଼ାଇ ଝିଅରି ହୋଇବେ ରତି ।।
ଘର ଘରଣୀକି ନେବଟି ପର । ପରକୁ ଦେଇଣ କରିବେ ଘର ।।
ଅନାଦି ଏକଥା କହିଲେ ମୋତେ । ଥୋକାଏ କଥା ରହିଲା ଗୁପତେ ।।
ଗୁପତ ପ୍ରକଟ ନୁହଇଂ ବାବୁ । ପ୍ରକାଶ କଲେ ଅପ୍ରାଧ ପାଇବୁ ।।
ଏକା ଅକ୍ଷରକୁ କର ଭାବନା । ନାନା ଜନ୍ମମାନ ତୁଟିବ ସିନା ।।
ଓଡ଼ିଶା ମଧ୍ୟେ ତିନିଶତ ବାର । ଯେତେକ ଜାଣିବେ ଏକାଅକ୍ଷର ।୧୦୦।
ଏତେକ ଭକ୍ତ ମୋହୋର ଅଛନ୍ତି । ଅନାଦି କହିଲେ ଶୁଣ ଅଚ୍ୟୁତ ।।
ନୀଳ କନ୍ଦରେ ଅଛନ୍ତି ସତର । ତହିଂ ସେ ଜାଣନ୍ତି ଏକା ଅକ୍ଷର ।।
ଅଠର ନଳା ତିନ ଭକ୍ତ ସ୍ଥିତି । ମାଧବ ସୁଦାମ ଅପର୍ତ୍ତି ସ୍ଥିତି ।।
ତେନ୍ତୁଳି ପଦାରେ ଅଛନ୍ତି ସାତ । ଖଣ୍ଡଗିରିରେ ହୋଇବେ ବିଖ୍ୟାତ ।।
ଖଣ୍ଡଗିରି ଅଟେ ସେ ବିଷ୍ଣୁ କୂଟ । ତହିଂରେ ମୁଂ ପୁଣି ବାନ୍ଧିବି ପାଟ ।।
କାଠଯୋଡ଼ି କୂଳେ ଦେବା ଅଛନ୍ତି । ତେରଜଣ ତହିଂ ହୋଇବେ ଖ୍ୟାତ ।।
କଟକରେ ମୋର ଭଗତ ଛନ୍ତି । ବାଇଶି ପଣ ସେ ତହିଂରେ ଖ୍ୟାତ ।।

ଧଉଳଗିରି ଯେ ଛନ୍ତି ସ୍ୱେଗାର । ସେହି ଦେଖିବେ ସ୍ୱେ କଳି ଚେଷ୍ଟର ॥
ଛତଆ ଗ୍ରାମରେ ଛଡ଼ ଅଛନ୍ତି । ଚମ୍ପାପୁରେ ଦୁଇ ଭଗତ ସ୍ଥିତ ॥
ବରୁପା କୂଳରେ ଅଛନ୍ତି ଯେତେ । ତାହା ବର୍ଣ୍ଣି ଅବା କହିବ କେତେ ।୧୧୦।
ଆହୁରି ଅଛନ୍ତି ଶୃଣରେ ଗ୍ରାମ । ଫକୀର ବୋଲି ଭକ୍ତ ଅଟେ ଟାଣ ॥
ବାସ୍ତା ବାତୁଳ ପଶ୍ଚିମେ ବେଶର । ପିତାର ସେହୁ ଯେ ପାନ କୁମର ॥
ତା ଭାବ ଦେଖି ମୁଂ ବଡ଼ ଆନନ୍ଦ । ଦୋଷ କଲେ ତାର ଖଣ୍ଡେ ଅପ୍ରାଧ ॥
ତାହାର ସେଠାରେ ବଡ଼.ଇ ମନ । ନିତ୍ୟରେ ମୋତେ କରଇ ଦ୍ରଶନ ॥
ମୃଣ୍ଡିଲ ବୋଲିଣ ଏକଇ ଗ୍ରାମ । ମାଗୁଣିର ଭକ୍ତ ଅଟେ ପ୍ରଧାନ ॥
ସବୁ କୂଳରେ ସେ ଜନମ ହୋଇ । ମୋର ଗ୍ରହାସ ଦେଖୁଥିବ ରହି ॥
ପଞ୍ଚୁଗିରିରେ ଭକ୍ତ ଛନ୍ତି ରହି । ତାହାଙ୍କ ସମାନେ ନାହାନ୍ତି କେହି ॥
ଇନ୍ଦ୍ର ପୁରରେ ଗୋବିନ୍ଦ ଭଗତ । କେହି ନଜାଣନ୍ତି ଅତି ଗୁପତ ॥
ରାମବାଗରେ ଦୁଇ ଭକ୍ତ ଛନ୍ତି । ତେର ଜଣ ସଙ୍ଗେ ବେହାର ନିତି ॥
ଓଲାଭରେ ଭକତ ଯେତେ ଛନ୍ତି । ତହିଂରେ ପ୍ରଧାନ ସୁଦାମ ତନ୍ତ୍ରୀ ।୧୨୦।
ତନ୍ତ୍ରୀ କୂଳରେ ସେ ଜନମ ହୋଇ । ଜ୍ୟୋତି ଜାଳି ମୋତେ ନିତି ଦେଖଇ ॥
ଆପଣେ କହିଲେ ଅନାଦି ମୋତେ । ତୋ ଅଗେ ରାମ କହିଲି କହିତେ ॥
କାହିଂ ନ କହିବୁ ଗୁପତ କରି । ନିତ୍ୟରେ ଚରଣ ଛୁଅଂ ମୋହୋର ॥
ଶୁଣି ରାମଚନ୍ଦ୍ର ବଚନ କହି । ସଂଶୟ କିଛି ରହିଲା ଗୋସାଇଂ ॥
ସୁବା ରାଜାଙ୍କର କଥା ରହିଲା । ସ୍ୱେଶ୍ୱ ମୋ ମନେ ସଂଶୟ ଲାଗିଲା ॥
ତାହା ଶୁଣି ଗୁରୁ କହନ୍ତି ଧୀରେ । ଶୁଣ ରାମଚନ୍ଦ୍ର ହେତୁ ମତିରେ ॥
ତେର ଦିନେ ପକ୍ଷ ହୋଇବ ବାବୁ । ସେ ଦିନ ତୋର କଳଙ୍କ ଜାଣିବୁ ॥
ଦିବ୍ୟସିଂହ ଦେବ ସତର ଅଙ୍କରେ । ସତ କିଛି ବାବୁ ହେବ ସଂସାରେ ॥
ଭାଗବତ ଗୋଷ୍ଠୀ କରି ବନ୍ଦନେ । ଥୋକେ ମାତିବେ ସେହୁ ବ୍ରହ୍ମଜ୍ଞାନେ ॥
କେତେ ବୃକ୍ଷେ ହୁଙ୍କା ଉଦିତ ହେବ । ଯଉଂଠାରେ ମୋର ବାସନା ଥିବ ।୧୩୦।
ବାସ ଥିଲା ଲୋକେ ବାସି ଉଠିବେ । ଅବାସନା ଲୋକ କାହିଁଂ ବାସିବେ ॥
ଥୋକେ ଲୋକ ମୋର ଖେଳେ ପଶିବେ । ବାଇଆ ବାତୁଳା ହୋଇ ବୁଲିବେ ॥
ପୁଣି କିଛି ଦିନେ ସ୍ୱେମନ୍ତ ହେବ । ମୋର କୋଠଘର ମୁକୁଳା ହେବ ॥
ଭଣ୍ଡାର ଘରୁ ଗ୍ରନ୍ଥ ଫେଇ ନେବେ । ପଦ ପଦାବଳୀ ଉଜାଡ଼ି ଦେବେ ॥
ପାତରୁ ସତାଇଶ ମାସେ ପୁଣ । ସୁବା କର ବାନ୍ଧି ନେବଟି ଜାଣ ॥

ଛତିଶ ପ୍ରକାରେ କର ବାନ୍ଧିବ । ପ୍ରଜା ଗୁହାରି କେହି ନ ଶୁଣିବ ॥
ଓଡ଼ିଶା ଲୋକେ ନଷ୍ଟ ଭ୍ରଷ୍ଟ ହେବେ । ସୁବା ସଙ୍ଗତରେ ଥୋକେ ମିଳିବେ ॥
ଘୋର କନ୍ଦଳ ତବଣରେ ହେବ । କାହାରି ଗ୍ୟାଂନ ତହିଂ ନ ରହିବ ॥
ଆସିବେ ଦମନ ନାଶିବେ ବଳ । ଧାନ ଗ୍ରୁଡ଼ି ବିକାହେବ ଗୃଢ଼ଳ ॥
ମଉ ଗଞ୍ଜପଣ ହୋଇବ ତହିଂ । ଯାଣ ବ୍ରାହ୍ମଣ ସେ ବାରଣ ନୋହି ।୧୪୦।
ଅଠାଇଶିରେ ଅଠା ଲାଗିଯିବ । ତେଣାରେ ଲାଗିଲେ କାହିଁଂ ଉଡ଼ିବ ॥
ତେଇଶ ଯାଇ ଚବଶରେ ପୁଣି । ଉତ୍ତରୁ ସାଧିବେ ମୁଗଲ ପଠାଣ ॥
ପାପ ପୁଣ୍ୟକୁ ସେ ନଥିବ ଆଶ । ପିତା ପୁତ୍ରରେ ନଥିବ ବିଶ୍ୱାସ ॥
ଅଣତିଶରେ ନୃପତି ହତ ହେବ । କୁଳ ଆଚାର ସେଠାରୁ ତୁଟିବ ॥
ହୀନଲୋକ ପୁଣି ହୋଇବ ରାଜା । ନାନା କର୍ମ୍ମ ହୋଇବେ ପରଜା ॥
ଗୋବଧ ବ୍ରହ୍ମବଧ ତହିଂ ହେବ । ସ୍ତ୍ରୀ ବାଳକ ବାରଣ ନଯିବ ॥
ଯତି ସତୀ କେହୁ ରହିବେ ନାହିଂ । ମୋର ଭକ୍ତ ଥିବେ ଆନନ୍ଦହୋଇ ॥
ଦେଖି ନଦୀକୂଳେ ଲାଗିବ ଗୋଳ । କନକ ଦେଖି ପାଡ଼ିବ ଚହଳ ॥
କାକଟ ପୁରଆ ଆସିବ ବାହି । କେତେ ମୋଡ଼ିବ ତା କଳଣା ନାହିଂ ॥
ଝଣ୍ଟିରିଙ୍କ ଶବଦ ଶୁଭିବ । ରଣସିଙ୍ଗା ତହିଂ ବାହାର ହେବ ।୧୫୦।
ପୃଥ୍ୱୀ ଦଳିବ ତାଉଆ ମାଟି । ଯାଜପୁରେ ଯିବ ବସୁଧା ଫାଟି ॥
ତହିଂ ବିରଜା ଜଗିଣ ବସିବ । ପଳାଇଗଲେ ଦଶାବଳ ଦେବ ॥
ମୋହିନୀ ଭଇରବୀ ସେଠାରେ ଥିବେ । ଏକାକ୍ଷର ମନ୍ତ୍ର ସେହି ପୁଚ୍ଛିବେ ॥
ଗାଇତ୍ରୀ ସାବିତ୍ରୀ ହରି ନାମକୁ । ଯେହୁ କହିବ ଗ୍ରୁଡ଼ିଦେବେ ତାକୁ ॥
ଥେଣ୍ଟ ଗଣ୍ଡିଆ ଧୋକାସ୍ତେ ମରିବେ । ଗାଲୁଆ ମାଲୁଆ ବଳି ହୋଇବେ ॥
ସତ ଭଗତ ପଡ଼ିଯିବେ ଧରି । ତାଙ୍କ ବୋଧରେ ପୂରିବ ଝପରି ॥
ଅଷ୍ଟଚଣ୍ଡୀଯାକ ମେଳ ହୋଇବେ । କନ୍ଦ ବିକନ୍ଦ ଖୋଜିଣ ବୁଲିବେ ॥
ଯେଦିନୁଂ ଅନ୍ଧାର ହେବ ତିନ ଦିନ । ଚଇତ୍ର ପୂର୍ଣ୍ଣିମୀକୁ ନୋହିବ ଜହ୍ନ ॥
ତିନ ବରଷ ଗୋଲକୁଣ୍ଡା ହେବ । ଦକ୍ଷିଣୁଂ ନୃପତି ପୁଣି ଆସିବ ॥
ତାର ନାମ ଗୋଟି ଗୁପତ ଥିବ । ରାଜା ହେବାର କେହି ନ ଜାଣିବ ।୧୬୦।
ହୀନ ଆଚାର ଦେଖିଣ ତା ଠାରେ । ଅନାଦି ଦୟା କରିବେ ସେଠାରେ ॥
ଦିବ୍ୟସିଂହର ଅଙ୍କ ଚଳୁଥିବ । ରାଜା ବାତୁଳ ଅଛିହିଂ ବୋଲିବ ॥
ବତିଶଠାରୁ ଛତିଶର ଯାଏ । କିଛି ଉଶ୍ୱାସ ହେବ ବସୁଧାଏ ॥

ପୃଥ୍ୱୀ ଅଧିପତି ନୋହିବେଟି କେହି । ମ୍ଳେଚ୍ଛା ଦମନ ସାଧୁଥିବ ମହୀ ॥
ଅଣତ୍ରିଳଣେ ବଳଦେବ ତହିଁ । ରନ୍ଧ୍ର ଗ୍ରୁଢ଼ିବେ ଖଣ୍ଡଗିରି ଠାଇଁ ॥
ଯେ ରନ୍ଧ୍ର ଘାତେ ବ୍ରହ୍ମାଣ୍ଡ କମ୍ପିବ । ସୁବା ହେଠାରୁ ଗ୍ରୁଢ଼ି ପଳାଇବ ॥
ସିବ ସିଶଙ୍ଗୀ ଜମ୍ବୁ ନଦୀ ବାଟେ । ଥୋକେ ମରିବେ ମାହାନଦୀ ଘାଟେ ॥
ସହିଁ ବଳଦେବ ଡାକିବେ ଅଂଶେ । ଥୋକେ ମରିବେ ଯୋବସ୍ର ନିକଟେ ॥
ଥୋକେ ପଳାଇ ଯିବେଟି ବାହାର । ଥୋକେ ମରିବେ ଯାଇ ଖଣ୍ଡଗିରି ॥
ଅନାଦି ସ୍ମେମନ୍ତ୍ର ଭ୍ୟାଇବ ବାରୁ । ଏକଚ୍ଛିଳଣେ ଥିରହେବ ସବୁ ।୧୭୦।
ସେଠାରୁ କିଛି ସତ ଉପୁଜିବ । ମାହାଦୋର ଭରି ଉଶ୍ୱାସ ହେବ ॥
ତହୁଁ ଅନାଦି ପ୍ରାଚୀନଦୀ ତଟେ । ଖେଳିବେ ସପ୍ତଋଷିଙ୍କ ନିକଟେ ॥
ରାମଚନ୍ଦ୍ର କହେ ଶୁଣିମା ହୋଉ । ସଂଶୟ ମୋ ମନେ ରହିଲା ଅଉ ॥
ଆଉ ଭକ୍ତ କଉଂଠାରେ ଅଛନ୍ତି । କହିଦେବା ଶୁଣ ତହିଁର ସ୍ଥିତି ॥
ସେ କଥା ବୁଝାଇ କହିବା ଭବେ । ଗୁପତ ନ କର ମୋଠାରେ ଲବେ ॥
ଶୁଣି ଅଚ୍ୟୁତ କହନ୍ତି ବୁଝାଇ । ସେ କଥା ରାମ ଶୁଣ ମନଦେଇ ॥
କାହିଁ ନଦୀକୂଳେ ଜନମ ହେବେ । ଆପଣା ସୁଖରେ ବିହରୁ ଥିବେ ॥
ପଞ୍ଚୁସଖା ଭକ୍ତ ସଙ୍ଗରେ ଘେନ । ଭର୍ଥ ଖଣ୍ଡରେ ବୁଲିବେ ଅବନୀ ॥
ପଳହାଳଣା ଗ୍ରାମେ ବାସକରି । ଚମ୍ପାପଡ଼ାରେ ଥିବେଟି ବିହରି ॥
ଖଣ୍ଡିଶୀରେ ଭକ୍ତ ଅଛନ୍ତି ତେର । ତିନି ଜଣ ତହିଁ ମଧ୍ୟରେ ସାର ।୧୮ ।
ନବୀନ ବୀରସିଂହ ହରିଦାସ । ତାଙ୍କ ସଙ୍ଗେ ଖେଳ ହେବ ଅବଶ୍ୟ ॥
କାନ୍ଦୁଅ ପଡ଼ାରେ ଦୁଇ ଭକ୍ତ ଛନ୍ତି । ତାଙ୍କ ନାମରେ କିଛି ହେବ ଖ୍ୟାତି ॥
ବଳଦେବ ଭାକ୍ତ ଦସ୍ତା କରିବେ । ନାମ ଭଜନେ ଜଗତ ତାରିବେ ॥
ଲହା ଖଣ୍ଡରେ ଥିବେ ଯେ ସତର । ସତର ଭକ୍ତ ଯେ ଢଳନପୁର ॥
ସେଠାରେ ଅଛି ଯେ ସ୍ତ୍ରୋଅନା ଗାଈ । ଦିନେ କ୍ଷୀର ତହିଁ ବହିବ ନଈ ॥
ତହିଁ ନିକଟେ ମ୍ଳେଚ୍ଛ ବଟ ଥିବ । ପଞ୍ଚୁସଖା ତହିଁ ମେଳଣ ହେବ ॥
କଳାବୁଦାରେ ମ୍ଳେଚ୍ଛ ଭକ୍ତ ବାସ । ତହିଁଂରେ ଭକ୍ତ ସେ ଗୋପାଳ ଦାସ ॥
ଗୁଡ଼ିଆ କୁଳରେ ଜନମ ହୋଇ । ଦୁଃଖିତ ଭବେ ସେ ନାମ ଘୋଷଇ ॥
ଦିବ୍ୟସିଂହ ଦେବ ତାର ଅଙ୍କରେ । କଳି ହପୁଜିବ ଇଛାପୁରରେ ॥
ରାମ ଗୋବିନ୍ଦ ଭକ୍ତ ଥିବେ ରହି । ଅନନ୍ତ ଆଛେ ସଦାକାଳେ ସେହି ।୧୯୦।
ଅନନ୍ତ ବାସନା ନଷ୍ଟ ତିନି ଅଛି । କଳିଯୁଗରେ ଉଦିତ ହୋଇଛି ॥

ସେ ଦେବ ତହୁଂ ଯେ ନର୍ତ୍ତ୍ୟ ଗ୍ରହ୍ୱାସ । ମଧ ବଟ ଗୋଟି ବାସିବ ବାସ ॥
ମଧୁ ସାଗର ପୂର୍ବ ନେ ଦଗରେ । ବଟ ନାମ ଖ୍ୟାତ ଅସୁରଗୃରେ ॥
ତାର ପାରୁଶେ ଯେତେ ଭକ୍ତ ଜନ । ଶଠ ଗଣ୍ଡିଆ ଥିବେ ତେରଜଣ ॥
ମଧୁସାଗର ଗୁପ୍ତ ହୋଇଯିବ । ଅନନ୍ତ କେଶଘ ପ୍ରକାଶ ହେବ ॥
ଢ଼ୋ ଗ୍ରାମରେ ଆମ୍ର ନବ ଗଛ । ଅନନ୍ତ ଲୀଳା କରିବେ ପ୍ରତ୍ୟଛ ॥
ଗୃପ୍ତ ନ୍ହାସ ସେହିଠାବେ ହେବ । ସେହି ଲୀଳାକୁ କେହି ନ ଜାଣିବ ॥
ଅଜଗର ସର୍ପ ସେଠାରେ ଥିବେ । ତହୁଂ ବଳଦେବ ଗୁପତେ ଥିବେ ॥
ଔଡ୍ର ରାଷ୍ଟ୍ର ମଧ୍ୟେ କରିବେ ଖେଳ । ସାଧୁ ସନ୍ଥଙ୍କର ହୋଇବ ମେଳ ॥
ସ୍ୱେକାକ୍ଷର ଭାବେ ଯେ ଅବା ଥିବେ । ଶେଷଦେବଙ୍କର ଲୀଳା ଦେଖିବେ ।୨୦୦।
ବୋଲନ୍ତ ରାମ ଶୁଣିମା ଗୋସାଇଂ । ଭଗତମାନ କହିବା ବୁଝାଇ ॥
ତ୍ରିଗୁଣ ଭକ୍ତ କେତେକ ହୋଇବେ । ନିର୍ଗୁଣ ଖେଳରେ କେତେକ ଥିବେ ॥
ଶୁଣହେ ରାମ କହିଦେବା ତୋତେ । କାହିଂ ନକହିବୁ ରଖ ଗୁପତେ ॥
ଓଲକଣା ଯେ ଅଟେ ସିଦ୍ଧ ସ୍ଥାନ । କାହ୍ନୁ ଭଗତ ତହୁଂରେ ପ୍ରଧାନ ॥
ବେନୁ ଭଗତ ସ୍ୱେକା ମୋର ଥିବ । ଶୂଦ୍ର କୁଳରେ ସେ ଜନମ ହେବ ॥
ସ୍ୱେକାକ୍ଷର ଭେଦ ଜାଣିମ ସେହି । କଛୁ ଦନେ ପୁଣ ଖେଳିବ ମହୀ ॥
କାହ୍ନୁ ବେନୁ ପୁଣି ମେଳ ହୋଇବେ । ତାଙ୍କୁଣି କାଢ଼ିଣ ରୂପ ଦେଖିବେ ॥
ଅରୂପାନନ୍ଦ ଯେ କରିବେ ଦୟା । କାହ୍ନୁ ବେନୁଙ୍କର ଭାଙ୍ଗିବ ମାୟା ॥
ଅନ୍ଧୁର ଭଗତେ ଅଛଇ ମୋର । କରଣ କୁଳେ ନାମ ଚକ୍ରଧର ॥
ଅନ୍ଧୁର ଭଗତେ ଅଛଇ ପୁଣ । ତ୍ରିଗୁଣ କ ଟି ସେ ଅଟେ ନିର୍ଗୁଣ ।୨୧୦।
ଯାଜପୁରରେ ଯେ ପରମାନନ୍ଦ । ଜୋଲ୍ଢ ଜାଳ ସେ ଯେ ହେବ ଆନନ୍ଦ ॥
ଅଟ୍ଟାଳିହାରେ ଗୋବିନ୍ଦ ସେ ଜାଣ । ଗୋଲାଗୋଲରେ ହୋଇବ ଜନମ ॥
ବାଇଆ ବାଉଳ ହୋଇବ ସେହି । ମାୟା କାଟିବ ସେ ନିର୍ମାୟା ହୋଇ ॥
ତହୁଂ ନିକଟେ ନରସିଂହପୁର । ତହୁଂରେ ଭଗତ ସେ ଚକ୍ରଧର ॥
ଲୀଳା ଭଗତ ଅଟଇ ଯେ ସେହି । ବାଳେକ ଭାବେ ଖେଳୁଥିବ ମହୀ ॥
ଘନଶ୍ୟାମ ମୋର ଅଟଇ ସଖା । ଲୟାଙ୍ଗେ ମୋତେ କରୁଥିବେ ଦେଖା ॥
ଆନ ଭଗତ ଛନ୍ତି ବିନ୍ଦପୁର । ଚମ୍ପାକୁଳରେ ଯେ ନାମ ଅଧର ॥
ଭଗତ ବିଶ୍ୱାସ ଜାଣନ୍ତି ସେହୁ । ତୋ ଆଗେ ରାମ କହିଦେଲି ସେହୁ ॥
ସବୁ ଜାଣିଥିବୁ ନକହିବୁ କାହିଂ । ପାଷାଣ୍ଡ ଆଗରେ ସ୍ୱେହା ନ କହିଂ ॥

କହିଲେ ସବୁ ହୋଇଯିବ ନାଶ । ସ୍ୱର୍ଗ ଲୋକଙ୍କୁ ହୋଉଥିବ ପ୍ରାସ ।
ଅଗତ କଥା ସବୁ କହୁ ତୋତେ । କଳି ପାପରେ ସରବ ଯେମନ୍ତେ ॥
ଗର୍ଭିଣୀ ସ୍ତ୍ରିୟା ଥୋକେ ନାଶ ହେବେ । ଭୂପତ ମରୁଡ଼ି ଥୋକେ ମରବେ ॥
ରାଜନ ଚରଣ ଅଙ୍ଗରେ ଜାଣ । ମିଥ୍ୟାରେ ବଧ କରବେ ବ୍ରାହ୍ମଣ ॥
ବ୍ରାହ୍ମଣ ବଧରେ ବନ୍ଦୀ ହୋଇବେ । ମଲ୍ଲ ହୁକିଲ ଯେ ଜଣେ ନ ଯିବେ ॥
ଆପେ ଜଗନ୍ନାଥ କରବେ ସେହା । ସେକେ ଜାଣିମାକୁ ସବୁ ସେ ମାୟା ॥
ଘୋର ଅନ୍ୟାୟେ ସେଠାରେ ହୋଇବ । କୃଷି ନ ହେବ କାନ୍ତାର ପଡ଼ିବ ॥
ମୀନ ରାଶିକ ଶନ ଚଳିଯିବ । ଓଡ଼ିଶା ନଷ୍ଟ ଭ୍ରଷ୍ଟକୁ ଲଭିବ ॥
ବଦ୍ୟ ନଜାଣିବେ ବ୍ୟାଧିର ଲେଶ । ନାଡ଼ି ଧରଣ କରବେ ସାହସ ॥
ଯେତେ ଔଷଧ ବଦ୍ୟ ପୁଣ ଦେବେ । ବ୍ୟାଧି ବଢିବ ମନୁ ମରିଯିବେ ॥
କମ୍ପ ସନ୍ନିପାତେ ମନୁ ମରବେ । ବାତ ବ୍ୟାଧିରେ ଥୋକେ ନାଶଯିବେ ।
ନଅତ ପଅ ଯାରଠାରେ ଥିବ । ଜାଣୁ ନଜାଣୁ ସେହୁ ଯେ ମରବ ॥
ଚଇତ ମାସରେ ବହିବ ବାତ । ଅଜା ଆଉଂ ଆଉଂ ମରବ ନାତ ॥
ପୃଥ୍ୱୀ ଭସ୍ମାଙ୍କାର ହୋଇବ ପୁଣ । କେହି ନଜାଣିମେ ସେଥିର ଗୁଣ ॥
ମନୁଷ୍ୟ ବଜସ୍ୱ ହୋଇବ ବାବୁ । ପଦାର୍ଥ ମୂଲ୍ୟ ହାଣ ହେବ ସବୁ ॥
ଲୋକେ ବହିବେ ଅହାନ୍ତକ ଭାବ । ପର ପଦାର୍ଥକୁ ଦହୁତ ଲୋଭ ॥
ସୂର୍ଯ୍ୟ କରଣ ଯେ ହୋଇବ ହାଣ । ଚନ୍ଦ୍ର କରଣ ଦଶିବ ମଳିଣ ॥
ଜଉତଷ ଯେ ଯୋଗ ନଜାଣିବେ । ମେଘକୁ ବୃହ୍ମଂ ପାଳକ କହିବେ ॥
ଯୋଗ ଯାଗ୍ୟଂ ବଣା ହେବେ ସକଳ । ଅକାଳେ ବର୍ଷା ହେବ ମେଘମାଳ ॥
ଶେଷଦେବ ପୃଶି ଯାଗ୍ୟଂ କରବେ । ଗୁପ୍ତ ଯାଗ୍ୟଂ ହେବ ବୈରାଗ୍ୟ ଭାବେ ॥
କେହି ନଜାଣିମେ ତହିଂର ଛନ୍ଦ । ଯଜ୍ଞଶାଳାରେ ଉପୁଜିବ ନନ୍ଦ ।
ସ୍ତ୍ରିୟ ବାଳକ ବୃଦ୍ଧଜନ ମେଳେ । ଅନ୍ନ ଭୁଞ୍ଜିବେ ପଶି ଯଜ୍ଞଶାଳେ ॥
ଅଦ୍ଭୁତ ଭୂପତି ରହିଲ ରାମ । କେହି ନଜାଣିମେ ସେଥିର ମର୍ମ ॥
ଶୂନ୍ୟରେ ଦୂତନଦୀ ଯେ ବହିବ । ଶେଷଦେବ ଲୀଳା ସେମନ୍ତ ଭାବ ॥
ବ୍ରାହ୍ମଣ ସ୍ୱରୂପ ହୋଇବେ ସେହି । ଲୀଳାଧଳା ରୂପ ସେ ଦେଖାଇ ॥
ଭକ୍ତମାନେ ଦେଖି ହେବେ ଆନନ୍ଦ । ପାପୀମାନେ ତାଙ୍କୁ ବୋଲିବେ ମନ୍ଦ ॥
କହେ ରାମଚନ୍ଦ୍ର ଶୁଣ ଗୋସାଇଂ । ଅଦ୍ଭୁତ କହିଲ ମୋତେ ବୁଝାଇ ॥
ଅଗପଛ କରି କହିଲ ମୋତେ । ଅଦ୍ଭୁତ ସନ୍ଦେହ ରହିଲ ଚିତ୍ତେ ॥

ସତ ଉପୁଜିବ ଯେବଣ କାଳେ । କେ ଅବା ଥିବଇ ସେଠି ଭୂପ ଲେ ॥
ଭଗତର ନାମ କହିବା ହେଉ । ମୋହୋର ମନରୁ ସଂଶୟ ଯାଉ ॥
ଅନାଦିଙ୍କ ବାକ୍ୟ ଶୁଣିମା ବାଳ । କାଶୀ ନଗରୁ ଆସିବେ ଭୂପାଳ ।୨୫୦।
ଅନନ୍ତ କଣୋଗ ଆସିବେ ବାହି । ବାଳ ମୃରତ ହୋଇଥିବେ ସେହି ॥
ହାତୀ ଚଢିଣ ସେହୁ ବୁଲିଯିବେ । ଶ୍ରୀକ୍ଷେତ୍ରେ ଆସିଣ ପ୍ରବେଶ ହେବେ ॥
ଭକ୍ତମାନେ ଥିବେ ତାଙ୍କର ପାଶ । ସେଦିନୁଂ ବସୁଧା ହେବ ଉଶ୍ୱାସ ॥
ଉତ୍କଳ ଦେଶର ଗୀତ ଯେମନ୍ତ । ମନଜ୍ଞାନ ପାଅ ତୋହୋର ଚିତ୍ତ ॥
ଭବିଷ୍ୟ ପୁରାଣ ଏହୁ ଅଟଇ । ଆଠ ଅଧ୍ୟାରେ ପୂର୍ଣ୍ଣ କରିଲଇଂ ॥
ଅଷ୍ଟଦିଗକୁ ଅଷ୍ଟ ଅଧ୍ୟା ସାର । ଅଷ୍ଟଖଣ୍ଡ ମହି ସେହି ପ୍ରକାର ॥
ଏହା ଶୁଣି ରାମ ବୋଲଇ ବାଣୀ । ଅଦ୍ଭୁତ ସଂଶୟେ ରହିଲି ପୁଣି ॥
ବଙ୍ଗ କଳିଙ୍ଗ ଗୃପତେ ରହିଲି । ଏଣୁ ମୋ ମନେ ସଂଶୟେ ଲଗିଲି ॥
ମଛ ମଗଧରେ କେତେ ଅଛନ୍ତି । ଶୁଣିଣ ମୋ ମନେ ଲଗିଲି ଚିତ ॥
ବୋଇଲେ ଶୁଣ ରାମଚନ୍ଦ୍ର ବୁଦ୍ଧି । ତୋ ଆଗେ କହିବା ଗୁପତ ଫେଇ ।୨୬୦।
ଏକଖଣ୍ଡ ମଧ୍ୟେ ଏ ଭୂମିସାର । ତୋତେ କହିବା ଗୁପତ ବିଚାର ॥
ଖାଇବା ଭକତ କେଉଂ ଦେଶରେ । ଗାଇବା ଭକ୍ତ ବା କେତେ ସଂସାରେ ॥
ଦେଖିବା ଭକତ ଅଛନ୍ତି କେତେ । ଦେବା ଭକ୍ତ ପୁଣ ଅଛନ୍ତି କେତେ ॥
ଧାଇଂ ବୁଲିବାକୁ ଅଛନ୍ତି କେତେ । କେତେ ଖାଇ ଖେଳି ଅଛନ୍ତି ଚିତ୍ତେ ॥
କେତେ ଭକ୍ତ ଗାଇ ବଜାଉଛନ୍ତି । କେତେ ବିଭୂତ ମାଖିଣ ବୁଲନ୍ତି ॥
ଖାଇବା ଗାଇବା ପିନ୍ଧିବା ଜାଣ । ନାମ ଚିହ୍ନିଲେ ଭଗତ ପ୍ରଧାନ ॥
ଦେଖିବା ଭଗତ ଝଟଛି ସେହୁ । ଭଗତ ମଧ୍ୟେ ଗଣ୍ୟ ଅଟେ ସେହୁ ॥
କହିଲି ତୋ ଆଗେ ଶୁଣ ହୋ ରାମ । ସର୍ବ ଦେଶରେ ଭଗତ ପ୍ରଧାନ ॥
ଦେଶ ଗୋଟିକେ ଆଖର ଗୋଟିଏ । ସବୁ ଦେଶରେ ମୋ ଭକତ ଥାଏ ॥
ଶୁଣି ରାମଚନ୍ଦ୍ର ବୋଲଇ ବାଣୀ । କହିବା ମୋତେ ଅପୂର୍ବ କାହାଣୀ ।୨୭୦।
ଅଷ୍ଟଦିଗର କଥାମାନ କହ । ମନରୁ ସଂଶୟମାନ ମୋ ଦହ ॥
କେତେ ଦେଶରେ କେତେ ଭକ୍ତ ଛନ୍ତି । ସାର ଭକ୍ତଙ୍କର କହିବା ଗୀତ ॥
ଯେମାନଙ୍କର ଯେ କହିବା ଗୁଣ । ତ୍ରିଗୁଣ ସାଧି ହୋଇଲେ ନିର୍ଗୁଣ ॥
ଶୁଣ ହୋ ରାମ କହିଦେବା ତୋତେ । ପୁନ ପୁନ କରି ପଚାରୁ କେତେ ॥

ତ୍ରୁଷ୍ଟା ଅବାଡ଼ ଜ୍ୟୋତକ ସାଧିବୁ । ହୃଜ ସହଜରେ ଚଞ୍ଚକୁ ଦେବୁ ॥
ଧୂନ ଅନହତ ସାଧିବୁ ଧରି । ଇନ୍ଦ୍ରିୟମାନଙ୍କ ନିଗ୍ରହ କରି ॥
ଦେବା ଦସ୍ତାରେ ଯାରି ଚଣ୍ଡ ଥିବ । ଛଅରେ ଶୂନ ସେ ଗଣନା ହେବ ॥
ତତ୍ତ୍ୱ ଭଗତ ବୋଲାଇବେ ସେହି । ଶୁଣ ରାମଚନ୍ଦ୍ର ତୁ ମନ ଦେଇ ॥
ପନ୍ତୁରି ବୋଲିଣ ଗ୍ରାମେକ ଥିବ । ମାଧବ ଭଗତ ତହିଂରେ ଥିବ ॥
ଓଡ଼ କୁଳରେ ଯେ ଜନମ ହୋଇ । ଜନ୍ମେ ଜନ୍ମେ ମୋର ଭଗତ ସେହି ।୨୮୦।
ନଳଦ୍ୱୀପରେ ମୋ ଭଗତ ଜାଣ । କେଶବ ବୋଲିଣ ଯେକ ବ୍ରାହ୍ମଣ ॥
ବାସ୍ତୁଗଡ଼ରେ ମୋ ଭଗତ ଥିବ । କେଉଟ କୁଳ ତା ନାମ କେଶବ ॥
ବେତ ପଡ଼ାରେ ମୋର ଭକ୍ତ ଅଛୁ । କେତେ କହିବା ଯେ ସେ କଥା ବାଛୁ ॥
ଶୁଣି ରାମଚନ୍ଦ୍ର ମନେ ଆନନ୍ଦ । ଭାବରେ ଭଣିଲେ ଅଚ୍ୟୁତାନନ୍ଦ ।୨୮୧।

॥ ଇତିଶ୍ରୀ ତତ୍ତ୍ୱବୋଧନି ଗୀତା ପ୍ରଥମ ଅଧ୍ୟାୟ ସଂପୂର୍ଣ୍ଣ ॥

## ॥ ଦ୍ୱିତୀୟ ଅଧ୍ୟାୟ ॥

ରାମଚନ୍ଦ୍ର ବୋଲେ ଶୁଣିମା ହୋଉ । ମୋ ମନେ ସଂଶୟ ରହିଲା ଆଉ ।୧।
ପଦ୍ମେ ଭକ୍ତ ବୋଲି ମୋତେ କହିଲୁଂ । ଢନଶ ବାରତ ବୁଝାଇ ଦେଲୁଂ ॥
ଆଉ କେତେବା ଅଛନ୍ତି କାହିଂ । ସକଳ ମୋ ଆଗେ କହ ବୁଝାଇ ॥
ଗୁପତ ପ୍ରକଟ ନୁହଇ ବାବୁ । ତୋ ଆଗେ ବୁଝାଇ କହିବା ସବୁ ॥
ଶୁଣି ରାମଚନ୍ଦ୍ର ପାଦେ ପଡ଼ିଲା । ଚରଣ ଧୂଳି ମସ୍ତକେ ଦେଇଲା ॥
ଧୂଳି ଝାଡ଼ିଦେଇ ବସାଇ ପାଶେ । ଫିଟାଇ ଦେବୁଂ ଗୁପତ ବିଶ୍ୱାସେ ॥
ହେତୁ ଜ୍ଞାନରେ ସବୁ ବୁଝିଥିବୁ । ଲକ୍ଷଣ ବୁଝିଂ ଭଗତ ବୋଲିବୁ ॥
ତାହାଶୁଣି ରାମ ବୋଲଇ ବାଣୀ । କଉଂ ଲକ୍ଷଣେ ମୁଂ କାହାକୁ ଚିହ୍ନି ॥
କଉଂ ଲକ୍ଷଣେ କାହାକୁ ଚିହ୍ନିବି । କେମନ୍ତେ ଭଗତ ବୋଲି ବାରିବ ॥
ତାହାଶୁଣି ଗୁରୁ କହନ୍ତି ଧୀରେ । ଭଗତ ଲକ୍ଷଣ ଶୁଣ କର୍ଣ୍ଣରେ ।୧୦।
ଶଠିଆ ଭଗତ ଚିହ୍ନିବୁ ତୁହି । ମୂଳକ ବୁଲିବେ ମାଳ ଗଡ଼ାଇ ॥
ତ୍ରୁପା ତିଳକ ଚଢ଼ାଇଣ ମୁଣ୍ଡେ । ବ୍ରହ୍ମଜ୍ଞାନକୁ କହୁଥିବେ ଦାଣ୍ଡେ ॥
ଛଣେ ମଉନ ହୋଇଣ ରହିବେ । ବ୍ୟାଧି ଦେଖିଲେ ହୁକୁମ କରିବେ ॥
ଗ୍ୟାଂନ ଜାଣି କହୁଥିବେ ସେ ଛନ୍ଦ । ଭକ୍ତି ନଜାଣି ହୋଉଥିବେ ଧନ୍ଦ ॥
ଗଣ୍ଠିଆ ଭଗତ ଥୋକାଏ ହେବେ । ହରିନାମକୁ ବେପାର କରିବେ ॥

ସେଟ ନମନ୍ତ୍ରେ ବୁଲୁଥିବେ ମସ୍ତ । ଅର୍ଥ ଲୋଭରେ ଲୋକଙ୍କୁ ଭୁଲାଇ ।।
ସେରେ ଗୁଡ଼ିଲଙ୍କ ନାମ କହିବେ । ତତ୍ତ୍ୱଭଗତ ଯେହୁ ବୋଲାଇବେ ।।
ଆଖର ବେଲକୁ ହୋଇବେ ଚୁଣ୍ଡ । ବାସନା ହନିଲେ ଜୀବର ଭଣ୍ଡ ।।
ସେ କାହ୍ନଂ ଜାଣିମେ ଭକ୍ତିର ଲେଶ । ସେହି ପ୍ରକାରେ କରୁଥିବେ ଗୃଷ ।।
ଗିନି ଝଞ୍ଜଣି ବଜାଇଣ ଗୀତ । କହି ମୋହୁଥିବେ ଜନଙ୍କ ଚିତ୍ତ ।୨୦।
ଗ୍ରାମେ ଗ୍ରାମେ ପୁଣ ଯେ ବୁଲିକରି । ମାଛଭାତ ଖାଇ ବୋଲିବେ ହରି ।।
ଆଖି ବୁଜିଣ ମାଳ ଗଣୁଥିବେ । ମନୁଷ୍ୟ ଦେଖି ତରସି ରହିଂବେ ।।
ଏମନ୍ତ ନୁହଇ ଯେ ଜ୍ଞାନପଥ । ବସ୍ତୁ ବଇସି ସେ ଅଟେ ନଅତ ।।
ତତ୍ତ୍ୱ ଲୋକମାନେ ସେଥୁ ବିଲଗ । ଲୋଭ କାମକୁ କରି ପରିତ୍ୟାଗ ।।
ସପ୍ତ ପଞ୍ଚାତ୍ମିକା ଜାଣନ୍ତି ସେହି । ତାହାଙ୍କୁ ମୋହୋର ଦୟା ଯେ ହୋଇ ।।
ଶୁଣି ରାମଚନ୍ଦ୍ର ମଉନ ହୋଇ । ଆଉର କିଛି କହିବା ଗୋସାଇଂ ।।
ସେହାଶୁଣି ଗୁରୁ ଆନନ୍ଦ ହେଲେ । ପିଠି ଆଉଂସି ପାଶେ ବସାଇଲେ ।।
ବୋଇଲେ ରାମ ମୁଂ କହୁଛି ତୋତେ । ଯାହା କହିବୁଂ ରଖ ତୋର ଚିତ୍ତେ ।।
ବିରାଟ ମରହଟ୍ଠା ଦେଶ ଜାଣ । ବଙ୍ଗ କଳିଙ୍ଗ ଯେ ଅଟଇ ପୁଣ ।।
କାଶୀ ବାରଣାସୀ ଅଟଇ ଦେଶ । ତହିଂରେ ମୋ ଭକ୍ତ ଛନ୍ତି ବିଶେଷ ।୩୦।
କର୍ଣ୍ଣାଟ କେଶରୀ ଦେଶ ଅଟଇ । ତହିଂରେ ମୋ ଭକ୍ତ ଅଛନ୍ତି ରହି ।।
ମଛ ମଗଧ ଯେ ଅଛଇ ଜାଣ । ତହିଂରେ ମୋ ଭକ୍ତ ଥାଆନ୍ତି ପୁଣ ।।
ରାମନାଥ ଯେ ମଥୁରା ସହିତେ । ବୃନ୍ଦାବନ ଗୋପ ଅଛଇ ଯେତେ ।।
ନେପାଳ ଭୂପାଳ ସୀମା ଲଗାଇ । ଦେଶେ ଦେଶେ ଯେ ସେମନ୍ତ ଅଛଇଂ ।।
ଢେଙ୍କାନାଳରେ ଯେ ଭଗତ ଛନ୍ତି । ତହିଂରେ କେତେବା ଅଛନ୍ତି ସ୍ଥିତି ।।
ଅଠଗଡ଼ରେ ଭକ୍ତ ଛନ୍ତି ମୋର । ତହିଂରେ ଭଗତ ଅଛନ୍ତି ତେର ।।
କେନ୍ଦୁଝଁଡ଼ରେ ମୋ ଭଗତ ସଞ୍ଚ । ତହିଂରେ ଭଗତ ଦୁଇଶ ପାଞ୍ଚ ।।
ବଣେଇ ବାମଂଡ଼ାରେ ଭକ୍ତ ଛନ୍ତି । ତହିଂରେ ଭଗତ ସାତ ଯେ ଥିତି ।।
ବ୍ରହ୍ମପୁରିଆ ମୋର ଭକ୍ତ ଯେତେ । ବ୍ରହ୍ମ ଚହ୍ନିଣ ଦସ୍ତାକ୍ଷ ସମସ୍ତେ ।।
କେ ଅବା କହିବ ତାଙ୍କ ମହିମା । ଭଗତ ଅଛନ୍ତି କୁଳଙ୍ଗ ସୀମା ।।
ଭଗତ ସୀମା ଯେ ଗୁଣ ବିଶେଷ । ଭବରେ ଭଣିଲେ ଅଚ୍ୟୁତ ଦାସ ।୪୧।

ଇତିଶ୍ରୀ ତତ୍ତ୍ୱବୋଧନୀ ବ୍ରହ୍ମବିଦ୍ୟାୟାଂ ଆଗତ ଭବିଷ୍ୟ ବର୍ଣ୍ଣନେ ନାମ
ଦ୍ୱିତୀୟ ଅଧ୍ୟାୟଃ ।।

# ।। ତୃତୀୟ ଅଧ୍ୟାୟ ।।

ଶୁଣି ରାମଚନ୍ଦ୍ର ବୋଲଇ ପୁଣ । ଆହୁରି ସଂଶୟ ହେଲା ମନ ।୧।
କେମନ୍ତେ ଜଗତ ମେଳ ହୋଇବେ । ସେକଥା ମୋ ଆଗେ କହିବା ସ୍ୱବେ ।।
ତେଇଶି ଯାଇ ବର୍ଷରେ ପୁଣ । ଜଗତ କିଛି ହୋଇବେ ପ୍ରମାଣ ।।
ବର୍ଷ ଯାଇ ପଞ୍ଚଶ ଆଗତ । ପୃଥିବୀ ହୋଇବ ଉଲୁକା ପାତ ।।
ପୃଥିବୀ ହୋଇବ ଯେ ହୋଲାହୋଳ । କାକ କୁକୁର କରୁଥିବେ କେଳି ।।
କାକ କୁକୁର ହୋଇବେ ଯେତକ । ଇନ୍ଦ୍ର ବରଷା କରିବ ରକତ ।।
ବ୍ୟାଧି ହୋଇଣ ପିଚ୍ଛୁଣୀ ଆସିବେ । ପ୍ରାଣୀମାନଙ୍କୁ ଗୁପତେ ଡଂଶିବେ ।।
ନାଳଶୂଳ ସଙ୍ଗେ ରକତ ବ୍ୟାଧି । ଘରକୁ ଘର ପକାଇବେ ଶୋଧି ।।
ବହୁତ ଉତ୍ପାତ ସଂସାରେ ହେବ । ନିର୍ଭୟା ହୋଇଣ କେଣେ ନଥିବ ।।
ମାରୁ ମହରଗ ହୋଇବ ଭଲେ । ନଅଣ୍ଟିବ ସବୁ ଯେତେ ଅର୍ଜିଲେ ।୧୦।
ପତି ପତ୍ନୀରେ ହୋଇବ ଅମେଳ । ଚତୁର୍ଦ୍ଦିଗ ଘୋଟିଯିବ ସେ କାଳ ।।
କନ୍ୟା ବିକ୍ରି ହୋଇବ ସବୁରି । ତତ୍ତ୍ୱ ବିଚାର ନୋହିବ କାହାରି ।।
ଦୟା ନଥାଇ କୁଟିଳ ଯେ ଲୋକେ । ବ୍ରହ୍ମଗ୍ୟାଂନରେ ମାତୁଥିବେ ଥୋକେ ।।
ବ୍ରହ୍ମ ନବୃହଂ ହୋଇଯିବେ ବଣା । ଅକ୍ଷି ଥାଉଂ ଥାଉଂ ହୋଇବେ କଣା ।।
ଜଗତ ହୋଇବେ ପାଣ ପଠାଣ । ତିରି ମଣିବେ ଦେଖିଲେ ବ୍ରାହ୍ମଣ ।।
ଅତିଅନ୍ୟାୟ ହୋଇବ ସଂସାର । କାହାରି ନଥିବ କୁଳ ବିଚାର ।।
ହଂସା ଅଚଣ ବଢ଼ିମା ଦେଖାଇ । ସତ କଥାକୁ ଦେବେଟି ଉଡ଼ାଇ ।।
ସାତ ପାଞ୍ଚରେ ବାନ୍ଧୁଥିବେ ମେଳି । ସତଲୋକ ସଙ୍ଗେ କରିବେ କଳି ।।
ମେଘ ବରଷା ଫିରଫାର ହେବ । ବଜ୍ରଘାତରେ ମନୁଷ୍ୟ ମରିବ ।।
ଗୋରୁ ମନୁଷ୍ୟ ହୋଇବେ ବିନାଶ । ବଜ୍ରପାତ ଯେ ହୋଇବ ବିଶେଷ ।୨୦।
ଫଳିଲା ବୃଦ୍ଧି ଗୋଚର ହୋଇବ । ଅବୃଦ୍ଧି ମାନ ଯେ ଧାନ ଫଳିବ ।।
ପୁରାତନ ଭୂମି ଫଳିବ କମି । ଚଷା ନଜାଣି ହୋଉଥିବେ ଭ୍ରମି ।।
ଓଲଟ ପହରା ହୋଇବ ବାରୁ । ତୋ ଆଗେ ଏମାନ କହିଲୁଂ ସବୁ ।।
ରାମଚନ୍ଦ୍ର ବୋଲେ ଶୁଣିମା ବାରେ । ଆହୁରି ସଂଶୟ ଅଛି ମନରେ ।।
ସେକାଳେ ପରଜା କି କରୁଥିବେ । ଏମନ୍ତ କଷ୍ଟ କେ ଅବା ସହିବେ ।।
କଳି ଆଗମେ ଏମନ୍ତ ହୋଇବ । ଧନ୍ୟ କଳିଯୁଗ କଲି ଦଇବ ।।

ମୋ ମନେ ସଂଶୟ ରହିଲା ଆଉ । ତତ୍ତ୍ୱଚେତା ନାମ କହିବା ହେଉ ॥
ବୋଲନ୍ତି ଶୁଣିମା କୁମରମଣି । କେତେ ପଦ୍ମରୁ ତୁ ତତ୍ତ୍ୱ ବଖାଣି ॥
ତତ୍ତ୍ୱ ବଖାଣିବା ନୁହଇ ବାବୁ । କ ରୂପେ ତୋ ଆଗେ କହିବା ସବୁ ॥
ତତ୍ତ୍ୱ ଚେତଜଣ କହିବା ତୋତେ । କ ହାକୁ ନକହି ରଖ ଗୁପତେ ।୩୦।
କେବେ ନକହିବୁ କାହା ଆଗରେ । ଛୁଅଂ ତନ ବେଲ ଚରଣ ମୋର ॥
* ଛତଆ ହାଡ଼ିଆ ଅଟଇ ଚେତା । ଯାଜପୁରରେ ଅଟେ ଦାସ ଭଗତା ॥
ଓଲାଭରେ ତନ୍ତ୍ରୀ ସୁଦାମା ମୋର । ଫକୀର ଅଟଇ ଭଗତ ସାର ॥
ମଧୁଦାସ ଚେତା ଭଗତେ ସାର । କଶୋଣ୍ଣ ନାମଟି ଗୁପତ ତାର ॥
ଚକ୍ରଧର ମୋର ବାଳୁତ ପିଲ । ଆହୁଣ ଭଗତ ହୋଇବ ଭୁଲ ॥
ଗୋବନ୍ଦ ଭଗତେ ଅଟଇ ଟାଣ । ଉଦ୍ଧବା ବୋଲିଣ ଏକ ବ୍ରାହ୍ମଣ ॥
ଘନଶ୍ୟାମ ମୋର ଅଟଇ ପିଲ । ମାଗୁଣି ଭଗତ ବଡ଼ ଚଗଲ ॥
ଗୋପାଳ ଭଗତ ଗୋବନ୍ଦପୁର । ତତ୍ତ୍ୱଚେତା ଅଟେ ଚନ୍ଦ୍ରଶେଖର ॥
କାହ୍ନୁଆ ବେଲୁଆ ସେହ ଦୁଇଜଣ । କେଶବା ବୋଲିଣ ସେହିକ ବ୍ରାହ୍ମଣ ॥
ସାତ ପାଞ୍ଚବାକ୍ୟ କହନ୍ତି ସେହି । ଆଉ କେ ଜାଣିମ ଗ୍ୟାଂନର ଭୁଇଂ ।୪୦।
ରାମଚନ୍ଦ୍ର ବୋଲେ ଶୁଣିମା ହେଉ । ଗ୍ୟାଂନର ଭେଦ ସେ ଜାଣିମେ କାହୁଂ ॥
ଶୁଣ ରାମଚନ୍ଦ୍ର କହିବା ତୋତେ । ଗୁପତ କଥା ରଖିଥିବୁ ଚତେ ॥
ପୁର୍ବ ବାସନା ଥିବଟି ଯାହାର । ଅନାମକୁ ନାମ ହେବ ତାହାର ॥
ଅନାମ ଅକ୍ଷର ଭଜିବ ଯେହି । ଚହ୍ନି ପାରିଲେ ଗ୍ୟାଂନ ତାର ହୋଇ ॥
ଛୁଡ଼ ଚକ୍ର ମଧ୍ୟେ ପଞ୍ଚାଶ ଦଳ । ସଭିଏଂ ଅଟନ୍ତି ଅନାମ ତଳ ॥
ଅନାମ ଉପରେ ମଣ୍ଡଳୀ ଗୋଟି । ପିଣ୍ଡ ବ୍ରହ୍ମାଣ୍ଡକୁ ଅଛଇ ଘୋଟି ॥
ତହୁଂ ଉପରକୁ ନାହିଂଟି କଛୁ । ଡ଼ିମ୍ବ ଭିତରେ ଛୁଆଗୋଟି ଅଛୁ ॥
ଡ଼ିମ୍ବ ଫୁଟାଇ ଛୁଆକୁ ଦେଖିଲେ । ଅନ୍ଧକାରମାନ ଫିଟଇ ଭଲେ ॥
ପଲକ ନଷ୍ଟଲେ ସାଧି ପବନ । ନଷ୍ଟଳ କରବ ସେ ପଞ୍ଚମନ ॥
ମନ ପବନକୁ କରଣ ସେହିକ । ତେବେ ବୋଲିବା ବ୍ରହ୍ମର ସାଧକ ।୫୦।
ନଷ୍ଟଳ ଚତ୍ତେ ଧ୍ୟାନ ଲଗାଇବ । ଦେହ ହଜାଇଣ ଜାଗି ବସିବ ॥

* ପରବର୍ତ୍ତୀ କାଳରେ ଏହା ଯୋଡ଼ା ଯାଇଥିବା ଅନୁମାନ ।

ଓଲଟା ପିଛଡ଼ା ଟାକବୁ ଦୃଷ୍ଟି । ତେବେ ଅନକାର ଦିବଇଂ ଫିଟି ॥
ବ୍ରହ୍ମ ମଣ୍ଡଳକୁ ବାଇ ଟେକବୁ । ଗ୍ୟାଂନ ଦ୍ୱୀପରେ ବ୍ରହ୍ମକୁ ଚହ୍ନିବୁ ॥
ଚନ୍ଦ୍ର ମଣ୍ଡଳେ ସୂର୍ଯ୍ୟକୁ ଦେଖିବ । ପୂର୍ବ ବାସନା ଗ୍ୟାଂନ ଯାର ଥିବ ॥
ପୂର୍ବରୁ ଧ୍ୟାନ ଯାହା ଘରେ ଥିବ । ସେହୁ ଅବଶ୍ୟ ପୂର୍ଣ୍ଣ ଟାଇବ ॥
ସେହୁ ପ୍ରକାରେ ସବୁ ଅଟେ ବାବୁ । ବାସନା ନଥିଲେ କାହୁଂ ପାଇବୁ ॥
ତୋ ଆଗେ ସେକଥା କହିଲି ମୁହିଂ । ସେ ଜ୍ଞାନ ସାଧିଲେ ବ୍ରହ୍ମକୁ ପାଇ ॥
ବ୍ରହ୍ମ ପୁରୁଷ ବ୍ରହ୍ମ ସେକାକ୍ଷର । ଶୂନ୍ୟ ସଂହିତାରୁ ସେହୁ ବାହାର ॥
ଚତୁର୍ଥ ଅଧ୍ୟାରେ ସେମାନ କହି । ଶୁଣ ହୋ କୁମର ଏମାନ ବୁଝି ॥
ବାସନା ଥିଲେ ମିଳଇ ଯେ ବାସ । ଶ୍ରୀଂରେ ଭଣିଲେ ଅଚ୍ୟୁତ ଦାସ ।୭୦।

ଇତିଶ୍ରୀ ତତ୍ତ୍ୱବୋଧନୀ ଗୀତା ବ୍ରହ୍ମ ବଦ୍ୟୋଦ୍ୱ ନାମ ତୃତୀୟ ଅଧ୍ୟାୟଃ ॥

# ॥ ଚତୁର୍ଥ ଅଧ୍ୟାୟ ॥

ଶୁଣି ରାମଚନ୍ଦ୍ର ଆନନ୍ଦ ହେଲା । କିଛୁ ନ ଜାଣେ ମୁଂ ବାଳୁତ ପିଲା ।୧।
ପଞ୍ଚଭୂତ ଦୋଷ ଯେଜନ୍ମ ନାହିଂ । ମୋ ଆଗେ କହିବା ତତ୍ତ୍ୱ ବୁଝାଇ ॥
ପିଣ୍ଡ ବ୍ରହ୍ମାଣ୍ଡ ଯେଉଁ କରୁଂ ଜାତ । ସେଥି ମଧ୍ୟେ କିବା ଅଛି ଗୁପତ ॥
ସକଳ କହିବା ମୋତେ ବୁଝାଇ । ହାତମାଣ ମୋତେ ଦେବ ଦେଖାଇ ॥
ଦେଖିଲେ ମୁହିଂ ଯିବଇଂ ତରତେ । ଦୟା ମୋହଠାରେ ହେବକ ଚଢ଼େ ॥
ତୁମ୍ଭ ଶ୍ରୀମୁଖରୁ ଯେବା ଉଦିତ । ଶୁଣିଲେ ମୁଂ ପାପୀ ହେବ ମୁକତ ॥
ମୁକତ ପଦକୁ ଅଟଇ ସେହି । ଶୁଣିଲେ ମୋ ପାପ ହୋଇବ ଦହି ॥
ବରଷା କରିବ ଅମୃତ ଧାର । ତୃଷାରେ ଶୁଖିଲା କଣ୍ଠ ମୋହୋର ॥
ସେମନ୍ତ ଶୁଣିଣ କୁମର ବାଣୀ । ସେମାନ ଜାଣିଲୁ କାହୁଂ ତୁ ପୁଣି ॥
କାହୁଂ ଜାଣିଲୁ ତୁ ସେ ସନ୍ଧିକଥା । ଶୁଣି ମୋ ମନେ ହୋଇଲାଣି ଚିନ୍ତା ।୧୦।
ଗୁପତ କଥା ସେ ପ୍ରକାଶ ନୋହି । ତୋ ଆଗେ କପଟ କହିବ ମୁହିଂ ॥
ଶୁଣି ରାମଚନ୍ଦ୍ର ମନେ ହରଷ । କିଷ୍ଟେ ଗୁପତ କର ପ୍ରକାଶ ॥
ରାମଚନ୍ଦ୍ର ପୁଣି ପାଦେ ପଡ଼ିଲା । ଚରଣ ଧୂଳି ମସ୍ତକେ ବୋଳିଲା ॥
ବୋଲନ୍ତି ଶୁଣ ରାମଚନ୍ଦ୍ର ତୁହି । ଶ୍ରୀଗୁରୁ କହନ୍ତି ରାମକୁ ବୁଝି ॥

ଈଶ୍ୱର ବିଷୟକେ କେହି ନ ଜାଣେ । ତତ୍ତ୍ୱବୋଧ କଥା ଯେତେ ସ୍ୱଧାନେ ॥
ଜାଣିଣ ଶିବ କୈଳାସେ ଚଳିଲେ । ଜନ୍ତୁ ଦନ ଗୁପତରେ ରହିଲେ ॥
ନାରଦ କହିଲେ ପାର୍ବତୀ ଅଗେ । ସକଳ ଅଛି ସେ ବ୍ରହ୍ମର ସ୍ୱେଗେ ॥
ବ୍ରହ୍ମ ସ୍ୱଗ ବେଦ ବ୍ରହ୍ମା ଜାଣଇଂ । ବେଦ ମନ୍ତ୍ରନୁ ତତ୍ତ୍ୱ ସେହୁ ପାଇଂ ॥
ତନ୍ତ୍ର ପାଇଣ ଈଶ୍ୱରଙ୍କୁ ଦେଲେ । ତେଣୁ ଈଶ୍ୱର ଯୋଗୀ ବୋଲାଇଲେ ॥
ଯୋଗ ସାଧିଲେ ଯୋଗୀ ବୋଲି କହି । ସ୍ୱେ ତନ୍ତ୍ରମାନ ନ ଜାଣନ୍ତି କେହି ।୨୦।
ଧ୍ୟେମନ୍ତ୍ର ଯନ୍ତ୍ରଂ ପାର୍ବତୀ ଶୁଣିଲେ । ଶୁଣି ଈଶ୍ୱରେ ଅଭିମାନ କଲେ ॥
ପତ୍ନୀ ଅଭିମାନେ ଈଶ୍ୱର କହି । ସ୍ୱେକାମ୍ବର ବନେ ଦେଲେ ବୁଝାଇ ॥
ତନ୍ତ୍ରଂ କହୁତେ ବ୍ୟାସ ଯେ ଶୁଣିଲେ । ବ୍ୟାସଦେବ ତନ୍ତ୍ରଂ ଶୁକ ପାଇଲେ ॥
ଶୁକ ବୁଝାଇଲେ ପରୀକ୍ଷିତକୁ । ତନ୍ତ୍ରଂ ବ୍ୟାପିଲା ସଂସାର ଯାକକୁ ॥
ତାଙ୍କ ବଂଶରେ ହୋଇଲା ଅର୍ଜୁନ । ବ୍ରହ୍ମବିଦ୍ୟାକୁ କଲା ସେ ସାଧନ ॥
ପୂର୍ଣ୍ଣବ୍ରହ୍ମଙ୍କୁ ସେ ସାଧନ କଲା । ପୂର୍ଣ୍ଣବ୍ରହ୍ମଙ୍କୁ ଚକ୍ଷୁରେ ଦେଖିଲା ॥
ତନ୍ତ୍ରଂ କୃଷ୍ଣକଳା ହେଲା ପ୍ରକାଶ । ସଖା ହୋଇଲେ ତାଙ୍କୁ ପୀତବାସ ॥
କୃଷ୍ଣକଳା ଯନ୍ତ୍ରଂ ପାଇଲେ ସେହି । ସେହି ଦନରୁ ପ୍ରକାଶ ଅଛଇ ॥
ଗୁପତ ପ୍ରକଟ ହୋଇଲା ବାରୁ । ତୋ ଆଗେ ସ୍ୱେ କଥା କହିଲି ସବୁ ॥
କୃଷ୍ଣକଳା ଯନ୍ତ୍ରଂ ଅର୍ଜୁନ ନେଲା । ପରୀକ୍ଷିତ ତନ୍ତ୍ରଂ ଗ୍ୟାଂନ ପାଇଲା ।୩୦।
ଋଷିମାନଙ୍କର ସ୍ୱେ କୋଠ ଧନ । ଚହ୍ନିଲେ ତାଙ୍କର ନୋହେ ସ୍ୱେମାନ ॥
ନାଗ ସାପକୁ ଯେ ଧରିବ କେଳା । ଅନ୍ୟ ଦେଖିଲେ ନୋହିବ ସମ୍ଭଳା ॥
କଳା ନଥିଲେ ହୁଅଇ ସ୍ୱେମାନ । ତେଣୁ ପରୀକ୍ଷିତ ପାଇଲେ ଗ୍ୟାଂନ ॥
ମନ୍ଦହିତଠାରୁ କ୍ଷୋଭ ହୋଇଲା । ଯନ୍ତ୍ରଂ ଗଙ୍ଗାକୂଳେ ତ୍ରିବେଣୀ କଲା ॥
ସ୍ୱେ କଥାମାନ ମୁଁ କହିଲି ତୋତେ । ଯାହା କହିବ ରଖ ତୁ ଗୁପତେ ॥
ବ୍ୟଖ୍ୟାତେ ଅମାନ୍ୟ ହୋଇବ ପଦ । ସାଧୁମାନଙ୍କର ଅଟଇ ଭେଦ ॥
ରାମଚନ୍ଦ୍ର ବୋଲେ କହିବା ହୋଉ । ନାମ ମହିମା ରହିଗଲା ଆଉ ॥
ଯାହା ପଚ୍ଛରିବ ଆଜ୍ଞା ହୋଇବ । ମୋ ମନୁଂ ସଂଶୟମାନ ଦହିବ ॥
ବୋଇଲେ ଶୁଣିମା କୁମରମଣି । ନାମର ମହିମା କେ ପାରେ ଜାଣି ॥
କେ ଗଣି ପାରିବ ବରଷା ଧାର । କେ ଗଣି ପାରିବ ସିନ୍ଧୁ ଲହର ।୪୦।
ସୋମଦ୍ର ବାଲିକ କେ ଅବା ଗଣେ । କେ ଗଣି ପାରଇ ସୂର୍ଯ୍ୟ କିରଣେ ॥

ଏମାନଙ୍କୁ କେହି ବୁଝି ପାରଈ । ନାମ ମହିମା କଳଣା ନ ଯାଇ ॥
ବାଳ ଷୀଦଠାରୁ ସହସ୍ରେ ସରୁ । ମୁଣ୍ଡେ ମୁଣ୍ଡାଇବ ଅଚଳ ମେରୁ ॥
ଯାହା ମନରେ ଭସ୍ମ ଭ୍ରାନ୍ତ ଥିବ । ବ୍ରହ୍ମଜ୍ଞାନ ତାକୁ ପ୍ରାପତ ହେବ ॥
ଗୁରୁ ଚରଣେ ଯାହାର ବିଶ୍ୱାସ । ତାହାକୁ ପର୍ବତ ହେବ ଉଶ୍ୱାସ ॥
ଗୁରୁଦ୍ରୋହୀ ଲୋକ ଯେବା ଅଟଇ । ସେ ପ୍ରାଣୀ ଏ ଜ୍ଞାନ ପାଇବ କାହିଁ ॥
ପିତା ମାତାରେ ଯାର ନାହିଁ ଭକ୍ତି । ସେ କାହିଁ ଜାଣିମ ନାମର ଗତି ॥
ଗୁରୁଙ୍କୁ ଧନ ଦେଇ ବଶ୍ୟକରି । ମନରେ ଗର୍ବିତ ଭାବ ବିସ୍ତରି ॥
ବୋଲିବ ମୋହୋର ଟୁରୁ ବିଶ୍ୱାସ । ମୁଂ ବଡ଼ ଅଟଇ ଭାର୍ଜନ ଶିଷ ॥
ପିତା ମାତା ଠାରେ ଭକ୍ତି ନ ଥିବ । ସର୍ବ ଜବରେ ତା ମମତା ଥିବ ।୫୦।
ସେ ଲୋକ ଯେତେକ ଗୁରୁଙ୍କ ଠାରେ । ଧନ ଦେଇ ଗର୍ବ ଭାବ ମନରେ ॥
କାହାକୁ ଚକ୍ଷେ ଗଣନା ନ କରି । ବଡ଼ ବୋଲାଇବ ନାମକୁ ଧରି ॥
ତାହାଠାରେ ମୋର ତୃଷ୍ଣା ଯେ ନାହିଁ । ବଶ୍ୟ କରାଇବ ଧନ ଯେ ଦେଇ ॥
ଏମନ୍ତ ଶୁଣି ବୋଲେ ରାମଚନ୍ଦ୍ର । ଶୁଣ ଗୁରୁଦେବ ମୋ ଗ୍ୟାନଇନ୍ଦ୍ର ॥
ରାମଚନ୍ଦ୍ର ବୋଲେ ମୁଂ ଅଟେ ହୀନ । ଅବର କଥାଏ ପଡ଼େ ମୋ ମନ ॥
ନାମର ମୂଳ ଯେ କହିବା ହେଉ । ଭଜନ ମୂଳ ଯେ କହିବା ଅଉ ॥
ଜ୍ଞାନକୁ ହାଦେ ବୁଝାଇଣ କହି । ହାତ ମାରଣ ମୋତେ କହି ଦଅ ॥
ଗୁରୁର ଧର୍ମ ଅଟେ କଉଂ ରୂପେ । ତାହା କହିଦେବା ମୋର ସମୀପେ ॥
ଯେ ଗୁରୁ ଜ୍ଞାନ ଦେଇ ଅବା ପାରେ । ତାହାକୁ ପୁଚ୍ଛିବା କେଉଂ ପ୍ରକାରେ ॥
ତୁମ୍ଭ ଚରଣେ ରହୁ ମୋର ଚିତ୍ତ । ମୋ ଆଗେ କହିବା ତୁମ୍ଭେ ଏମନ୍ତ ।୬୦।
ବୋଇଲେ ଶୁଣ ରାମ ଏବେ ତୁହି । କେତେ କହିବ ମୁଂ ତୋତେ ବୁଝାଇ ॥
ଏମନ୍ତ ଯେବେ ଜାଣିପାରୁ ତୁହି । ମୋତେ ପଚାରୁ ଅଛୁ ତୁ କପାଇଂ ॥
ଯେବେ ପଚାରୁ କହିଦେବା ତୋତେ । କା ଆଗେ ନ କହ ରଖ ଗୁପତେ ॥
କଳିଯୁଗରେ ଏମନ୍ତ ହୋଇବ । ଗୁରୁକୁ ଶିଷ୍ୟ କେବେ ନ ମାନିବ ॥
ଗୁରୁ ପଢ଼ାଇବେ ଯେବଣ ପାଠ । ଶିଷ୍ୟ ବୋଲିବ ମୁଂ ଜାଣେ ଏ ପାଠ ॥
ଗୁରୁଠାରୁ ଯେଉଂ ନାମ ପାଇବ । ପଦେ ପ ଇଲେ ଛ ପଦ କହିବ ॥
ଆଗତକୁହା ଯେ ହୋଇବ ବାରୁ । ଗ୍ୟାଂନୀ ପଣରେ ମୁଂ ଜାଣଇ ସବୁ ॥
ମୁହିଂ ବଡ଼ ବୋଲି ଯେହ୍ନୁ କହିବେ । ଅପ୍ରାଧମାନ ଚକ୍ଷେ ନ ଥୋଇବେ ॥

ଲୋଭ ଦେଖାଇ କହିବେ ଧୋକାସ୍ତେ । ଗୁରୁଙ୍କୁ ଛନ୍ଦ କରିବେ ଧୋକାସ୍ତେ ।।
ଗୁରୁଙ୍କ ଲୋଖି କରାଇବେ ତହିଂ । ପଟି ଶୁଣି ଯୁଣି ଯିବେ ପଳାଇ ।୭୦।
ଗୁରୁ ଶିଷ୍ୟଙ୍କର ଲାଗିବ କଳି । ଗାଲୁଆ ମାଲୁଆ ଧରିବେ ତାଳି ।।
ଗୁରୁ ଶାପ୍ୟରେ ଶିଷ୍ୟ ନାଶଯିବେ । ଇହ ପରରେ ଯଶ ନ ପାଇବେ ।।
ଆବର କଥାସ୍ତେ ଶୁଣରେ ବାଳ । ପିତା ପୁତ୍ରରେ ହୋଇବ ଅମେଳ ।।
ମାତା ପିତାଙ୍କୁ ବଇରି କରିବେ । ଭାରିଯା ଗୃହରେ କାରେଣି ହେବେ ।।
ବନ୍ଧୁ ସୋଦର କରିବେ ଅମାନ୍ୟ । ଶଳାଟି ସୋଦର ବନ୍ଧୁ ଉତ୍ତମ ।।
ମାତା ପିତାଙ୍କୁ ପୁତ୍ର ନ ମାନିବେ । ଭାରିଯାଙ୍କୁ ଯେତେ ଭିନ୍ନ ହୋଇବେ ।।
ସ୍ତିରିମାନଙ୍କର ବଶ୍ୟରେ ଥିବେ । ସେହି ସ୍ତିରି ଦୁର୍ଗା ରୂପେ ଖାଇବେ ।।
ସ୍ୱେମନ୍ତ ହୋଇବ କଳିଯୁଗରେ । ଧର୍ମ କଥାକୁ ନିନ୍ଦୁଥିବେ ନରେ ।।
ଦୟା ସତ ଧର୍ମ ଛାଡ଼ିଣ ପୁଣ । ମୋହିତ ହୋଇବେ ଧନ ଲୋଭେଣ ।।
ଶ୍ରୀଗୁରୁ ବାକ୍ୟକୁ ମାନିବେ ନାହିଂ । ବିଷ୍ଣୁ ନିନ୍ଦାକରି ମରିବେ ସେହି ।୮୦।
ହିଂସା ଅହଂକାର ଧରି ମନରେ । ଅସତ କଥା ବଖାଣିବେ ନରେ ।।
ମିଛ ଛନ୍ଦ କୃଟେ ପରଙ୍କୁ ଦହି । ହିଂସା ଅହଂକାର ହୃଦରେ ବହି ।।
ମିଥ୍ୟା କଥାରେ ପ୍ରାଣୀଙ୍କ ଦଣ୍ଡିବେ । ଭୟ ଦେଖାଇ ତଣ୍ଡ ତହିଂ ନେବେ ।।
ସ୍ୱେମନ୍ତ ଲୋକ ଯେ ହୋଇବେ ନାଶ । ପକ୍ଷୀନ ଭଖିବେ ତାଙ୍କ ମାସ୍ୱେଂସ ।।
ଆଗତ ଶାସ୍ତ୍ରକୁ ମାନିବେ ନାହିଂ । ତାଳ ମାରିକରି ଦେବେ ଉଡ଼ାଇଂ ।।
ଝଗଡ଼ା କଥା ଲୋଙ୍କୁ ବଖାଣିବେ । ଝଗଡ଼ା କରି ଭକ୍ତଙ୍କୁ ନିନ୍ଦିବେ ।।
ଅର୍ଥ ସମ୍ପତ୍ତିରେ କରିବେ ଆସ । ଗୁରୁ ପାଦରେ ନୋହିବେ ବିଶ୍ୱାସ ।।
ହୃଦେ ନ ଭେଦିବେ ଶାହାସ୍ତ୍ର ପଦ । ଚିତ୍ତ ନ ଜିବେଣି ଶ୍ରୀଗୁରୁ ପାଦ ।।
ମାତା ପିତା ଠାରେ ଭକ୍ତି ନଥିବେ । ଭାରିଯା ବାକ୍ୟକୁ ସତ ମଣିବେ ।।
ପିତା ଶାପରେ ପଡ଼ିବଟି କାଳ । ବୋଲିବେ ସ୍ୱେହା ହେଲା ମୋ କପାଳ ।୯୦।
ପିତା ପୁତ୍ରରେ ହୋଇବ ଗଞ୍ଜଣା । ବୃଦ୍ଧ ହୋଇଲେ ବୋଲିବେ ତାସ୍ୱେଣା ।।
ସ୍ୱେମନ୍ତ କରିବ ସେ କଳିଯୁଗ । ଧନ୍ୟ କଳିଯୁଗ କଳି ଦଇବ ।।
ସ୍ୱେଥି ସାବଧାନ ହୋଇବ ସେହି । ଗ୍ୟାଂନ ସାଧିବ ଗୁପତରେ ରହି ।।
ଗୁପତ ପ୍ରଘଟ ହୋଇବ ବାବୁ । ସ୍ୱଅର୍ଥ ହେବ ନାଶଯିବ ସବୁ ।।
ଯାହା ପଚ୍ଛରିଲୁ ଗ୍ୟାଂନର ମୂଳ । ସେ କଥା ସ୍ୱେବେ ରୁ ଶୁଣ ନିର୍ମଳ ।।
ଗ୍ୟାଂନର ମୂଳଟି ଜୀବରେ ଦୟା । ଭଗତ ମୂଳଟି ହେବ ନିର୍ମାୟା ।।

ଭଜନ ମୂଳଟି ହେବ ନିଶ୍ଚଳ । ଜାଗିବା ମୂଳ ପଲକ ନିଶ୍ଚଳ ।।
ସାଧିବା ମୂଳ ଦେହେ ବଳ ଥିବ । ଅଖିଳନାଥଙ୍କୁ ତେବେ ଦେଖିବ ।।
ହଂସ ଘରକୁ ପଡ଼ିଅଛି ବାଟ । ଗୁରୁ ବଚନେ ଫିଟିବ କବାଟ ।।
ଗୁରୁ ଦେଲା ମନ୍ତ୍ର ହୋଇବ କଣ୍ଠ । ବୁଝାଇ ଦେବ ସେ ଅକ୍ଷର ବାଛି ।୧୦୦।
ପଢ଼ିଲୁ ପାଠରେ ଅଛଇଂ ସେହି । ଛଡ଼ ଜନ୍ମରେ ଭେଟଣ ନ ପାଇ ।।
କଣ୍ଠ ନାହିଂ ତାର କଳା କବାଟ । କେ ପୁଣି ପ ଇବ ତାହାର ଭେଟ ।।
ଗୁରୁଙ୍କୁ ବଶଇ ବସିଛି ହାଟ । ଶିଷ୍ୟ ତହିଂ ଦେଲା ଶୁଖିଲା ମଠ ।।
ସଉଦା କରନ୍ତି ହାଟୁଆ ତହିଂ । କ୍ଷଣେ ଅବସର ତହିଂରେ ନାହିଂ ।।
ତନପୁର କଥା ପଚ୍ଛରେ ଯାହା । ସେବେ ତୋ ଆଗେ କହିଦେବା ତାହା ।।
ପାଦଠାରୁ ଗଣ୍ଠି ଭିତର ଯାଏ । ପାତାଳ ପୁରଟି ସେହୁ ବୋଲାଏ ।।
ସେହିଠାରୁ କଣ୍ଠ କମଳପୁର । ତାହାଙ୍କୁ ବୋଲି ଜାଣ ମର୍ତ୍ତ୍ୟପୁର ।।
ନାଗଲୋକ ନରଲୋକ ଯେଥିରେ । ଦେବଲୋକ ଛନ୍ତି ଯେଥି ମଧ୍ୟରେ ।।
ଦେବଲୋକ ମଧ୍ୟେ ଅଟଇ ଶ୍ରେଷ୍ଠ । ସେ ପୁଣି ଯେ ଘରେ ବାନ୍ଧିଛି ମଠ ।।
ମହନ୍ତ ନାମଟି ପରମାନନ୍ଦ । ରୂପ ନାହିଂ ତ ରଂ ନିତ ଆନନ୍ଦ ।୧୧୦।
ଲଗା ନାହିଂ ତାର ବଡ଼ ନିର୍ମଳ । ପାଞ୍ଚ ପଚ୍ଚିଶରେ ବାନ୍ଧିବ ମେଳ ।।
କେହି ନାହିଂ ତାର ବଡ଼ ନିର୍ଜନ । ଗହଳ ଚହଳ ମେଳ ସେ ସ୍ଥାନ ।।
ଖାଇବା ପଦାର୍ଥ ନଆଇ କିଛି । ତହିଂବା ମାନଙ୍କେ ପେଟ ପୁରୁଛି ।।
ବୃନ୍ଦାବତୀ ନୁହଇ ନାମ ଆଉଡ଼ା । ଶହେ କନ୍ୟା ସେନା ହୋଇଛି ଛଡ଼ା ।।
ବୁଢ଼ା ମହନ୍ତ ଉଠି ନ ପାରଇ । ସେହି କନ୍ୟାଙ୍କ ନୃତ୍ୟରେ ଚମକଇ ।।
ନୃତ୍ୟ ଗୀତରେ ତା ରାତି ଦିବସ । କେଉଂଠାରେ କିଛି ନ ଥାଇ ଦୋଷ ।।
ଦୋଷ ଛଡ଼ାଇଛି ଆଗରୁ ସେହି । ରାତି ଦିବସରେ ବାରଣ ନାହିଂ ।।
ମାତା ପିତା ନାହିଂ କରୁଛି ଗୋଳ । ବାଳକ ପରାଏ କରଇ ଖେଳ ।।
ପାଦ ନାହିଂ ତାର ଚାଲଇ ନିତି । ପାଟି ନାହିଂ ତାର ଦେଉଛି ଖାଇ ।।
ନାସା ନାହିଂ ତାର ମାରେ ନିଶ୍ୱାସ । ସବୁଠାରୁ ଗରୁ ବଡ଼ ଉଶ୍ୱାସ ।୧୨୦।
ଷୋଳ ବରଷିଆ ଅଟଇ ସେହି । ଉମଣେ ତା ଆଶା ତୁଟଇ ନାହିଂ ।।
ଉଠିବା ବସିବା ନ କରେ ବୁଢ଼ା । ପୁଅ ଝିଅ ନାହିଂ ସେ ଅଣ୍ଟୁକୁଡ଼ା ।।
ଆଖି ନାହିଂ ତାର କାନ୍ଦୁଛି ଲୁହ । ଜଗତ ଯାକ ଯେ ତାହାର ପୁଅ ।।
ବାଳ ତରୁଣ ବୃଦ୍ଧ ଅଟେ ସେହି । ତାହାଙ୍କୁ ଉପମା ଦେବାକୁ ନାହିଂ ।।

ସେଥୁଁ ଅଧିକ କି କହି ବିଶେଷ । ପଶ୍ଚାତେ ହୋଇବ ତାହାର ଦାସ ॥
ସେଥିରୁ ଅଧିକା ନାହିଁ କିଛି । ସକଳ ଘଟରେ ସେ ରହିଅଛି ॥
ଶୁଣ୍ଡରେ ଭ୍ରମର କହୁଛି ମୁହିଁ । ଅରୂପକୁ ଦେଖ ରୂପରେ ତହିଁ ॥
ଗୁରୁ ଚରଣେ କରିଥିଲେ ଆଶ । ବାସନା ଥିଲେ ଫିଟିବ ସନ୍ଦେଶ ॥
ସବୁ ତୀର୍ଥ ବ୍ରତ ଦୂରକୁ ତେଜ । ବଇଠା ଲଗାଇଂ ବୁଢ଼ିକୁ ଖୋଜ ॥
ଗୁରୁ ଚରଣେ ଲଗାଇଲେ ଧ୍ୟାନ । ତେବେ ସେ ସାଧିବୁ ମନ ପବନ ॥
ଗୁରୁଙ୍କ ଆଜ୍ଞାରେ ହେବ ଆନନ୍ଦ । ତେବେ ତୁ ଦେଖିବୁ ପରମାନନ୍ଦ ॥
ପରମ ପାଦରେ ମୋହୋର ଆଶ । ସବରେ ଭଣିଲେ ଅଚ୍ୟୁତ ଦାସ । ୩୦।

ଇତି ଶ୍ରୀ ତତ୍ତ୍ୱବୋଧନୀ ଗୀତା ଅରୂପାନନ୍ଦ ରୂପ ବର୍ଣ୍ଣନେ
ନାମ ଚତୁର୍ଥ ଅଧ୍ୟାୟଃ ॥

## ॥ ପଞ୍ଚମ ଅଧ୍ୟାୟ ॥

ରାମଚନ୍ଦ୍ର ବୋଲେ ଶୁଣିମା ଅରେ । ଆଉ ସଂଶୟ ରହିଲା ମନରେ ।୧।
ମୋ ମନୁ ସଂଶୟ ଯାଉ ତ ନାହିଁ । ଛଡ଼ଚକ୍ରକୁ ଦେବାକ ବୁଝାଇ ॥
ବୁଝାଇ କହିବା ମନ୍ତ୍ରମାନଙ୍କୁ । ହାଡମାଶ ଦେବ ସ୍ଥାନମାନଙ୍କୁ ॥
କେତେ ଅକ୍ଷରେ ମନ୍ତ୍ର ହୋଇଛନ୍ତି । କେଉଁଠାରେ କେବା ବସିଅଛନ୍ତି ॥
ଶୁଣ ରାମଚନ୍ଦ୍ର ପଚାରୁ କେତେ । ଠିକ ଠିକ କରି କହିବା ତୋତେ ॥
ଛଡ଼ ଚକ୍ରରେ ପଚିଶ ଅକ୍ଷର । ଚାରି ବେଦରେ ଚଉବନ ସାର ॥
ମୂଳ ଚକ୍ରରେ ଚାରି ସେ ଅକ୍ଷର । ବଶ ଷସ ନାମ ମନ୍ତ୍ରର ସାର ॥
ଲ ଠାରୁ ହ ଅ ପରଯନ୍ତେ ପୁଣ । ଲିଙ୍ଗାଙ୍ଗ ଚକ୍ରରେ ସେହାକୁ ଜାଣ ॥
ତହିଁ ଉପରେ ଅଟେ ଦଶ ଦଳ । ଡଅ ଠାରୁ ଫଅ ହୋଇଛି ମେଳ ॥
ଦଶ ପବନ ତହିଁରେ ଫେରଇ । ବ୍ରହ୍ମା ସାବିତ୍ରୀ ଦେବତା ସେ ତହିଁ ।୧୦।
ତହିଁ ଉପରେ ସେ ଦ୍ୱାଦଶ ଦଳ । ବାର ପବନ ସେ ତହିଁରେ ମେଳ ॥
କ ଅ ଠାରୁ ଠ ଅକ୍ଷର ତହିଁରେ । ନାରାୟଣ ଲକ୍ଷ୍ମୀ ସେହି ଠାବରେ ॥
ତହିଁ ଉପରେ ଷୋଳ ଦଳ ସାଜେ । ଷୋଳ ପବନ ତହିଁରେ ବିରାଜେ ॥
ଅ ଆ ଅକ୍ଷରଠାରୁ ଅଂ ଯାଏ ପୁଣ । ହର ପାର୍ବତୀଙ୍କ ଅଟଇ ସ୍ଥାନ ॥
ତହିଁ ଉପରେ ଦୁଇ ଦଳ ଥାଇ । ହଂ କ୍ଷଂ ଙ୍କର ଆଶ୍ରମ ସେହି ॥
ଭ୍ରୂଲତା ମଧ୍ୟରେ ନିଭୃତ ସ୍ଥାନ । ଯେଉଁଠାରେ ଅଦୃଶ୍ୟ ମନ ପବନ ॥

ସେହିଠାରେ ଅଛି ସୁବୁଦ୍ଧି ଶାଖା । ଅବଶ୍ୟ ଧନେ କାଟି ଯିବ ପଞ୍ଚୁଶା ॥
ପଞ୍ଚୁଶା କାଟି ଶୁଆ ଜୀବ ଉଡ଼ି । ଖାଲି ପଞ୍ଚୁଶା ରହିଥିବ ପଡ଼ି ॥
ମଣ୍ଡଳୀ କାଟିଣ ବାନ୍ଧଲେ ଭେଳା । ଏକା ଅକ୍ଷର ସେ କରନ୍ତି ଖେଳା ॥
ଧନେ ଖେଳ ଭଙ୍ଗି ଦେବଟି ସେହି । ଧଇଲେ ସେ ପୁଣି ଧରା ନ ଦେଇ ।୨୦।
କେତେ କହିବ ମୁଂ ତୋହ ଆଗରେ । ଲେଉଟି ପବନ ଦେଖ ଦୃଷ୍ଟିରେ ॥
ଏମତ ଯେଣୁ ଅନନ୍ତ ଅଛଇ । ଯୋଗମାୟା ତହୁଂ ତା ଘରେ ଥାଇ ॥
ତଥି ଉପରକୁ ରହିଲା ବିନ୍ଦୁ । ବିନ୍ଦୁ ମଧ୍ୟରେଟି ଅଛଇ ସିନ୍ଧୁ ॥
ବିନ୍ଦୁକୁ ଭେଦିଲେ ପାଇବ ସବୁ । ବିନ୍ଦୁ ଛଡ଼ା କେହି ନାହିଂଟି ବାବୁ ॥
ଏହି କଥାମାନ ଦେଲି ବୁଝାଇ । ଯହୁଂ ତୁ ମୋହୋର ଚରଣ ଛୁଇଂ ॥
ସପ୍ତମ ଘାରେ ଚତୁର୍ଦ୍ଦ ଅକ୍ଷର । ତେବେ ତୁ ଜାଣିବୁ ଏକା ଅକ୍ଷର ॥
ଏକ ଅକ୍ଷରକୁ କରିବୁ ଭଏ । ଉଂଆସ ନଶିରେ ଚନ୍ଦ୍ର ଉଦଏ ॥
ଶୁଣି ରାମଚନ୍ଦ୍ର ଆନନ୍ଦ ହେଲ । ଆହୁର କଥାଏ ମନେ ପଡ଼ିଲ ॥
ମନ୍ତ୍ର ମାନକୁ ବୁଝାଇ କହିବ । ମନରୁ ସଂଶଏ ମୋର ଦହିବ ॥
କେତେ ଅକ୍ଷରେ କି ମନ୍ତ୍ର ହୋଇବ । ଏମାନ କହି ସଂଶଏ ଛେଦିବ ।୩୦।
ଗୁରୁ ଶିଷ୍ୟ ପୁଣି କି ମନ୍ତ୍ର ଦେଲେ । କେଉଂ ବିଧିରେ ଏମାନ ପାଇଲେ ॥
ହେଥିର ବିଧାନ କହିବା ମୋତେ । ତୁମ୍ଭଠାରୁ ଶୁଣି ଯିବ ପରତେ ॥
ପୂଜାର ବିଧାନ ମନ୍ତ୍ର ଧିଆନ । ଏବେ ଶୁଣିଲିକୁ ହୋଇଲା ମନ ॥
ଏବେ କହିବାକ ପୂଜା ବିଧାନ । ପ୍ରଥମେ ଗୁରୁଙ୍କୁ ଦେବ ଆସନ ॥
ନୂଆ କମଳ ଗୋଟାଏ ରଖିବ । ପାଦ ଧଉତ କର୍ମ ଆଚରିବ ॥
ଘଟ ପ୍ରାଏ ଅଗେ ହୋଇବ ଉଭା । ପୁଣି କରାଇବ ଚନ୍ଦନ ଶୋଭା ॥
ଗୁରୁ ଅଙ୍କରେ ସକଳ କରିବ । ନୂଆ ବସନ ତାଙ୍କୁ ପିନ୍ଧାଇବ ॥
ତାଙ୍କ କାନ୍ଧରେ ଦେବ ଯେ ଉତୁରି । ପୂଜା ସାମଗ୍ରୀ ଦେବ ବିଧିକରି ॥
ଆପଣେ ନୂଆ ବସନ ପିନ୍ଧିବ । ମନ୍ତ୍ର ଆପଣା ତେବେ ଯେ ହୋଇବ ॥
ମନ୍ତ୍ରକୁ ପୂଜିବ ବସ୍ତ୍ର ପିନ୍ଧାଇ । ତଥି ଉପରକୁ ଉତୁରି ଦେଇ ।୪୦।
ପୁଷ୍ପ ଚନ୍ଦନରେ ସେ ପୂଜା କରି । ଚହ୍ଲାଇ ଦେବେ ସେ ହାତକୁ ମାରି ॥
ମନ୍ତ୍ରରାଜ ଗୋଟି ତହିଂରେ ଥିବ । ହିଂବୀଜ ତଥି ଉପରେ ରହିବ ॥
..ନାମ ତହିଂ ମଧ୍ୟରେ ଥାଇ । ହିଂବୀଜ ଦେହରେ ଗୋପ୍ୟାନ ହୋଇ ॥

ଗୋପ୍ୟାନେ ଅଛଇ ସେ ମାହାମନ୍ତ୍ର । ଅବନା ଅଜପା ଛନ୍ତ୍ର ଗୁପତ ॥
ଗୁରୁ କଲ୍ୟାଣେ ଦେହ ଶୁଦ୍ଧ ହେବ । ଓଁକାର ବସାଇ ଯନ୍ତ୍ର ଲେଖିବ ॥
ସବୁ ମନ୍ତ୍ରରଟି ଓଁକାର ମୂଳ । ସବୁ ମନ୍ତ୍ରରେ ବନ୍ଦୁ ଅଟେ ଠୁଳ ॥
ଢନମାଢ଼ ସୁନା ଦକ୍ଷିଣା ଦେବ । ହାତ ମାରଣ ସକଳ ବୁଟିବ ॥
ଗୁରୁଙ୍କ ଠାରେ ନ କରିବ ମାୟା । ହୋଇପାରେ ଯେବେ ଗୁରୁଙ୍କ ଦୟା ॥
ତାଙ୍କ ଅନୁଗ୍ରହେ ହେବ ସକଳ । ପଞ୍ଚାଶ ଅକ୍ଷରେ ସମସ୍ତେ ଠୁଳ ॥
ପଣ୍ଡିତ ଆଗରେ ଯେହ୍ନା ନ କହ । ଲକ୍ଷ ପଣରେ ନ ମାନିବ ସେହ ।୫୦।
ଯାହାର ଦେଖିଲ ଦୋଷ ଦୁର୍ଗୁଣ । ପାଞ୍ଚି ଫେଡ଼ି କହିଦେଲେ କାରଣ ॥
କାରଣ ଲେଖାକୁ ସମସ୍ତେ ଗୃହିଂ । ମିଛ କହିବାକୁ ସେଠାରେ ନାହିଂ ॥
ସେଠାରେ ହେଉଛି ପାତ ପରୀକ୍ଷା । ଯମପୁର ବୋଲି ତାହାକୁ ଲେଖା ॥
ଦଣ୍ଡିବା ଲୋକକୁ ଦଣ୍ଡରେ ଦେଇ । ମହନ୍ତ ଗଲା ମଠରୁ ପଳାଇ ॥
ମହନ୍ତ ଯହୁଂ ସେଠାରୁ ସେ ଗଲା । ଭଙ୍ଗିଲା ଘର ପଡ଼ିଣ ରହିଲା ॥
ଶୂନ୍ୟରେ ଅଇଲା ଶୂନ୍ୟରେ ଗଲା । କେହ୍ନା ନ ଜାଣଇଂ ମହନ୍ତ ପିଲା ॥
ପଦ ପଦ କରି ଦେଲି ବୁଝାଇ । ଆଉ କହିବାକୁ ଆଦେଶ ନାହିଂ ॥
ମଠ ଭାଙ୍ଗିଗଲା ହେଲା ଉଶ୍ୱାସ । ଭାବରେ ଭଣିଲେ ଅଚ୍ୟୁତ ଦାସ ।୫୮।

ଇତିଶ୍ରୀ ତତ୍ତ୍ୱବୋଧିନୀ ଗୀତା ବ୍ରହ୍ମ ନିରୂପଣ କଥନେ ନାମ
ପଞ୍ଚମୋ ଅଧ୍ୟାୟଃ ॥

## ॥ ଷଷ୍ଠ ଅଧ୍ୟାୟ ॥

ଶୁଣି ରାମଚନ୍ଦ୍ର ପୁଣି ବୋଇଲା । ଅନ୍ତର ମନେ ସଂଶୟ ଲଗିଲା ।୧।
ଭଗତମାନଙ୍କ ମହିମା ଗୁଣ । କହିବା ହେଉ ଭଗତ ଲକ୍ଷଣ ॥
ବୋଲନ୍ତି ରାମ ଶୁଣ ମନଦେଇ । କେତେ ତୋ ଆଗରେ କହିବା ଫେଇ ॥
ଆଲକୁଡ଼ାରେ ମୋ ଭଗତ ଥିବ । କରଣ କୁଳରେ ସେ ସହିଦେବ ॥
କାଶୀ ଭଗତ କଟକରେ ଥିବ । ବ୍ରାହ୍ମଣ କୁଳରେ ଜନମ ହେବ ॥
ସୂର୍ଯ୍ୟମଣି ବୋଲି ଭଗତ ସାର । ଝରସୁଆଂ କୂଳେ ତାହାର ଘର ॥
ଶ୍ୟାମ ଭଗତ ଯେ ମୋର ଫକୀର । ଗୋବିନ୍ଦ ଭଗତ ମୋର କୁମର ।

ସହଜ ସମାଧି ଜାଣିମ ସେହୁ । ଥିବ ଗୁପତେ କେହୁ ନ ଜାଣେଇଂ ॥
ଆହୁର ଭଗତ ହୋଇବ ମୋର । ଶୁଦ୍ର ଗ୍ରାମ କର୍ଣ୍ଣ ଦେଇ ତୋହୋର ॥
ହରି ଭଗତ ହରଷରେ ଥିବ । ଗୁପତେ ଚହ୍ନିଣ କରିବ ଭାବ ।୧୦।
ଲକ୍ଷ୍ମୀ ଭଗତ ଯେ ମୋହର ଥିବ । ଓଡ଼ କୁଳରେ ଜନମ ହୋଇବ ॥
ମଲ୍ଲୀପୁରରେ ଯେ ଭକତ ପୁଣ । ଅତୀଅ ଶୁଦ୍ଧ ତା ନାମ ନାରଣ ॥
ମୁରଲୀ ଭଗତ ହୋଇବ ତହିଂ । ସୁଜ ଭଗତ ମୋହୋର ଅଟଇ ॥
ଶିବ ଭଗତ ମୋ ନାପିତ କୁଳେ । ମଠ କରିଥିବ ବେଲ ବଣରେ ।
ଆହୁରି ଭଗତ ଭଜନେ ସାର । କରଣ କୁଳରେ ଯେ ଗଙ୍ଗାଧର ॥
ବସୁ ଭଗତ ଯେ ମୋହୋର ଥିବ । ନାମ ଚହ୍ନିଣ ଅନାମେ ଖେଳିବ ॥
ଅହୁର ଭଗତେ ଯେ ରଙ୍ଗାଧର । ଜାତରେ ଅଟଇ ସେହୁ କୁମ୍ଭାର ॥
ଶାଳଶୀଳ ବଟ ପାଖରେ ଥିବ । କେହୁ ନ ଜାଣିମ ଗୁପତ ଭାବ ॥
ଥିର ଭକ୍ତିରେ ଥୋକେ ଭକ୍ତ ଥିବେ । କେ ଅବା ତାହାଙ୍କୁ ଚହ୍ନି ପାରିବେ ॥
ବାଇଆ ବାତୁଳ ଥୋକେ ହୋଇବେ । ଭଗତେ ଗଣନା ଯେ ହୋଇଥିବେ ।୨୦।
ଯୁଣ୍ଡରେ ଭଗତ ଯେ ତିନି ଜଣ । ଗୋବିନ୍ଦ ନବୀନ ଦୀନା ବ୍ରାହ୍ମଣ ।
ମାଧବ ଅଟଇ ଭଗତ ମୋର । କରଣ କୁଳରେ ଜନମ ତାର ॥
ଗୌରାଙ୍ଗ ଦୀକ୍ଷା ତା ବଢ଼ାଇ ସ୍ଥିର । ଆହୁରି ଭଗତ ଅଛଇ ମୋର ॥
ଅବ୍ୟୟେ କବାଟ ତହିଂ ଅଛଇ । ତାର ନିକଟେ ଥିବ ତୀର୍ଥ ନଈ ॥
ପାଣ୍ଡବେ ସେଠାବେ କରି ଆଶ୍ରମ । ସେଠାରେ ଭଗତ ଚଉଦ ଜଣ ॥
ମଣିଖଣ୍ଡିରେ ତିନି ଭକ୍ତ ଥିବେ । ଗୁପତେ ସେଠାରେ ଖେଳ କରିବେ ॥
ଆବର ଭଗତ ରାଜ ନଗର । କିଶୋର ଭଗତ ତହିଂରେ ସାର ॥
ବିଶେଷ ଭଗତ ଅଟେ ମାଗୁଣି । ସେବାରେ ଭକ୍ତ ଅଛଇ ଯେ ପୁଣି ॥
ମୋହ ସବାରେ ନିଷ୍କଳରେ ଥିବ । ମୋହୋ ନିକଟେ ସେ ପୁଣ ଆସିବ ॥
ନେମ୍ବର ଗ୍ରାମରେ ଅଛଇ ମଧୁ । ଗେହ୍ଲାଇ ଗ୍ରାମରେ ଅଛଇ ସାଧୁ ।୩୦।
ଶୁକ୍ରପଡ଼ାରେ ବଟେକ ଅଛୁ । ପିପଳ ମୂଳରେ ତପ କରୁଛୁ ॥
କେନ୍ଦୁପାଟଣାରେ ଅଛଇ ବଟ । ମରିଚ ଅଙ୍ଗିରି ହୋଇବେ ଭେଟ ॥
ଭେଟ ହୋଇବେ ଋଷି ଯଉଂ ଦିନ । ଅନ୍ଧ ପାଇହିବେ ସେ ଚକ୍ଷୁଦାନ ॥
ଗୁପତେ ଅରଣ୍ଡି କରିବେ ମଠ । ସେ ପୁଣି ପାଇବେ ତାଙ୍କର ଭେଟ ॥

ବାଳେକ ଲୀଳା ସେଠାରେ ହୋଇବ । ପୁଣି କଳ୍କି ବଦନେ ଲୀଳା ଶୁଝିବ ॥
ସେଠାବେ ଥିବେ ଭଗତ ମୋହୋର । ନାମ ଜପିଣ ହୋଇଯିବେ ପାର ॥
ହାତୀ କମଳ ତହିଂ ନିରୂପିତ । ଦାନୀ ପଣକୁ ବଢ଼ାଇ ନିଅନ୍ତ ॥
ସ୍ତ୍ରୀ ମଧ୍ୟରେ ପତିବ୍ରତା ସେହି । ସ୍ୱାମୀଙ୍କ ସେବା ନିଅନ୍ତ କରଇ ॥
ପ୍ରାଣବନ୍ଧୁ ସେ ଭଗତରେ ଶ୍ରେଷ୍ଠ । ଚିହ୍ନନ୍ତି ମଧୁ ସାଗର ନିକଟ ॥
ବଶ୍ୟ ଭଗତ ସେ ଅଟଇ ମୋର । ନାଥିଆ ନାମରେ ଭଗତ ସାର । ୪୦ ।
ନାନା ଭଗତେ ମୋ ଲୀଳା ଦେଖିବେ । ନିତ୍ୟ ବିହାପକୁ ସେ ପୁଣ ଯିବେ ॥
ସେ ଦିନ ଘୋର କଳି ପ୍ରକାଶିବ । କଳଙ୍କୀ ଦେଖିବ ଯେ ଅବା ଥିବ ॥
ଥୋକେ ଭଗତ ମେଳାକୁ ସେ ଯିବେ । ଥୋକେ ଭଗତ କଳଙ୍କୀ ଦେଖିବେ ॥
ଏକଥା ମାନ କହିଲି ଯେ ତୋତେ । କା ଆଗେ ନକହି ରଖ ଗୁପତେ ॥
ହସି ରାମକୁ କୋଳେ ବସାଇଲେ । କୋଳେ ଧରି ମୁଖେ ଚୁମ୍ବନ ଦେଲେ ॥
ଗୁରୁ ହସିଲେ ନମିଲେ ସଂଖୋଳା । ସବୁ ପାପଯାକ ତା ମୁଣ୍ଡେ ମେଲା ॥
ହସି ବୋଇଲେ ରେ କୁମର ମୋର । କି କି ଅଛି ମନେ ସେବେ ପଚାର ॥
ରାମଚନ୍ଦ୍ର ବୋଲେ ଶ୍ରୀଗୁରୁ ତହିଂ । ଟୁସ୍ୱା ଅବାଡ଼କୁ ଦେବ ବୁଝାଇ ॥
ଗୁରୁ ବୋଇଲେ ଶୁଣ ରାମ ତୁହି । ଅବାଡ଼ ସାଧନା ଦେବା ବୁଝାଇ ॥
ଅବାଡ଼ ସାଧିଲେ ନ ପଡ଼େ ବାଡ଼ । ଗୁରୁଚରଣେ ଚିତ୍ତ ରଖ ଦୃଢ଼ ।୫୦।
ଗୁରୁ ଦେଲ ମନ୍ତ୍ର ହୃଦରେ ଧରି । ପଲକେ ନିଷ୍ଟିଳେ ଥିବ ଜଗିରି ॥
ସୂର୍ଯ୍ୟ ମଣ୍ଡଳକୁ ଦେଲେ ସ୍ଥିରଦୃଷ୍ଟି । ଲୋକନ ହେଲେ ଯିବ ବାଟ ଫିଟି ॥
ଫିଟିଲେ ବାଡ଼ ଅବାଡ଼ ଦେଖିବୁ । ଦେଖିଲେ ରୁ ମନେ ବୋଧ ହୋଇବୁ ॥
ପଞ୍ଚୁ କଳା ହୋଇ ରୂପ ଦିଶିବ । ବୃନ୍ଦା ବୃନ୍ଦା ହୋଇ ଫିଟିଣ ଯିବ ॥
ସେ ରୂପେ ଦିଶିବ ଜାଲ ଗୁଣ୍ଡୁଚି । ନୟନ ଗୋଚରେ ରହିବ ବୁଡ଼ି ॥
ପ୍ରାତ କାଳରୁ ସେମନ୍ତ କରିବୁ । ଅଣ ଉଦୟରୁ ଜଗିରି ଥିବୁ ॥
ଅଙ୍ଗ ନିର୍ମଳ ତୋ ନିର୍ମଳ ମନ । ତେବେ ପାଇବୁ ଅବାଡ଼ ଦ୍ରଶନ ॥
ଅବାଡ଼ ଫିଟିଲେ ବାଡ଼ ଫିଟିବ । ତେବେ ତୋ ମନରୁ ସଂଶୟ ଯିବ ॥
ବୋଲନ୍ତି ରାମ ଶୁଣ ଦେଇ ମନ । ସେବେ କହିବା ଯେ ଶୂନ୍ୟ ଲକ୍ଷଣ ॥
ଆକାଶ ନିର୍ମଳ ନିର୍ମଳ ସବୁ । ପ୍ରାତରୁ ଶ୍ରୀହାନ ବନ୍ଧି ସାଧିବୁ ।୬୦।
ଗୁରୁ ଚରଣେ ଦଣ୍ଡବତ କରି । ଶୂନ୍ୟ ମନ୍ତ୍ରକୁ ଥିବୁଟି ସୁମରି ॥
ପଲକେ ନିଷ୍ଟିଳେ ନିଷ୍ଟଳ ମନ । ନିଷ୍ଟିଳେ ଥିବଟି ନାସା ପବନ ॥

ପଶ୍ଚିମ ଦଗକୁ କରବୁ ମୁଖ । ମୀନକୁ ଯେସନେ ନରେଖେ ବକ ॥
ନରେଖି ଦେଖିବୁ ଆପଣା ଛାୟା । ଆକାଶ ମଣ୍ଡଳେ ଦେଖି ତୁ ବ୍ରହ୍ମାଂ ॥
ଆକାଶେ ଦେଖିବୁ ଯଉଂ ରୂପକୁ । ବଳଭଦ୍ର ବୋଲି ଚହ୍ନିବୁ ତାଙ୍କୁ ॥
ଶୁକ୍ଳ ବର୍ଣ୍ଣ ଛାଇ ଯେବେ ଦର୍ଶିଲେ । ପୂର୍ବ ପାପମାନ ଯିବ ତୋ ଭଲେ ॥
ହରଦ୍ରା ବର୍ଣ୍ଣ ଦର୍ଶିଲେ ତୋ ଛାଇ । ଧନ ସମ୍ପଦ ପୁନ ଯେ ମିଳଇ ॥
ଯେବେ ନୀଳବର୍ଣ୍ଣ ଦେଖିବୁ ଛାଇ । ସବୁ ଅମଙ୍ଗଳ ଆସି ମିଳଇ ॥
ଯେବେ ସେ ଦେହ ହେବ ପଞ୍ଚକଳା । ସାଧୁଙ୍କ ସଙ୍ଗରେ କରବୁ ମେଳା ॥
ଯେବେ ଛାଇ ଗୋଟି ଗୋଳଆ ହୋଇ । ସବୁ ଅପବାଦ ଆସି ମିଳଇ ।୭୦।
ଯାହାର ମନ ଯେମନ୍ତ ଅଛଇ । ନର୍ମଳ ନୋହିଲେ ପାଇବ କାହିଂ ॥
ଆପଣା ମନକୁ ଆପେ ଦେଖିବ । ଗୁରୁ ସିନା ବାଟ ବତାଇ ଦେବ ॥
ଯାହାର ଯେମନ୍ତ ଥିବ ବିଶ୍ୱାସ । ଶ୍ରବରେ ଭଣିଲେ ଅଚ୍ୟୁତ ଦାସ ।୭୩।

ଇତଶ୍ରୀ ତତ୍ତ୍ୱ ବୋଧନୀ ଗୀତା ଅବାଢ଼ ଛାୟା ଦ୍ରଶନ କଥନେ ନାମ
ଷଷ୍ଠ ଅଧ୍ୟାୟଃ ॥

## ॥ ସପ୍ତମ ଅଧ୍ୟାୟ ॥

ରାମଦାସ ଶୁଣି ସେ ଗଦଗଦ । ଅନ୍ତରେ ଗୁପତ ରହିଲା ଭେଦ ।୧।
ପୁନ ଅନହତ କହିଲ ନାହିଂ । ଆବର ଆଗତ କହିବା ଫେଇ ॥

ଶ୍ଳୋକ — ଭୃଙ୍ଗ ଝଙ୍କାର ସାଗରଂ
ପାରୁଆ କପୋତ କୁକ୍କୁଟଂ ।
ଶିଖି କେକା କାସ୍ୟଞ୍ଚ
ବାଦ୍ୟ ଖଣ୍ଡ ବନ୍ଦ୍ୟ ଯଥଃ ।୦।

ଶୁଣ ରାମଚନ୍ଦ୍ର କହିବା ତୋତେ । ଦ୍ୱାଦଶ ଶବଦ ବୁଝ ଯେମନ୍ତେ ॥
ରାଜ ନଶବଦେ ଶବଦ ଭେଦ । ଅବୋଧ ମନକୁ କର ତୁ ବୋଧ ॥
ମନ ନଶ୍ଚଳ ଥିବଟି ତୋହୋର । ତେବେ ତୁ ଦେଖିବୁ ସପତ ବାର ॥
କର୍ମ ବାତ ପିତ୍ତ ନ ଥିବ କିଛୁ । ତେବେ ତୁ ଶବଦ ଭେଦବୁ ବାଛୁ ॥
ବଢ଼ି ପ୍ରବଳେ ସବୁ ନଦୀ ମେଳ । କାହିଂ ଚହ୍ନିବୁ କେଉଂ ନଦୀଜଳ ॥

ବ୍ୟାପ ପ୍ରବଳେ ନୁହଇ ବାରଣ । କେହ୍ନୁଂ ଶବଦକୁ ଗମିବୁ ପୁଣ ॥
କମଳ ଆସନେ ବସିବୁ ଶୁଦ୍ଧ । ଗୁରୁ ଚରଣେ ଦଣ୍ଡବତ ହୋଇ ॥
ପବନ ସ୍ଥକତ କରିବୁ ବାରେ । ଆନନ୍ଦେ ପାଇବୁ ଗୋଲ୍ହାଟରେ ।୧୦।
ହାଟ ଶବଦ ଶୁଭିବ ଗହଳ । ବାର ଶବଦେ ଶୁଭିବ ଚହଳ ॥
ତହିଂ ଭିତରୁ ପବନ ବାଜି । ଭ୍ରମର ଶବଦ ତହୁଂ ଶୁଣିବୁ ॥
ତହିଂ ପାଶେ ପୁଣ ସ୍ୱେବ ଝିଙ୍କାର । ପବନ ସାଧିଲେ ପାରିବୁ ବାରି ॥
ଶାଙ୍ଖ ଶବଦକୁ ରଖିବୁ ଶୁଦ୍ଧ । ପାସ୍ର ଶବଦ ହେଉଅଛୁ ତହିଂ ॥
କପୋତ ଶବଦ ତହିଂ ଭିତରେ । କୁକୁଡ଼ା ରବ ଶୁଣିବୁ କର୍ଣ୍ଣରେ ॥
ମୟୂର ରବକୁ ବାରଣ କରି । ହେତୁରେ ମନ ଚଞ୍ଚଳ ନ କରି ॥
ନଗମ ଭୂମି ସେଠାରେ ଅଛଇ । ବାଦ୍ୟ ଶବଦ ସେ ଘଣ୍ଟ ବାଜଇ ॥
ଶବଦରେ ବନେ ସବୁ ପାଇବୁ । ନଶବଦ ଘରୁ କଥା ଶୁଣିବୁ ॥
କବାଟ ଫେଡ଼ିଲେ ପଶିବୁ ଘର । ସକଳ ଅଛୁ ଯେ ଦେହ ଭିତର ॥
ଦେହ ହଜିଲେ ସବୁଯିବ ହଜି । କାହୁଂ ତୁ ପାଇବୁ ସେମାନ ଖୋଜି ।୨୦।
ଗୁରୁ ପୂଜାବଧି କରିବୁ ବାବୁ । ଗୁରୁ ଦୟାରେ ସକଳ ପାଇବୁ ॥
ଧୁନ ଶୁଣିଲେ ଅନହତ ଯିବୁ । ସେକାଙ୍ଗ ମୂରୁତ ତହିଂ ଦେଖିବୁ ॥
ଯେତେବେଳେଯାଇ ଯେ ସ୍ଥାନେ ହେବୁ । ଦେହ ହଜାଇ ତୁ ଦେହରେ ଥିବୁ ॥
ପର୍ବତ ସମାନେ କଲେ ଯେ ପାପ । ସେ ସ୍ଥାନରେ ନାହିଂ ମରଣ ଧାପ ॥
ଯେବେ କାଳଭୟ ଲାଗିବ ତୋତେ । କେହ୍ନ ନ ଜାଣିମେ ଥିବୁ ଗୁପତେ ॥
ଯାହାକୁ ସେ ପଥ ଅଛୁ ଗୋଚର । ତାକୁ ନ ଥାଇ ଭୟ ଅନ୍ଧକାର ॥
କାହାକୁ ସେ ପୁଣି କରିବ ଭୟେ । ଉଂଆସ ନଶିରେ ଚନ୍ଦ୍ର ଉଦୟେ ॥
ସେଥୁଂ ଅଧିକ କେବା ପଦ କହୁଂ । ଅଚ୍ୟୁତ ତାହାର ପାଦକୁ ଧାଉ ॥
ପୁଣି କହନ୍ତି ସେ କୁମରମଣି । କୃତାର୍ଥ ହେଲି ମୁଂ ସେ ପଦ ଶୁଣି ॥
କାହାକୁ ପୁଚ୍ଛିଲ ସେମାନ ପାଇ । ସେ କଥା ମୋ ଆଗେ କହ ବୁଝାଇ ।୩୦।
କାହାକୁ ପୁଣ ନଥିବ ଯେ ଭୟେ । କହିଂ ସ୍ଥାନକୁ କରିଥିବୁ ଲୟେ ॥
ପ୍ରଥମେ ପୂଜିବୁ ଗୁରୁ ପୟର । ଗୁରୁକୁ ପଚାରି ତୁ ପୂଜା କର ॥
ଯୋଗମାୟା ଯେବେ ଛାଡ଼ିବ ବାଟ । ତେବେ ସେ ଫିଟିବ ହେତୁ କବାଟ ॥
କବାଟ ଫିଟିଲେ ପଶିବୁ ଘର । ବସ୍ତୁ ଦେଖିବୁ ଦେଉଳ ଭିତର ॥

ବାହାରେ ଭିତରେ ଅଛଇଂ ହଅଂ । ଗୁରୁ ବଚନେ ତା ଦର୍ଶନ ପାଅ ॥
ଦର୍ଶନ ପାଇଲେ ଫିଟିବ ଭ୍ରାନ୍ତ । ସନମାନ କରେ ସେ ଜନ୍ମପଥ ॥
ଜନ୍ମପଥ ଯେବେ କରବ ମାନ । ତେବେ ସେ ତାର ସୁଫଳ ଜୀବନ ॥
ଦେବୀ ମାନସିକେ କରିବୁ ପୂଜା । ଉପହାର ଦେବୁ ସେ ବଳାଭୋଜା ॥
ନୂଆ ଖଡ଼ି ଗୋଟି ରଖିବୁ ବାବୁ । ଶାଢ଼ୀ ସୁନା ବଳା ତାହାକୁ ଦେବୁ ॥
ଗୁରୁଙ୍କ ସମୀପେ ପୂଜା କରାଇ । ବର ମାଗିବୁ ଦଣ୍ଡବତ ହୋଇ ।୪୦।
ଗୁରୁ ଖଡ଼ି ଗୋଟି ଦେବେ ଉଠାଇ । ତେବେ ସେ ସ୍ନେହ ପାତକୁ ତରଯାଇଂ ॥
ନ ଦେଖିଲ ପଦ ଦେବେଟି କହି । ନ ଦେଖିଲ ପଥ ଦେବେ ଦେଖାଇ ॥
ଦେବୀ ଅନୁଗ୍ରହେ ଗ୍ରନ୍ଥବ ବାଟ । ଫିଟିଯିବ ତୋର ମାୟା କବାଟ ॥
ଚଉଦ ଅକ୍ଷର ମନ୍ତ୍ରଂ ଅଛଇ । ଗୁରୁଙ୍କ ଦୟାରେ ସେ ପାଠ ପାଇ ॥

ଶ୍ଳୋକ — ଚତୁର୍ଦ୍ଦିଗେ ସିଗାୟତ୍ରୀ
ସରସ୍ୱତ୍ୟଶ୍ଚ ଚତୁର୍ଦ୍ଦଶଃ ।
ଚତୁର୍ଦ୍ଦିଗେ ସିସାବତ୍ରୀ
ଅଜପାଞ୍ଚ ତଦକ୍ଷର ।
ଓଁ ବାକ୍ୟଦେବୀ ନମୋନମଃ ॥

ଗୁରୁ ବଚନେ ପୂଜା ବିଧି କରି । ସେହି ମନ୍ତ୍ରଂକୁ ବସିବ ସୁମରି ॥
ସବୁ ମନ୍ତ୍ରର ସେହି ଅଟଇ ମୂଳ । ଓଁ ବୀଜ ରୂପରେ ଯେମନ୍ତେ ଠୂଳ ॥
ଠୂଳ ଭିତରେଟି ଗୋଲେଖ ସ୍ଥାନ । ସକଳ ତତ୍ତ୍ୱଂରୁ ହେଲା ଭିଆଣ ॥
ହାତେ ଚଉକେ ଅଟେ ସେହ୍ନଂ ସ୍ଥାନ । ସେଠାରେ ପ୍ରଭୁ କରନ୍ତି ଶୟନ ॥
ଅନନ୍ତ ପଯ୍ୟଙ୍କରେ ଯୋଗନିଦ୍ରା ଯାଇ । ବାକ୍ୟଦେବୀ ତାଙ୍କ ପାଦେ ସେବଇ ॥
ଯୋଗେ ପ୍ରମାଣ ପୁରୁଷ ଅଟଇ । ସ୍ତ୍ରୀ ପୁରୁଷ ଦୁଇଜଣ ତହିଂ ।୫୦।
ଅଣାକାର ପ୍ରଭୁ ଅଛନ୍ତି ସହିଂ । ତହିଂ ଯୋଗମାୟା ବାରଣ ନାହିଂ ॥
ପୁଣି ଯେତେବେଳେ ନିଦ୍ରା ଭାଙ୍ଗିଲ । ଯୋଗମାୟା ଯୋଗୁଂ ସଂସାର ହେଲ ॥
ଯୋଗମାୟାକୁ ଅଙ୍କେଦେଲେ ହରି । ଷୋଳ ବଇକୁଣ୍ଠେ ଥିବେ ବିହରି ॥
ଷୋଳ ବଇକୁଣ୍ଠ ସେହି କଣ୍ଠତଟ । ପାପୀଙ୍କି ଦୂର ଗୁରୁଙ୍କୁ ନିକଟ ॥
ସେଠାରେ ଅଛନ୍ତି ଯେ ସପ୍ତସ୍ୱର । ବାକ୍ୟଦେବୀ ପଦ କରେ ଉଚ୍ଚାର ॥
କଣ୍ଠତଟେ ଥାଇ କରଇ ଦୟା । ତାହାର ନାମଟି ସେ ଯୋଗମାୟା ॥

ଯୋଗମାୟା ଯାକୁ ଗୁରୁଢ଼ଇ ବାଟ । ତେବେ ସେ ଫିଟଇ ଜ୍ଞାନ କବାଟ ।।
କବାଟ ଫିଟିଲେ ଦେଖିବୁ ରୂପ । ଅନ୍ଧାର ଘରେ ଯେ ଜଳୁଛୁ ଦୀପ ।।
ଭ୍ରୂଲତା ସନ୍ଧି ନିକଟ ମଧ୍ୟରେ । ଗୋଲେଖ ସନ୍ଧି ନିକଟ ସ୍ଥାନରେ ।।
ସେହି ସ୍ଥାନର ଅନେକ ମହିମା । ଗୁରୁ ନ ଦେଲେ ନ ମିଳଇ ସୀମା ।୬୦।
ଗୁରୁ ଚରଣେ ଯାହାର ବିଶ୍ୱାସ । ସେ ଅବା କଷ୍ଟରେ ପାଇବ ଲେଶ ।।
ଲେଶ ପାଇବେ ନାଶିବେ କଳୁଷ । ପଦ ପଦାବଳୀ ହୋଇବ ଦୃଶ୍ୟ ।।
ଏବସେ ହୋଇବ ହରି ଅନନ୍ଦ । ଭବରେ ଭଣିଲେ ଅଚ୍ୟୁତାନନ୍ଦ ।୬୩।

ଇତିଶ୍ରୀ ତତ୍ତ୍ୱବୋଧନୀ ଗୀତା ଦେବପୂଜା ନିର୍ଣ୍ଣୟେ ନାମ ସପ୍ତମ ଅଧ୍ୟାୟଃ ।।

## ।। ଅଷ୍ଟମ ଅଧ୍ୟାୟ ।।

ପୁଣି ରାମଚନ୍ଦ୍ର ପାଶେ ବସାଇ । ଆନନ୍ଦ ହୋଇ କଥା ପଚାରଇ ।୧।
ବୋଲଇ ସକଳ ବୁଝାଇ ଦେଲ । ମନ୍ତ୍ର ମାନଙ୍କୁ ଯେ ଗୁପତ କଲ ।।
ଯେଣୁ ମନ୍ତ୍ରମାନ ଗୁପତ ହେଲା । ମନରୁ ସଂଶୟ ମୋର ନଗଲା ।।
ଗଙ୍ଗା କୂଳରେ ମୁଂ କଲି ଯେ ବସା । ତେବେ ନ ହରିଲା ମୋହୋର ତୃଷା ।।
ତୃଷାରେ ମୋହୋର ଶୁଖିଲା କଣ୍ଠ । କି ହେବ ଥାଇ ମୁଂ ଗଙ୍ଗାର ତଟ ।।
ରାମଚନ୍ଦ୍ର ବାଣୀ ଶୁଣି ଅଚ୍ୟୁତ । ବୋଲଇ ଶୁଣରେ ବାଳକ ସୁତ ।।
ଭଲ ପଚାରୁ ତୁ କୁମରମଣି । କେତେ ଜଂଜାଳ ତୁ ଲଗାଉ ପୁଣି ।।
ବଡ଼ କଠିନ ସେ ଗହନ କଥା । ଛଅ ସଙ୍ଗୀତାରେ ଅଛେ ବେବସ୍ଥା ।।
ଗୁପତ ଅଟଇ ପ୍ରଘଟ ନୋହେ । ଗୁରୁ ଶିଷ୍ୟ ବିନୁ କେ ଅବା କହେ ।।
ପ୍ରଘଟ କଲେ ଅପ୍ରାଧ ପାଇବୁ । ଅଳପକେ ଅବା କାହାକୁ କହିବୁ ।୧୦।
ଅଢ ବକଲ ତୁ ହେଲୁ ଆରତ । ତେଣୁ କହିଲି ମୁଂ ଥିଲା ଗୁପତ ।।
ଶ୍ଳୋକ ନ ମନ୍ତ୍ର ବତିଶ ଅକ୍ଷର । ନିବୀଜ ମଧ୍ୟରେ ହେଲା ବା ବାର ।।
ମହା ମନ୍ତ୍ର ତହୁଂ ବାହାର ହେଲା । ଷୋଳ ବତିଶରେ ମିଳା ଲୁଚିଲା ।।
କହିଲି ଠିକରେ ହୃଦେ ବିସ୍ତର । ନିବୀଜ ଦେହରେ ହାତକୁ ମାର ।।
ଆଦ୍ୟ ବୀଜ ଗୋଟି ସେ ଶୂନ୍ୟକଳା । ମଧ୍ୟ ବୀଜ ଶୂନ୍ୟ କଳାକୁ ମିଳା ।।
ଅଠକଳା ମିଶି ପ୍ରାନ୍ତ ବୀଜରେ । ଥାଉ କି ସଂଶୟ ତୋର ମନରେ ।।
ନାମ ଗୋଟିକେ ସେ କଳା ଗୋଟିଏ । କଳା ନଥିଲେ କି ନାମ ବୋଲାଏ ।।

ଆଦ୍ୟରେ ଅନାଦି ଅଛନ୍ତି ବାଣ୍ଟି | ଅକ୍ଷର ଲେଖୁଛୁ କଳାକୁ ବାଣ୍ଟି ||
ଷୋଳ ନାମକୁ ବତିଶ ଅକ୍ଷର | ଆଉ ବତିଶ ଯେ ରହିଲା ସାର ||
ଦୁଇ ବତିଶେ ଚଉଷଠି ହୋଇ | ପ୍ରଣବ ଅକ୍ଷର ମିଶାଅ ନେଇ |୨୦|
ଆଦ୍ୟମାତା ଚନ୍ଦ୍ରଂ ଓଁମତ କ୍ଷର | ଛନ୍ଦସ ଯେବଣ ସେହି ବସ୍ତୁର ||
ମନ୍ତ୍ରରାଜା ଅଟେ ଷୋଳ ଅକ୍ଷର | ତିନ ଗୁପତ ଅଛଇ ତହିଁର ||
ଚବିଶ ଅକ୍ଷର ଗାୟତ୍ରୀ ହୋଇ | ଓଁକାର ରହିଲା ଅଲଗା ହୋଇ ||
ଓଁକାରେ ଅଲଗା ରହିଲା ବେଦ | ସେଥିରେ ଅଛଇ ଆହୁଣ ଭେଦ ||
ଅଠ ଅକ୍ଷରେ ପାଦ ପୂର୍ଣ୍ଣ ହେଲା | ସେମନ୍ତେ ଗାୟତ୍ରୀ ତ୍ରିପାଦ କଲା ||
ତିନ ପାଦରେ କି ଗାଈ ଚରଇ | ଆଉ ପାଦେକ ଗୁପତେ ଅଛଇ ||
ଅବନା ଆଠ ତହିଁରେ ମିଳିଲା | ଚତୁରପାଦେ ପୁଣ ଗାଈ ହୋଇଲା ||
ଷୋଳ ବତିଶରେ ହୋଇଛି ମେଳ | ସୁମେରୁ ଶିଖରେ ଗାଈ ଗୁହାଳ ||
ଅଜପା ମନ୍ତ୍ର ଯେ ଏକାକ୍ଷର | ତହିଁରୁ ହୋଇଲା ଦଶ ବାହାର ||
ହଣବା ଗୁଣିବା ଯାହାର ଥିବ | ସେଥିର ଭେଦ ଯେ ସେ ନପାଇବ |୩୦|
ଅଣାକାର ମନ୍ତ୍ର ଦ୍ୱାତ୍ରିଂଶ ଅକ୍ଷର | ତହିଁରେ ବହୁତ ଅଛୁ ବିଚାର ||
ନାରାୟଣ ମନ୍ତ୍ର ବୁଝିବା ସାର | ସେମନ୍ତେ ଅଟଇ ଅଠ ଅକ୍ଷର ||
ଅଠ ଅକ୍ଷରକୁ ବୁଝିବ ଯେହୁ | ଗୋପାଳ ମନ୍ତ୍ରଟି ସେହୁ ଅଟଇ ||
ଶିବ ମନ୍ତ୍ର ଗୋଟି ବାରେ ତୁ ଶୁଣ | ପାଞ୍ଚୋଟି ଅକ୍ଷର ଅଟଇ ଜାଣ ||
ସରସ୍ୱତୀ ମନ୍ତ୍ର ଅଟଇ ଭେଦ | ସେମନ୍ତ୍ର ଅଟେ ଅକ୍ଷର ଚଉଦ ||
ଆହୁର ଦଶ ଯେ ଅଛଇ ବାରେ | ଗୋପାଳ ମନ୍ତ୍ରଟି ଅଛୁ ଶୂନ୍ୟରେ ||
ଗୁପତ ପ୍ରକଟ ନୁହଇ ବାବୁ | ଶୂନ୍ୟ ସଂଗୀତାରେ ପାଇବୁ ସବୁ ||
ଶୂନ୍ୟ ଗୋସାଇଁଙ୍କ ଚରଣେ ଆଣ | ଭବରେ ଭଣିଲେ ଅଚ୍ୟୁତ ଦାସ ||
ଠିକେ ଠିକେ ସେଥି କହିଲି ମୁହିଁ | ଯାହା କହିଦେଲେ କାଳିଆ ସାଇଁ ||
ଜଗୁଜୀବନର ଚରଣେ ଆଣ | ଗୀତରେ କହିଲା ଅଚ୍ୟୁତ ଦାସ |୪୦|

ଇତି ଶ୍ରୀ ତତ୍ତ୍ୱବୋଧନୀ ଗୀତା ବ୍ରହ୍ମଜ୍ଞାନ ବ୍ରହ୍ମଭେଦ ମନ୍ତ୍ରଂ ପ୍ରଚ୍ଛନ୍ନେ ଏକାକ୍ଷର ନିରୂପଣ କଥନେ ନାମ ଅଷ୍ଟମୋଧ୍ୟାୟଃ ||

* ଏ ତତ୍ତ୍ୱବୋଧନୀ ଗୀତା ସଂପୂର୍ଣ୍ଣ ହୋଇଲା *

—*—